# କଳିଙ୍ଗ ଅପରାଜେୟ

## (ଏକ ଲିପିତାତ୍ତ୍ୱିକ ଅଧ୍ୟୟନ)

ଗୋପାଳ ଚରଣ ପ୍ରଧାନ

ପ୍ରାଚୀନ କଳିଙ୍ଗ ବିଷୟରେ ସାଧାରଣ ଲୋକଙ୍କଠାରୁ ଆରମ୍ଭ କରି ଗବେଷକଙ୍କ ପର୍ଯ୍ୟନ୍ତ ଆଲୋଚନା କଲେ ସ୍ୱତଃ ପ୍ରବୃତ୍ତ ଭାବରେ ପ୍ରଥମେ ଭୟାବହ କଳିଙ୍ଗ ଯୁଦ୍ଧର ବିଭୀଷିକା ମନକୁ ଆସିଥାଏ । ଏହି ଲୋମହର୍ଷଣକାରୀ ଯୁଦ୍ଧ ଯାହା ଖ୍ରୀ:ପୂ: ୨୬୧ରେ ତତ୍‌କାଳୀନ କଳିଙ୍ଗ ରାଜ୍ୟ ମଗଧ ସମ୍ରାଟ ଅଶୋକଙ୍କ ବିରୁଦ୍ଧରେ ବୀରତ୍ୱର ସହ ଲଢ଼ି ପରାଜିତ ହୋଇଥିବାର ଶିଳାଲେଖରେ ବର୍ଣ୍ଣିତ ହୋଇଛି । ଏହା ସମ୍ରାଟ ଅଶୋକଙ୍କ ମୁଖ୍ୟ ଶୈଳାନୁଶାସନର ୧୩ତମ ଭାଗରେ ଖୋଦିତ ହୋଇଛି । ଏତଦ୍‌ବ୍ୟତୀତ ଏହାର ଉଲ୍ଲେଖ ଅନ୍ୟ କୌଣସିଠାରେ ଅଦ୍ୟାବଧି ମିଳି ନାହିଁ । ଏହି ଯୁଦ୍ଧର ଭୟାବହତା ପ୍ରକୃତରେ ଶିଳାଲେଖର ବର୍ଣ୍ଣନା ଅନୁସାରେ ସତ୍ୟ ନା ଅତିରଞ୍ଜିତ, ତାହା ବର୍ତ୍ତମାନ ପୁନଃ ଅନୁସନ୍ଧାନ ସାପେକ୍ଷ । କେତେକ ପରବର୍ତ୍ତୀ ତଥ୍ୟ ଏହାର ସତ୍ୟାସତ୍ୟ ପ୍ରତି ପ୍ରଶ୍ନବାଚି ସୃଷ୍ଟି କରେ । ସେଗୁଡ଼ିକ ମଧ୍ୟରୁ ପ୍ରମୁଖ ହେଉଛି ସମ୍ରାଟ ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖ, ଯେଉଁଥିରେ ସେ ଉଲ୍ଲେଖ କରିଛନ୍ତି ଯେ କଳିଙ୍ଗ ନନ୍ଦରାଜାଙ୍କ ଦ୍ୱାରା ପରାଜିତ ହୋଇଥିଲା । କିନ୍ତୁ ସମ୍ରାଟ ଅଶୋକ ଯେ କି ନନ୍ଦମାନଙ୍କ ପରବର୍ତ୍ତୀ ସମୟରେ ମଗଧ ସିଂହାସନ ଆରୋହଣ କରିଥିଲେ ଓ ତାଙ୍କ ପ୍ରମୁଖ ଶୈଳାନୁଶାସନର ୧୩ତମ ଭାଗରେ ବର୍ଣ୍ଣନା କରିଛନ୍ତି ଯେ ସେ ଅପରାଜିତ କଳିଙ୍ଗ ରାଜ୍ୟକୁ ଜୟ କରି ଦୁଃଖ ଅନୁଭବ କରିଛନ୍ତି । ଦ୍ୱିତୀୟତଃ କଳିଙ୍ଗ ଯୁଦ୍ଧର ବର୍ଣ୍ଣନା କରାଯାଇଥିବା ଶିଳାଲେଖ ଯାହା ସାହାବାଜ୍ ଘଡ଼ି ଓ ମାନସେରା (ପାକିସ୍ତାନ), ଗିରନ୍‌ର (ଗୁଜୁରାଟ), କାଲ୍‌ସି (ଡେରାଡୁନ) ଓ ଦକ୍ଷିଣ ଆନ୍ଧ୍ରପ୍ରଦେଶର ଏରାଗୁଡ଼ିଠାରେ ମିଳିଅଛି । ଏରାଗୁଡ଼ିକୁ ଛାଡ଼ି ଦେଲେ ଅନ୍ୟ ସମସ୍ତ ଶିଳାଲେଖ ଥିବା ଅଞ୍ଚଳ ଦେଇ ବହିଃଶତ୍ରୁମାନେ ଭାରତ ମଧ୍ୟରେ ଭିନ୍ନ ଭିନ୍ନ ସମୟରେ ପ୍ରବେଶ କରିଛନ୍ତି । ଏରାଗୁଡ଼ି ମଧ୍ୟ ସେସମୟରେ ଚେର, ଚୋଳ, ପାଣ୍ଡ୍ୟ, ସାମ୍ରାଜ୍ୟର ସୀମାରେ ଅବସ୍ଥିତ ଥିଲା । ଏହାର ପୁଂଖାନୁପୁଂଖ ଆଲୋଚନା ପ୍ରବନ୍ଧର ପରବର୍ତ୍ତୀ ଅଂଶରେ କରାଯିବ । କଳିଙ୍ଗ ଯୁଦ୍ଧର ପରାଜୟ କହିଲେ ବର୍ତ୍ତମାନ ଓଡ଼ିଶାର ପରାଜୟ ବୁଝିଥାଉ । ତେଣୁ ପ୍ରଥମେ କଳିଙ୍ଗର ଭୌଗଳିକ ପରିସୀମା ଓ ଏହା ବିଷୟରେ ବର୍ଣ୍ଣିତ ସମସ୍ତ ତଥ୍ୟର ସମ୍ପୂର୍ଣ୍ଣ ଆଲୋଚନା ଆବଶ୍ୟକ ।




କଳିଙ୍ଗ କହିଲେ ଆମେ ବର୍ତ୍ତମାନ ଓଡ଼ିଶାର ଏହା ଏକ ପ୍ରାଚୀନ ନାମ ବୋଲି ଧରି ନେଇ ଥାଉ । ଏହାର ପ୍ରକୃତ ପରିସୀମା ଏପର୍ଯ୍ୟନ୍ତ ସନ୍ତୋଷଜନକ ଭାବରେ ସ୍ଥିର ହୋଇନାହିଁ । ଏହାର ବର୍ଣ୍ଣନା ରାମାୟଣ, ମହାଭାରତ, ଶିଳାଲେଖ, ତାମ୍ରଶାସନ, ବିଦେଶାଗତ ପରିବ୍ରାଜକଙ୍କ ଭ୍ରମଣ ବୃତାନ୍ତ ଓ ଅନ୍ୟାନ୍ୟ କାବ୍ୟ କବିତାରୁ ମିଳିଅଛି । ରାମାୟଣର କିଷ୍କିନ୍ଧା କାଣ୍ଡରେ ଯେତେବେଳେ ସୁଗ୍ରୀବ ବାନରମାନଙ୍କୁ ସୀତା ଦେବୀଙ୍କ ସନ୍ଧାନ ପାଇଁ ପଠାଇଥିଲେ, ସେ ଦକ୍ଷିଣ ଭାରତର ଭୌଗଳିକ ସ୍ଥିତି ବର୍ଣ୍ଣନା ସମୟରେ କଳିଙ୍ଗ ଏହାର ଏକ ପ୍ରମୁଖ ରାଜ୍ୟ ଥିବାର କହିଛନ୍ତି ।[୧] ମହାଭାରତରୁ ମଧ୍ୟ କଳିଙ୍ଗ ସୀମାର ସମ୍ୟକରେ ସୂଚନା ମିଳେ ।[୨] ଶିଳାଲେଖରେ କଳିଙ୍ଗର ବର୍ଣ୍ଣନା ପ୍ରଥମେ ଅଶୋକଙ୍କ ପ୍ରମୁଖ ଶୈଳାନୁଶାସନର ୧୩ତମ ଭାଗ ଅନୁଶାସନରେ ମାନସେରା, ସାହାବାଜ୍ ଘଡ଼ି, ଗିରନ୍‌ର, କାଲ୍‌ସି ଓ ଏରାଗୁଡ଼ିଠାରେ ମିଳିଅଛି ।[୩] କଳିଙ୍ଗ ସମ୍ରାଟ ଖାରବେଳ ମଧ୍ୟ ହାତୀଗୁମ୍ଫା ଶିଳାଲେଖରେ

ଏହା ବିଷୟରେ ଉଲ୍ଲେଖ କରିଛନ୍ତି ।[୪] ସଦ୍ୟ ଆବିଷ୍କୃତ ଆନ୍ଧ୍ରପ୍ରଦେଶର ଗୁଣ୍ଟୁପଲ୍ଲି ଶିଳାଲେଖ ।[୫] କର୍ଣ୍ଣାଟକର ସନ୍ନତିଠାରେ ମିଳିଥିବା ଅଶୋକଙ୍କ ପ୍ରମୁଖ ଶିଳାନୁଶାସନରେ ମଧ୍ୟ ଏହାର ବର୍ଣ୍ଣନା କରାଯାଇଛି ।[୬] ଅଦ୍ୟାବଧି କଳିଙ୍ଗର ପ୍ରକୃତ ସୀମା ନା ଖାରବେଳଙ୍କ ବର୍ଣ୍ଣିତ ଏହାର ରାଜଧାନୀ 'କଳିଙ୍ଗ ନଗରୀ' ସନ୍ତୋଷଜନକ ଭାବେ ଚିହ୍ନିତ ହୋଇପାରିନାହିଁ । ଅଶୋକଙ୍କ ଆକ୍ରମଣ ସମୟରେ ଏହାର ସୀମା ବର୍ତ୍ତମାନ ଓଡ଼ିଶାର ତଟବର୍ତ୍ତୀ ଜିଲ୍ଲା ଓ ଉତ୍ତର ଆନ୍ଧ୍ରପ୍ରଦେଶର ତଟବର୍ତ୍ତୀ ଜିଲ୍ଲାଗୁଡ଼ିକ ଥିବାର ଅନୁମାନ କରାଯାଏ । ହାତୀଗୁମ୍ଫା ଶିଳାଲେଖ ଅନୁସାରେ କଳିଙ୍ଗର ସୀମା ମୌର୍ଯ୍ୟ ସାମ୍ରାଜ୍ୟର ପତନ ପରେ ଅପରିବର୍ତ୍ତିତ ଥିଲା ନା ପରିବର୍ତ୍ତନ ଘଟିଥିଲା ସଠିକ୍ ଭାବରେ କହିହେବ ନାହିଁ । ଏହି ସମୟରେ ଏହାର ରାଜଧାନୀ 'କଳିଙ୍ଗ ନଗରୀ' ସାମୟିକ ଭାବେ ଭୁବନେଶ୍ୱର ନିକଟସ୍ଥ ଶିଶୁପାଳଗଡ଼ ସହ ଚିହ୍ନିତ କରାଯାଇଛି ।[୭] କିନ୍ତୁ କେତେକ ଗବେଷକଙ୍କ ମତରେ ଆନ୍ଧ୍ରପ୍ରଦେଶର 'ମୁଖଲିଙ୍ଗମ୍' ହିଁ ପ୍ରକୃତ କଳିଙ୍ଗ ନଗରୀ । ଏହା କଳିଙ୍ଗ ରାଜ୍ୟର କେନ୍ଦ୍ରରେ ଅବସ୍ଥିତ । କାରଣ କଳିଙ୍ଗର ସୀମା ଗୋଦାବରୀଠାରୁ ଆରମ୍ଭ ହୋଇ ଉତ୍ତର ଓଡ଼ିଶା ଓ ସମସ୍ତ ତଟବର୍ତ୍ତୀ ଜିଲ୍ଲା ଭିନ୍ନ ଭିନ୍ନ ସମୟରେ ଏହାର ଅନ୍ତର୍ଭୁକ୍ତ ଥିଲା । ଆନ୍ଧ୍ରପ୍ରଦେଶର ଗୁଣ୍ଟୁପାଲି ଶିଳାଲେଖ ଅନୁସାରେ ମହାମେଘ ବାହାନ ବଂଶର ରାଜା ଶ୍ରୀସଦ ଯାହାଙ୍କୁ ଖାରବେଳଙ୍କ ପିତା ବୋଲି ଚିହ୍ନିତ କରାଯାଇଛି, ସେ କଳିଙ୍ଗ ଓ ମହିଶଙ୍କ (ମହୀଶୂର)ର ଅଧୀପତି ଥିଲେ ।[୮] ଖାରବେଳଙ୍କ ସମୟରେ ଏହା ସଂକୁଚିତ ହୋଇ ମହିଶଙ୍କ ପରିବର୍ତ୍ତେ କେବଳ କଳିଙ୍ଗରେ ରାଜତ୍ୱ କରୁଥିଲେ । ଏ ବିଷୟରେ ସବିଶେଷ ତଥ୍ୟ ଡଃ (ଶ୍ରୀମତୀ) ସ୍ନିଗ୍ଧା ତ୍ରିପାଠୀଙ୍କ ରଚିତ 'ଖାରବେଳ ଓ ତତ୍‌ସଂଲଗ୍ନ ଐତିହାସିକ ତଥ୍ୟ - ଏକ ଲିପି ତାତ୍ତ୍ୱିକ ଅଧ୍ୟୟନ' ପୁସ୍ତକରେ ବର୍ଣ୍ଣିତ ହୋଇଛି । ଡଃ ତ୍ରିପାଠୀଙ୍କ ମତରେ ଖାରବେଳ ମହାମେଘ ବାହାନ ବଂଶର ଥିଲେ ଓ ତାଙ୍କର ରାଜଧାନୀ କଳିଙ୍ଗ ନଗରୀ ବର୍ତ୍ତମାନର ମୁଖଲିଙ୍ଗମ୍ । ତତ୍‌ପରେ କଳିଙ୍ଗର ବର୍ଣ୍ଣନା ହୁଂଏନ୍‌ସାଂଙ୍କ ଭ୍ରମଣ ବୃତ୍ତାନ୍ତ 'ସି.ୟୁକି'ରୁ ମିଳେ । ଏହି ସମୟରେ ଗଞ୍ଜାମ ଜିଲ୍ଲା କେବଳ କଳିଙ୍ଗ ସୀମାଭୁକ୍ତ ଥିଲା ଏବଂ ଓଡ଼ିଶାର ଅଧିକାଂଶ ଭୂଭାଗ ଓଡ୍ର, ଦକ୍ଷିଣ କୋଶଳ ଓ କଙ୍ଗୋଦ ରାଜ୍ୟର ଅଂଶ ଥିଲା ।[୯] ହୁଂଏନ୍‌ସାଂ ଲେଖିଛନ୍ତି, ଯେ କଳିଙ୍ଗର ଲୋକମାନେ ସ୍ୱଭାବରେ ରୁକ୍ଷ, ଅଦମ୍ୟ, ସରଳ ଓ ଉତ୍ତମ ବିଶ୍ୱାସୀ ଥିଲେ । କଥାବାର୍ତ୍ତା କ୍ଷୀପ୍ର ଓ ଶୁଦ୍ଧ କିନ୍ତୁ ଏହା ମଧ୍ୟ ଭାରତର ଭାଷାଠାରୁ ଭିନ୍ନ ଥିଲା । ଏଠାରେ ବୌଦ୍ଧ ଧର୍ମାବଲମ୍ବୀ କମ ଥିବା ସମୟରେ ଅନ୍ୟ ଧର୍ମର ଲୋକ ଅଧିକ ଥିଲେ । କଳିଙ୍ଗର ଲୋକ ସଂଖ୍ୟା କମ୍ ଥିଲା ।[୧୦]

ଉପରୋକ୍ତ ସମସ୍ତ ତଥ୍ୟକୁ ବିଚାରକୁ ନେଲେ ଏହା ସ୍ପଷ୍ଟ ଜଣାପଡ଼େ ଯେ କୌଣସି ସମୟରେ ବର୍ତ୍ତମାନର ଓଡ଼ିଶା ପୂର୍ଣ୍ଣମାତ୍ରାରେ କଳିଙ୍ଗର ଅଂଶ ବିଶେଷ ନଥିଲା, ଭିନ୍ନ ଭିନ୍ନ ସମୟରେ ଏହାର କିଛି ଅଂଶ କଳିଙ୍ଗର ସୀମାରେ ଥିବାର ପ୍ରମାଣ ମିଳେ । କିନ୍ତୁ ଅଶୋକଙ୍କ ଦ୍ୱାରା କଳିଙ୍ଗ ଯୁଦ୍ଧରେ ପରାଜୟର ବିଷୟ ଆଲୋଚନାକୁ ଆସିଲେ ସମସ୍ତେ ବିଚାରକୁ ନେଇ ଥାଉ ଯେ ବର୍ତ୍ତମାନର ଓଡ଼ିଶା ହିଁ ପରାଜିତ ହୋଇଥିଲା, କିନ୍ତୁ ଏହି ପ୍ରବନ୍ଧର ଆଧାର କୌଣସି ଭୌଗଳିକ ପରିସୀମା ନୁହେଁ ପରନ୍ତୁ ଭାରତର ଦୁଇଟି ପ୍ରମୁଖ ଶିଳାଲେଖ । ପ୍ରଥମଟି ସମ୍ରାଟ ଅଶୋକଙ୍କ ପ୍ରମୁଖ ଶିଳାନୁଶାସନର ୧୩ତମ ଭାଗ ଯେଉଁଥିରେ କଳିଙ୍ଗ ଯୁଦ୍ଧର ବର୍ଣ୍ଣନା ହୋଇଛି ଓ ଦ୍ୱିତୀୟଟି ହେଉଛି ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖ । ଏ ସମସ୍ତ ବିଷୟ ଆଲୋଚନା କରିବା ପୂର୍ବରୁ ପ୍ରଥମେ ଅଶୋକଙ୍କ ଶିଳାଲେଖ ବିଷୟରେ ଜାଣିବା ଆବଶ୍ୟକ । ସମ୍ରାଟ ଅଶୋକ ଭାରତୀୟ ଉପମହାଦେଶର ବିଭିନ୍ନ ପ୍ରାନ୍ତରେ ତାଙ୍କର ରାଜାଜ୍ଞା ଶିଳାଲେଖରେ ଖୋଦନ କରିଛନ୍ତି । ସେଗୁଡ଼ିକ ହେଉଛି ପ୍ରମୁଖ ଶିଳାନୁଶାସନ ୧୦ାରୁ ୧୪ ପର୍ଯ୍ୟନ୍ତ । ସାମାନ୍ୟ ଶିଳାନୁଶାସନ, ପ୍ରମୁଖ ସ୍ତମ୍ଭ ଶିଳାନୁଶାସନ ୧ଠାରୁ ୭ ପର୍ଯ୍ୟନ୍ତ, ସାମାନ୍ୟ ସ୍ତମ୍ଭ ଶିଳାନୁଶାସନ ଓ କଳିଙ୍ଗ ଶିଳାନୁଶାସନ ୧ମ ଓ ଦ୍ୱିତୀୟ । ସେ ସମସ୍ତ ଶିଳାଲେଖରେ ବ୍ରାହ୍ମୀଲିପି ଓ ପ୍ରାକୃତ ଭାଷାର ବ୍ୟବହାର କରିଛନ୍ତି । କିନ୍ତୁ ଉତ୍ତର ପଶ୍ଚିମ ଭାରତରେ ଖରୋଷ୍ଠି ଓ ଆରମିକ୍ ଲିପିର ବ୍ୟବହାର କରିଛନ୍ତି । ଅଧିକାଂଶ ଶିଳାଲେଖ ସାମ୍ରାଜ୍ୟର ସୀମାବର୍ତ୍ତୀ ଅଞ୍ଚଳରେ ଖୋଦିତ ହୋଇଥିଲା । ସେଗୁଡ଼ିକ ମଧ୍ୟରୁ ପ୍ରମୁଖ ଶୀଳାନୁଶାସନ କେବଳ ସୀମାବର୍ତ୍ତୀ ଅଞ୍ଚଳରେ ହିଁ ଖୋଦିତ ହୋଇଥିଲା ଓ ଅନ୍ୟ କେତେକ ଶିଳାଲେଖ ରାଜ୍ୟର ଅନ୍ୟାନ୍ୟ ଭାଗରୁ ମିଳେ । ଓଡ଼ିଶାରେ ଏ ପର୍ଯ୍ୟନ୍ତ ଧଉଳି ଓ ଜଉଗଡ଼ଠାରେ ଅଶୋକଙ୍କ ପ୍ରମୁଖ ଶିଳାନୁଶାସନ ମିଳିଅଛି । କିନ୍ତୁ ଏଥିରେ ୧୦ାରୁ ୧୪ ପରିବର୍ତ୍ତେ ୧୧, ୧୨ ଓ ୧୩ତମ ଅନୁଶାସନ ବଦଳରେ ୨ଟି କଳିଙ୍ଗ ଶିଳାନୁଶାସନ ଖୋଦିତ ହୋଇଛି । ଏହି ଦୁଇ କଳିଙ୍ଗ ଶିଳାନୁଶାସନରେ ସମ୍ରାଟ ଅଶୋକ ତୋଷାଳୀ ଓ ସୋମାପାଠାରେ ଥିବା ମହାମାତ୍ରଙ୍କୁ କଳିଙ୍ଗର ପ୍ରଜାମାନଙ୍କ ସୁଖ ସୁବିଧା ପ୍ରତି ଧ୍ୟାନ ଦେବା ପାଇଁ ଆଦେଶ ଦେଇଛନ୍ତି । ଗବେଷକମାନଙ୍କ ମତରେ ୧୩ତମ ଅନୁଶାସନ ଯେଉଁଥିରେ କଳିଙ୍ଗ ଯୁଦ୍ଧର ବିଭୀଷିକା ବର୍ଣ୍ଣିତ ହୋଇଅଛି ଏହା ଏଠାରେ ଖୋଦିତ ହୋଇଥିଲେ କଳିଙ୍ଗର ପ୍ରଜାମାନଙ୍କ ଉପରେ କୁ-ପ୍ରଭାବ ପକାଇ ପାରିଥାନ୍ତା, ତେଣୁ ଏହା ପରିବର୍ତ୍ତେ ଏଠାରେ ଦୁଇଟି ଭିନ୍ନ ଶିଳାନୁଶାସନ ଖୋଦନ କରିଥିଲେ । ସଦ୍ୟ ଆବିଷ୍କୃତ କର୍ଣ୍ଣାଟକର ଗୁଲବର୍ଗା ଜିଲ୍ଲା ଅନ୍ତର୍ଗତ ସନ୍ନତିରୁ ଆବିଷ୍କୃତ ଅଶୋକଙ୍କ ପ୍ରମୁଖ ଶିଳାନୁଶାସନରେ କଳିଙ୍ଗ ଶିଳାନୁଶାସନ ଦୁଇଟି ମଧ୍ୟ ଖୋଦିତ ହୋଇଛି ।[୧୧] ଏଠାରେ ମଧ୍ୟ ଉଲ୍ଲେଖ କରାଯାଇପାରେ ଯେ, ସନ୍ନତି ନିକଟସ୍ଥ କଣଗଣହାଲ୍ଲିରୁ ଏକ ଅଶୋକ ଓ ତାଙ୍କ ଦୁଇ ରାଣୀଙ୍କ ସହ ମୂର୍ତ୍ତି ଆବିଷ୍କୃତ ହୋଇଛି, ଯାହା ଓଡ଼ିଶାର ଲାଙ୍ଗୁଡ଼ି ପାହାଡ଼ରୁ ଆବିଷ୍କୃତ ଅଶୋକ ଓ ଦୁଇ ରାଣୀଙ୍କ ମୂର୍ତ୍ତି ସହ ସାମଞ୍ଜସ୍ୟ ରହିଅଛି ।[୧୨] ଯଦି ଉପରୋକ୍ତ ବିଷୟରେ ଅଧିକ ଗବେଷଣା ହୁଏ ତେବେ ଭବିଷ୍ୟତରେ ବହୁ ଲୁକ୍କାଇତ ଐତିହାସିକ ତଥ୍ୟ ଉନ୍ମୋଚିତ

ହେବ ଯାହା ଓଡ଼ିଶା ଓ କର୍ଣ୍ଣାଟକର ସାଂସ୍କୃତିକ ସମ୍ପର୍କରେ ନୂତନ ଅଧ୍ୟାୟ ସୃଷ୍ଟି କରିବ । ସନ୍ନତିରୁ ଆବିଷ୍କୃତ କଳିଙ୍ଗ ଶିଳାନୁଶାସନ ପରେ ଏହା କୁହାଯାଇପାରେ ଯେ ଏହି ଦୁଇଟି ଅନୁଶାସନ କେବଳ କଳିଙ୍ଗ ବାସୀଙ୍କ ପାଇଁ ଉଦ୍ଦିଷ୍ଟ ନଥିଲା ।

କଳିଙ୍ଗ ଯୁଦ୍ଧର ବର୍ଣ୍ଣନା ଅଶୋକ ତାଙ୍କ ପ୍ରମୁଖ ଶିଳାନୁଶାସନର ୧୩ତମ ଭାଗରେ ଖୋଦନ କରିଛନ୍ତି । ଭୌଗଳିକ ଦୃଷ୍ଟିକୋଣରୁ ଏଗୁଡ଼ିକ ଭାରତୀୟ ଉପ-ମହାଦେଶର ଉତ୍ତର-ପଶ୍ଚିମ ସୀମାନ୍ତ ଅଞ୍ଚଳରେ ପାକିସ୍ଥାନସ୍ଥିତ ସାହାବାଜ ଘଡ଼ି ଓ ମାନସେରା, ଉତ୍ତର ଭାରତର କାଲସି (ଡେରାଡୁନ) ପଶ୍ଚିମ ଭାରତର ଗିରନର ଓ ଦକ୍ଷିଣ ଭାରତର ଏରାଗୁଡ଼ିଠାରେ ମିଳିଅଛି । କେବଳ ଆନ୍ଧ୍ରପ୍ରଦେଶର ଏରାଗୁଡ଼ି ପ୍ରମୁଖ ଶିଳାନୁଶାସନ ସେ ସମୟର ଚେର, ଚୋଳ ଓ ପାଣ୍ଡ୍ୟ ସୀମାକୁ ଲାଗି ରହିଥିଲା । ଉତ୍ତର-ପଶ୍ଚିମ ଭାରତରେ ସେ ଶିଳାଲେଖରେ ଖରୋଷ୍ଠି ଲିପି, ଆରମିକ୍ ଓ ଗ୍ରୀକ୍ ଭାଷାର ବ୍ୟବହାର କରିଥିଲେ । ଖରୋଷ୍ଠି ଲିପି ଯାହା ପରବର୍ତ୍ତୀ ସମୟରେ କୁଶାଣମାନଙ୍କ ଦ୍ୱାରା ବହୁଳ ଭାବରେ ବ୍ୟବହୃତ ହୋଇ ପରବର୍ତ୍ତୀ ସମୟରେ ଲୋପ ପାଇ ଯାଇଥିଲା, ଅଶୋକଙ୍କ ଶାସନ ପୂର୍ବରୁ ଉତ୍ତର-ପଶ୍ଚିମ ସୀମା ଦେଇ ଦାରିୟସ ଓ ଆଲେକ୍ସଜାଣ୍ଡାର ଓ ଭାରତୀୟ ସୀମାରେ ପ୍ରବେଶ କରିଥିଲେ । ଡେରାଡୁନ ନିକଟସ୍ଥ କାଲ୍‌ସି ଯାହା ବର୍ତ୍ତମାନ ଉତ୍ତରାଖଣ୍ଡ ରାଜ୍ୟରେ ଅବସ୍ଥିତ । ଏହି ଅଞ୍ଚଳ ଦେଇ ଭାରତ ମଧ୍ୟକୁ ପ୍ରବେଶ କରିବାର ସୁବିଧା ଥିଲା, ଯାହା ଦଲାଇଲାମାଙ୍କ ତିବ୍ବତରୁ ଭାରତ ମଧ୍ୟରେ ପ୍ରବେଶର ପ୍ରମାଣ ଦିଏ । ଦ୍ୱିତୀୟତଃ ଗୁଜରାଟ ସୀମା ଦେଇ ପରବର୍ତ୍ତୀ ସମୟରେ ଶକ, ହୁଣ ଓ କ୍ଷତ୍ରପମାନେ ଭାରତବର୍ଷରେ ପ୍ରବେଶ କରିଥିଲେ । ଦକ୍ଷିଣ ଭାରତର ଆନ୍ଧ୍ରପ୍ରଦେଶର କର୍ଣ୍ଣୁଲ ଜିଲ୍ଲା ଅନ୍ତର୍ଗତ ଏରାଗୁଡ଼ିରୁ ମିଳିଥିବା ପ୍ରମୁଖ ଶିଳାନୁଶାସନରେ ମଧ କଳିଙ୍ଗ ଯୁଦ୍ଧର ବର୍ଣ୍ଣନା କରାଯାଇଛି । ଭାରତୀୟ ଉପମହାଦେଶରେ କେବଳ ଚେର, ଚୋଳ ଓ ପାଣ୍ଡ୍ୟମାନେ ସ୍ୱାଧୀନ ଭାବରେ ଅଶୋକଙ୍କ ସମୟରେ ଦକ୍ଷିଣ ଭାରତରେ ଶାସନ କରୁଥିଲେ । ଏଠାରେ ଅନୁମାନ କରାଯାଇପାରେ ଯେ ଏହି ସୀମାନ୍ତବର୍ତ୍ତୀ ଅଞ୍ଚଳରେ କଳିଙ୍ଗ ଯୁଦ୍ଧର ଭୟାବହତା ସମ୍ରାଟ ଅଶୋକ ଖୋଦନ କରିବାର ମୁଖ୍ୟ କାରଣ ବହିଃଶତ୍ରୁମାନଙ୍କୁ ଭୟଭୀତ କରିବା ପାଇଁ ହୋଇଥାଇପାରେ । ତେବେ ଏହାର ଉଦ୍ଦେଶ୍ୟ ଯାହାବି ହେଉ ବର୍ତ୍ତମାନ ଯେଉଁ ଦୁଇଟି ଶିଳାଲେଖକୁ ଆଧାର କରି ଏହି ପ୍ରବନ୍ଧଟି ରଚିତ ହୋଇ ତାହା ବିଷୟରେ ପୁଂଖାନୁପୁଂଖ ଆଲୋଚନା ଆବଶ୍ୟକ ।

ପ୍ରଥମ ଶିଳାଲେଖଟି ହେଉଛି ସମ୍ରାଟ ଅଶୋକଙ୍କ ପ୍ରମୁଖ ଶିଳାନୁଶାସନର ୧୩ତମ ଭାଗ, ଯେଉଁଥିରେ କଳିଙ୍ଗ ଯୁଦ୍ଧର ଭୟାବହତା ବର୍ଣ୍ଣିତ ହୋଇଛି । ସେହି ଶିଳାଲେଖର ପ୍ରଥମ ତିନି ଧାଡ଼ିର ପ୍ରକୃତ ଅଂଶ ଓ ଓଡ଼ିଆ ଅନୁବାଦ ନିମ୍ନରେ ଦିଆଗଲା ।

**ପ୍ରମୁଖ ଶିଳାନୁଶାସନର ୧୩ତମ ଭାଗ** - (ସାହାବାଜ ଘଡ଼ି, ପାକିସ୍ଥାନ)[୧୩]

**ପ୍ରାକୃତ ଅଂଶ**

ପ୍ରଥମ ଧାଡ଼ି -

ଅଠ ବସାଭି ସିତ ସ ଦେବାନାମ ପ୍ରିଅସ ପ୍ରିୟ ଦଶିଶ ରାଞ୍ଜୋ କଳିଙ୍ଗ ବିଜିତ ଦିଅଦ୍ ମତ୍ରେ ପ୍ରଣ ଶତ ଶହସ୍ରେ ଯେ ତତୋ ଅପ ବୁଧେ ଶତ ସହସ୍ର ମତ୍ରେ ତତ୍ର ହତେ ବହୁ ତବ ତଳେ ବ ମୁଟେ ।

ଦ୍ୱିତୀୟ ଧାଡ଼ି -

ତତୋ ପଚ ଅଧୁନା ଲଧେସୁ କଳିଗସୁ ତିବରେ ଧ୍ରମ ଶିଳନ ଧ୍ରମ କମତ ଧ୍ରମନୁ ଶସ୍ତି ଚ ଦେବାନାମ ପ୍ରିୟସ ସେ ଅସ୍ତି ଅନୁଶୋଚନା ଦେବନମ ପ୍ରିୟସ ବିଜିନିତ କଳିଗାନି

ତୃତୀୟ ଧାଡ଼ି -

ଅବିଜିତମ୍ ହି ବିଜିନ ମନୋ ଚୟା ତତ୍ର ବଧ ବ ମରଣମ ବ ଅପବାହୋ ବ ଜନସ ତମ୍ ବଢ଼ମ୍ ବେଦନିୟ ମତମ୍ ଚ ଦେବାନାମ ପିୟସ ।

ଓଡ଼ିଆ ଅନୁବାଦ - ଦେବତାମାନଙ୍କର ପ୍ରିୟ ରାଜା ଶାସନର ଅଷ୍ଟମ ବର୍ଷରେ କଳିଙ୍ଗ ଉପରେ ବିଜୟ ପ୍ରାପ୍ତ କରିଥିଲେ । ଏହାପରେ ଦେଢ଼ଲକ୍ଷ ଲୋକ ଦେଶାନ୍ତର ଗମନ କରିଥିଲେ, ଏକ ଲକ୍ଷ ଲୋକଙ୍କୁ ବଧ କରିଥିଲେ ଓ ଏହାଠାରୁ ଅଧିକ ସଂଖ୍ୟାରେ ମୃତ୍ୟୁବରଣ କରିଥିଲେ । ଏହାପରେ ଦେବତାମାନଙ୍କର ପ୍ରିୟ କଳିଙ୍ଗର ଅଧିକାର ପରେ ମାନବିକତାର ଶିକ୍ଷା, ମାନବିକତା ପ୍ରତି ପ୍ରେମ ଓ ଏଠାରେ ମାନବିକତାର ପାଳନ ପାଇଁ ଆଦେଶ ଦେଇଥିଲେ ।

କଳିଙ୍ଗ ରାଜ୍ୟ ଜୟ କରି ଦେବତାମାନଙ୍କର ପ୍ରିୟ ରାଜା (ଅଶୋକ) ଅନୁତାପ କରିଥିଲେ । ଏଠାରେ ହୋଇଥିବା ହତ୍ୟା, ମୃତ୍ୟୁ, ଦେଶାନ୍ତର ଗମନ ଓ ଅପରାଜିତ କଳିଙ୍ଗ ରାଜ୍ୟକୁ ଜୟ କରି ଦେବତାମାନଙ୍କର ପ୍ରିୟ ରାଜା ଦୁଃଖ ଅନୁଭବ କରିଥିଲେ ।

ଦ୍ୱିତୀୟ ଆଧାର ହେଉଛି - କଳିଙ୍ଗ ସମ୍ରାଟ ଖାରବେଳଙ୍କ ଦ୍ୱାରା ଖୋଦିତ ଖଣ୍ଡଗିରି ଉଦୟଗିରି ସ୍ଥିତ ହାତୀଗୁମ୍ଫା ଶିଳାଲେଖ, ଯାହାର ଷଷ୍ଠ, ଏଗାର ଓ ବାରତମ ପଂକ୍ତିର ପ୍ରାକୃତ ଅଂଶ ଓ ଓଡ଼ିଆ ଅନୁବାଦ ନିମ୍ନରେ ଦିଆଯାଇଛି ।

**ହାତୀଗୁମ୍ଫା ଶିଳାଲେଖ -**

ଷଷ୍ଠ ଧାଡ଼ି / ପଂକ୍ତି ପ୍ରାକୃତ ଅଂଶ -

ଭିଗାଂରେ ହିତ ରତନ ସାପତେୟେ ସବ ରଠିକ୍ ଭୋଜିକ ପାଦେ ବଂଦା ପୟତି ॥ ପଂଚମେ ଚ ଦାନୀ ବସେ ନନ୍ଦ ରାଜ ତିବସ ସତ ଓଘାଟିତଂ ତନସୁଲିୟା ବାଟା ପନାଡ଼ି ନଗରିଂ ପବେ ସୟତି ॥

ଓଡ଼ିଆ ଅନୁବାଦ - ରାଷ୍ଟ୍ରିକ ଓ ଭୋଜକ ରାଜ୍ୟର ଶାସକମାନେ ଭଗ୍ନ ମୁକୁଟ ହୋଇ ରାଜଛତ୍ର ଓ ଲାଞ୍ଛନ ଫିଙ୍ଗି ମଣି, ରତ୍ନ ସମ୍ପଦ ସମର୍ପଣ ପୂର୍ବକ ତାଙ୍କର (ଖାରବେଳ) ପଦ ବନ୍ଦନା କରିଥିଲେ ।

୧୧ତମ ପଂକ୍ତି ପ୍ରାକୃତ ଅଂଶ -

କଳିଙ୍ଗ ଯୁବରାଜ ନିବେସିତଂ ର୍ପଥୁଂଡ଼ ଗଦ ଉନଂଗଲେନ କାସୟତି ॥

ଜନପଦ ଭାନନଂଚ ତେରସ ବସ ନତକ ତଂ ଭିଦତି ତମିର ଦେହ ସଂଘାତଂ ॥

ବାରସ ମେଚ ବସେ ବିତା ସୟତି ଉତ୍ତରାପଥ ରାବନୋ ତତୋ ॥

୧୨ତମ ପଂକ୍ତି ପ୍ରାକୃତ ଅଂଶ -

ମଗଧାନଂ ଚ ବିପୁଲଂ ଭୟଂ ଜନୋତୋ ହଥ ସଂ ଗଂଗାୟ ପାୟୟତି ॥

ମାଗଧଂ ଚ ରାଜନଂ ବଦ୍‌ସତି ମିତଂ ପାଦେ ବଂଦା ପୟତି ॥ ନନ୍ଦ ରାବ ନୀତିଂ କାଳିଙ୍ଗ ଜିନଂ ସଂନିବେସଂ (କଳିଙ୍ଗ ରାଜ) ଗହ ରତନ ପରିହରେ ହି ଅଂଗ ମଗଧ ବସୁଂ ଚ ନୟତି ।

୧୧ତମ ଓ ୧୨ତମ ପଂକ୍ତିର ଓଡ଼ିଆ ଅନୁବାଦ - ଦ୍ୱାଦଶ ବର୍ଷରେ ସେ ଏକ ଲକ୍ଷ ସୈନ୍ୟ ଘେନି ଉତ୍ତର ପଥରେ ରାଜାମାନଙ୍କୁ ସଂତ୍ରସ୍ତ କରିଥିଲେ । ସେ ହସ୍ତୀମାନଙ୍କୁ ଗଂଗା ନଦୀର ଜଳପାନ କରାଇବା ସମୟରେ ମଗଧବାସୀଙ୍କ ମନରେ ବିପୁଳ ଭୟ ଜନ୍ମାଇଥିଲେ ଏବଂ ମଗଧ ରାଜା ବହସତି ମିତ (ବୃହସ୍ପତି ମିତ୍ର) ତାଙ୍କର ପଦ ବନ୍ଦନା କରିଥିଲେ । ତାହା ପରେ ସେ ନନ୍ଦରାଜା ନେଇଥିବା କଳିଙ୍ଗ ଜିନ ସହିତ ଅଂଗ ଓ ମଗଧ ରାଜ୍ୟର ବହୁ ସମ୍ପଦ ଘେନି ଆସିଥିଲେ ।

ପ୍ରଥମେ ଅଶୋକଙ୍କ ଶିଳାଲେଖ ଅନୁସାରେ ସେ ୨୬୧ ଖ୍ରୀ:ପୂ:ରେ କଳିଙ୍ଗ ବିରୁଦ୍ଧରେ ଯୁଦ୍ଧ କରି ବିଜୟ ପ୍ରାପ୍ତ କରିଥିଲେ । ଏହି ଯୁଦ୍ଧର ବର୍ଣ୍ଣନା ଅନୁସାରେ ୨ ଲକ୍ଷ ଲୋକ ମୃତ୍ୟୁବରଣ କରିଥିଲେ । ତେବେ ଏହାଠାରୁ ସେ ସମୟରେ ଅଧିକ କଳିଙ୍ଗର ସୈନ୍ୟ ଥିବେ । ସେ ସମୟରେ କଳିଙ୍ଗର ଲୋକ ସଂଖ୍ୟା କେତେ ଥିଲା । ତେଣୁ ଲୋକ ସଂଖ୍ୟାକୁ ବିଚାରକୁ ନେଲେ ଏତେ ସଂଖ୍ୟାରେ ସୈନ୍ୟ ଥିବା ଅସମ୍ଭବ । ଯଦି କଳିଙ୍ଗ ଏକ ପ୍ରଜାତନ୍ତ୍ର ହୋଇଥାନ୍ତା, ତେବେ ସାଧାରଣ ଲୋକ ଯୁଦ୍ଧରେ ଅଂଶ ଗ୍ରହଣର ଆଶା ଥିଲା । କିନ୍ତୁ ସମସ୍ତ ସାହିତ୍ୟ, ଧର୍ମଶାସ୍ତ୍ର, ପୁରାଣ ଓ ଶିଳାଲେଖର ବର୍ଣ୍ଣନା ଅନୁସାରେ କଳିଙ୍ଗରେ ସବୁବେଳେ ରାଜତନ୍ତ୍ର ରହି ଆସିଥିଲା । ତୃତୀୟରେ ଅଶୋକ ଏକ ଅପରାଜିତ ରାଜ୍ୟକୁ ଜୟକରି ଦୁଃଖ ଅନୁଭବ କରିଛନ୍ତି । ଏହାର ଅର୍ଥ କଳିଙ୍ଗ ଯୁଦ୍ଧ ପୂର୍ବରୁ ଏହା କେବେ ହେଲେ ପରାଜିତ ହୋଇନଥିଲା । ପ୍ରଥମ ଥର ପାଇଁ ସମ୍ରାଟ ଅଶୋକଙ୍କ ଦ୍ୱାରା କଳିଙ୍ଗ ପରାଜିତ ହୋଇଥିଲା । କିନ୍ତୁ ଏଠାରେ ଖାରବେଳଙ୍କ ହାତୀଗୁମ୍ଫା ଶିଳାଲେଖର ଯେଉଁ କେତେ ପଂକ୍ତିରେ ଉଦ୍ଧୃତ କରାଯାଇଛି ତା'ର ଆଲୋଚନା ଆବଶ୍ୟକ । ହାତୀଗୁମ୍ଫା ଶିଳାଲେଖରେ ଖାରବେଳ ଖୋଦନ କରିଛନ୍ତି ଯେ ଶାସନର ଦ୍ୱାଦଶ ବର୍ଷରେ ବିଶାଳ ସେନା ସହ ମଗଧ ଆକ୍ରମଣ କରିଥିଲେ । ମଗଧର ରାଜା ବହସତି ମିତ ଖାରବେଳଙ୍କ ପଦ ବନ୍ଦନା କରି ବହୁ ଧନରତ୍ନ ଦେଇଥିଲେ ଓ ଖାରବେଳ ନନ୍ଦରାଜା ପୂର୍ବରୁ କଳିଙ୍ଗକୁ ପରାସ୍ତ କରି ନେଇଥିବା 'କଳିଙ୍ଗ ଜିନ' ସହ ପ୍ରତ୍ୟାବର୍ତ୍ତନ କରିଥିଲେ । ତେଣୁ କଳିଙ୍ଗ ଏକଦା ନନ୍ଦରାଜାଙ୍କ ଦ୍ୱାରା ପରାସ୍ତ ହୋଇଥିଲା । ଏହି ନନ୍ଦରାଜା ଅଧିକାଂଶ ଗବେଷକଙ୍କ ଦ୍ୱାରା ସମ୍ରାଟ ଅଶୋକ ବୋଲି ଚିହ୍ନିତ କରାଯାଇଛି । କିନ୍ତୁ ଏହା କ'ଣ ଯୁକ୍ତିଯୁକ୍ତ ? ଖାରବେଳ ମଗଧର ରାଜା ବୃହସ୍ପତି ମିତ୍ରଙ୍କ ବିଷୟରେ ଲେଖିଥିବା ଅଜ୍ଞ ଥିଲେ । ତେଣୁ ଏଠାରେ ପ୍ରଶ୍ନ ଉଠେ ଯେ ମୌର୍ଯ୍ୟ ବଂଶର ପତନ ପରେ ଓ ମଗଧରେ ଶୁଙ୍ଗ ବଂଶର ଶାସନ ଥିବା ସମୟରେ ଖାରବେଳ କଳିଙ୍ଗର ରାଜା ଥିଲେ । କିନ୍ତୁ ଏପରି ଏକ ଭୟାବହ ଯୁଦ୍ଧ ହୋଇଥିଲେ ମଧ୍ୟ ସେ ଏଥିପ୍ରତି ଅଜ୍ଞ ଥିବାର ମନେହୁଏ । ହାତୀଗୁମ୍ଫା ଶିଳାଲେଖରେ ବର୍ଣ୍ଣିତ ହୋଇଛି ଯେ ଖାରବେଳ ରାଜତ୍ୱର ପଞ୍ଚମ ବର୍ଷରେ ତିନିଶହ ବର୍ଷ ପୂର୍ବେ ନନ୍ଦରାଜା ଖୋଳାଇଥିବା ପ୍ରଣାଳୀକୁ ତନସୁଲୀ ବାଟ ଦେଇ କଳିଙ୍ଗ ନଗରୀ ପର୍ଯ୍ୟନ୍ତ ବିସ୍ତୃତ କରାଇଥିଲେ । ଏଠାରେ ନନ୍ଦରାଜା ଅଶୋକଙ୍କ ସହ ଚିହ୍ନିତ କରାଯାଇଛି । କାରଣ ପ୍ରଥମତଃ ନନ୍ଦରାଜାମାନଙ୍କୁ ଇତିହାସରେ ଅତିବୃତ୍ତ ଭାବରେ ଚିହ୍ନିତ କରାଯାଇଛି ଓ ସେମାନେ କୌଣସି ଜନହିତକର କାର୍ଯ୍ୟ କରିଥିବାର ସୂଚନା ମଧ୍ୟ ଇତିହାସରେ କମ୍ । କିନ୍ତୁ ଅଶୋକଙ୍କ ଗିରନର ଶିଳାଲେଖରେ ଖ୍ରୀ:ପୂ: ୧୫୦ରେ ରୁଦ୍ର ଦମନ ପ୍ରଥମ ଦ୍ୱାରା ଖୋଦିତ ଏକ ଶିଳାଲେଖରେ ବର୍ଣ୍ଣିତ ହୋଇଛି ଯେ ଅଶୋକ ଏଠାରେ ଏକ କେନାଲ ତିଆରି କରିଥିଲେ । ସମ୍ରାଟ ଅଶୋକ କଳିଙ୍ଗରେ କେନାଲ ଖୋଳାଇ ଥିବାର ତାଙ୍କ ଶିଳାଲେଖରେ କୌଣସି ବର୍ଣ୍ଣନା ନାହିଁ । ଅଶୋକ ତାଙ୍କ ଜନହିତକର କାର୍ଯ୍ୟର ସମସ୍ତ ବର୍ଣ୍ଣନା ଧଉଳି ଓ ଜଉଗଡ଼ଠାରେ ଥିବା ଶିଳାଲେଖରେ କରିଥିବା ସମୟରେ କିପରି ଏକ ଉଲ୍ଲେଖନୀୟ କାର୍ଯ୍ୟର ସୂଚନା ଏଠାରେ ନାହିଁ । ତେଣୁ ନନ୍ଦରାଜାଙ୍କୁ ଅଶୋକଙ୍କ ସହ ଚିହ୍ନିତ କରିବା ଯୁକ୍ତିଯୁକ୍ତ ନୁହେଁ । ତେବେ ଏହା ସ୍ପଷ୍ଟ ଯେ କଳିଙ୍ଗ ଯୁଦ୍ଧ ପୂର୍ବରୁ ନନ୍ଦମାନେ ଏକଦା କଳିଙ୍ଗ ଆକ୍ରମଣ କରିଥିଲେ । ତେଣୁ ଅଶୋକଙ୍କ ବର୍ଣ୍ଣିତ ଅପରାଜୟ କଳିଙ୍ଗ ଓ ଯୁଦ୍ଧର ଭୟାବହତା ନିଶ୍ଚୟ ଅତିରଞ୍ଜିତ ।

ପୁନଶ୍ଚ ହାତୀଗୁମ୍ଫା ଓ ଅଶୋକଙ୍କ ଶିଳାଲେଖରେ ବର୍ଣ୍ଣିତ ଅପରାଜିତ କଳିଙ୍ଗ ବିଷୟକୁ କିପରି ଗବେଷକମାନେ ସହଜରେ ନେଉଛନ୍ତି । ଏଥିରେ କୌଣସି ଦ୍ୱିମତ ନାହିଁ ଯେ କଳିଙ୍ଗ ଯୁଦ୍ଧ ହୋଇଥିଲା, କିନ୍ତୁ ଶିଳାଲେଖରେ ଏହାର ବର୍ଣ୍ଣନା ଅତିରଞ୍ଜିତ, ପୂର୍ବରୁ କୁହାଯାଇଛି ଯେ ଶିଳାଲେଖରେ କଳିଙ୍ଗ ଯୁଦ୍ଧର ବର୍ଣ୍ଣନା କେବଳ ବହିଃଶତ୍ରୁମାନଙ୍କୁ ଭୟଭୀତ କରାଇବା ପାଇଁ ବୋଧହୁଏ ଖୋଦିତ ହୋଇଥିଲା, ଦ୍ୱିତୀୟତଃ କଳିଙ୍ଗ କହିଲେ ଓଡ଼ିଶାର ଏକ ଅଂଶ, ତେଣୁ ଯୁଦ୍ଧରେ ପରାଜୟର ଅର୍ଥ ଓଡ଼ିଶାର ପରାଜୟ ନୁହେଁ । ଏହା

କୁହାଯାଇପାରେ ଯୁଦ୍ଧରେ ଓଡ଼ିଶାର ପରାଜୟ ହୋଇ ନଥିଲା, ପରନ୍ତୁ ଅଶୋକଙ୍କ ବର୍ବୋରଚିତ ଆକ୍ରମଣର ବିରୋଧରେ ଏକ ଶାନ୍ତିକାମି ରାଜ୍ୟ ଯାହାର ମୁଖ୍ୟ କର୍ମ ବହିର୍ବାଣିଜ୍ୟ ସେମାନେ ଦେଶାନ୍ତର ଗମନ କରିଥିଲେ । ଉପରୋକ୍ତ ତଥ୍ୟକୁ ଆଧାର କରି ଶେଷରେ ଏହା କୁହାଯାଇପାରେ ଯେ କଳିଙ୍ଗ ଅଶୋକଙ୍କ ଦ୍ୱାରା ପରାଜିତ ହୋଇ ନଥିଲା ବରଂ ପ୍ରଜାମାନଙ୍କ ଧନଜୀବନର ସୁରକ୍ଷା ପାଇଁ କଳିଙ୍ଗବାସୀ ଦେଶାନ୍ତର ଗମନ କରିଥିଲେ, ଯାହାର ପ୍ରମାଣ ବର୍ତ୍ତମାନ ଆଂଶିକ ଭାବରେ ଇଣ୍ଡୋନେସିଆର ବାଲି ଦ୍ୱୀପରୁ ମିଳୁଅଛି ।

**ସୂଚନା ପଞ୍ଜୀ :**


୧. Munkud, D.R. (Ed.) - Kiskindha Kanda - The fourth book of the Valmiki Ramayan - XLV - Baroda-1965.

୨. Panigrahi, K.C. - History of Orissa - p.4, Cuttack, 1995.

୩. Hultzsch, E. - Corpus Inscriptionum Indicarum - V.-I (Inscription of Asoka), Shahbazgarhi - XI & XII - 13th Rock Edict, p.66, 70 & Manshera - 13th Rock Edict - XII & XIII - p.81-83.

୪. Sircar, D.C. - Select Inscriptions, Bearing Indian History & Civilization, V.-I (from 6th C.BC to 6th CA.D. Calcutta University-1942.

୫. Sahu, N.K. - Kharvela - p.300, Bhubaneswar-1984.

୬. Sharma, I.K. & J. Varaprasad Rao - Early Brahmi Inscription from Sannati, Part-I, Asokan Edict, p.1-56, New Delhi-1993.

୭. Lal, B.B. - Ancient India - Bulletin of the Archaeological Survey of India, No.-5, p.62-105, New Delhi-1949.

୮. Tripathy, S. - Kharavela O Samprukta Aitihusika Samasya (eka abhilekhabhitika alochana) Bhubaneswar-1999.

୯. Watters, Thomas - Or-yuan chwang's Travels in India, Vol.-II, p.193-208, London-1905.

୧୦. Watters, Thomas - Or yuan chwang's Travels in India, V.-II, p.198-199, London-1905.

୧୧. Sharma & Rao - ibid.

୧୨. Pradhan, D.R. - School of Oriental & African Studies, London University, London-2001.

୧୩. Hultzsch - ibid.

୧୪. Sircar, D.C. - Select Inscription, Bearing on Indian History & Civilization, V.-I from 6thC BC-6thC AD, p.206-213, Calcutta University-1942.


ନ୍ୟାସନାଲ ମେନୁସ୍କ୍ରିପ୍ଟ ମିଶନ
ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର

## ୨୦୦୫-୦୬ ଶିକ୍ଷାବର୍ଷ ପାଇଁ ୪ କୋଟି ୧୫ ଲକ୍ଷରୁ ଊର୍ଦ୍ଧ୍ୱ ମାଗଣା ପାଠ୍ୟପୁସ୍ତକ ପ୍ରାଥମିକ ଓ ଉଚ୍ଚ ପ୍ରାଥମିକ ଛାତ୍ରଛାତ୍ରୀଙ୍କୁ ଯୋଗାଇ ଦିଆଯିବ - ଗଣଶିକ୍ଷା ମନ୍ତ୍ରୀ ଶ୍ରୀ ପ୍ରଧାନ

୨୦୦୫-୦୬ ଶିକ୍ଷାବର୍ଷରେ ୪ କୋଟି ୧୫ ଲକ୍ଷରୁ ଊର୍ଦ୍ଧ୍ୱ ପାଠ୍ୟପୁସ୍ତକ ପ୍ରାଥମିକ ଓ ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ଛାତ୍ରଛାତ୍ରୀମାନଙ୍କୁ ମାଗଣାରେ ଯୋଗାଇ ଦିଆଯିବ ବୋଲି ବିଦ୍ୟାଳୟ ଓ ଗଣଶିକ୍ଷା ମନ୍ତ୍ରୀ ଶ୍ରୀ ନଗେନ୍ଦ୍ର କୁମାର ପ୍ରଧାନ ପ୍ରକାଶ କରିଛନ୍ତି ।

ଗତ ନଭେମ୍ବର୯ ତାରିଖରେ ସଚିବାଳୟସ୍ଥ ତାଙ୍କ ପ୍ରକୋଷ୍ଠଠାରେ ଏକ ଉଚ୍ଚସ୍ତରୀୟ ବୈଠକରେ ମନ୍ତ୍ରୀ ଶ୍ରୀ ପ୍ରଧାନ ଅଧ୍ୟକ୍ଷତା କରି ପ୍ରଥମରୁ ସପ୍ତମ ଶ୍ରେଣୀ ପର୍ଯ୍ୟନ୍ତ ଛାତ୍ରଛାତ୍ରୀଙ୍କ ପାଇଁ ପାଠ୍ୟପୁସ୍ତକଗୁଡ଼ିକ ଠିକ୍ ସମୟରେ ଛପା ଯାଇ ବଣ୍ଟନ କରିବା ପାଇଁ ନିର୍ଦ୍ଦେଶ ଦେଇଥିଲେ । ରାଜ୍ୟର ସ୍କୁଲଗୁଡ଼ିକରେ ୭୮ ଲକ୍ଷରୁ ଊର୍ଦ୍ଧ୍ୱ ପିଲାଙ୍କ ପାଇଁ ଆବଶ୍ୟକ ହେଉଥିବା ୪ କୋଟି ୧୫ ଲକ୍ଷରୁ ଊର୍ଦ୍ଧ୍ୱ ପାଠ୍ୟପୁସ୍ତକ ଟେଷ୍ଟବୁକ୍ ପ୍ରେସ୍‌ରେ ଛପା ଯାଇ ଯୋଗାଇ ଦିଆଯିବ । ଆସନ୍ତା ଶିକ୍ଷାବର୍ଷ ଅପ୍ରେଲ ମାସରୁ ଆରମ୍ଭ ହେଉଥିବାରୁ ପୁସ୍ତକ ଛପାକାର୍ଯ୍ୟ ସରିବା ସହିତ ପିଲାମାନଙ୍କୁ ଅପ୍ରେଲ ୧ ତାରିଖରୁ ୩୦ ତାରିଖ ମଧ୍ୟରେ ପୁସ୍ତକ ଯୋଗାଇ ଦେବା ପାଇଁ ମନ୍ତ୍ରୀ ବିଭାଗୀୟ ଅଧିକାରୀମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି । ଏହି ପୁସ୍ତକଗୁଡ଼ିକୁ ଛପାଇବାରେ ରାଜ୍ୟ ସରକାରଙ୍କୁ ୩୯ କୋଟି ୧୭ ଲକ୍ଷ ୮୬ ହଜାର ୨୨୬ ଟଙ୍କା ବ୍ୟୟ ବହନ କରିବାକୁ ପଡ଼ିବ । ଏହି ପୁସ୍ତକଗୁଡ଼ିକ ବଣ୍ଟନ ସମୟରେ ସ୍ଥାନୀୟ ଲୋକ ପ୍ରତିନିଧିମାନଙ୍କୁ ନିମନ୍ତ୍ରଣ କରିବା ପାଇଁ ମନ୍ତ୍ରୀ ପରାମର୍ଶ ଦେଇଥିଲେ ।

# ଉତ୍କଳୀୟ ସଂସ୍କୃତି ଓ ନଦନଦୀର ଆଧ୍ୟାତ୍ମିକ ମାହାତ୍ମ୍ୟ

କୁଳମଣି ନାଥଶର୍ମା

ଉତ୍କୃଷ୍ଟ କଳାର ରାଜ୍ୟ ଉତ୍କଳର ପୌରାଣିକ ଓ ଐତିହାସିକ ଗୌରବ ସଂପର୍କରେ ଅଧିକାଂଶ ଓଡ଼ିଶାର ଅଧିବାସୀ ଅବଗତ ନୁହନ୍ତି । ଏହାର ସାଂସ୍କୃତିକ ତଥା ଆଧ୍ୟାତ୍ମିକ ମହତ୍ୱ ସମ୍ବନ୍ଧରେ ଅଦ୍ୟାବଧି ଯାହାକିଛି ଆଲୋଚନା କରାଯାଇଛି, ତାହା ଆମ ରାଜ୍ୟର ଅନାଲୋଚିତ ଐତିହ୍ୟ ତୁଳନାରେ ଅତି ସଂକ୍ଷିପ୍ତ କହିଲେ ଅତ୍ୟୁକ୍ତି ହେବ ନାହିଁ । ଭାରତର ଆଦିଗ୍ରନ୍ଥ ବେଦଠାରୁ ଆରମ୍ଭ କରି ଆଜି ସୁଦ୍ଧା ଯେତେ ପ୍ରାମାଣିକ ଓ ପୌରାଣିକ ଗ୍ରନ୍ଥ ରହିଛି ସେଥିରେ ଓଡ଼ିଶାର ପ୍ରାକୃତିକ ପରିସ୍ଥିତି, ଧର୍ମ ଧାରଣା, ଐତିହାସିକ କୃତି ଓ କୀର୍ତ୍ତି, ବଳିଷ୍ଠ ସାଂସ୍କୃତିକ ବିଭବ, ଆଧ୍ୟାତ୍ମିକ ବିଶେଷତ୍ୱ ତଥା କଳାତ୍ମକ ଉତ୍କର୍ଷ ସଂପର୍କିତ ତଥ୍ୟରାଜି ସମ୍ବନ୍ଧରେ ପ୍ରତିଟି ଓଡ଼ିଆ ସଚେତନ ବା ଅବହିତ ହେବା ବାଞ୍ଛନୀୟ ।

ଆଜି ଯେଉଁ ଭୂଖଣ୍ଡକୁ ଆମେ ଓଡ଼ିଶା ବୋଲି କହୁ, ଅତୀତରେ ଏହା ଉଡ୍ର, କଳିଙ୍ଗ, କଙ୍ଗୋଦ, କୋଶଳ ଓ ମଣ୍ଡଳ ରାଜ୍ୟ ପ୍ରଭୃତି ନାମରେ ନାମିତ ହୋଇଥିଲା । ଭିନ୍ନ ଭିନ୍ନ ଅଂଚଳର ସଂସ୍କୃତି ଓ ସଭ୍ୟତାର ସମନ୍ୱୟରେ ହିଁ ଆଜିର ଓଡ଼ିଆ ସଂସ୍କୃତିର ଉତ୍ପତ୍ତି । ପୌରାଣିକ ମତବାଦ ଅନୁଯାୟୀ ବୈବସ୍ୱତ ମନୁଙ୍କ ପୁତ୍ର ସୁଦ୍ୟୁମ୍ନଙ୍କ ପୁତ୍ର ଉତ୍କଳଙ୍କ ନାମରେ ଏଇ ଭୂଖଣ୍ଡ ନାମିତ ହୋଇଥିଲା । ଅନ୍ୟ ଏକ ପ୍ରବାଦ କହେ ଯେ ବଳିରାଜାଙ୍କ ପତ୍ନୀ ସୁଦେଷ୍ଣାଙ୍କ ଗର୍ଭରୁ ତତ୍କାଳୀନ ନିୟୋଗ ଯଥାକ୍ରମେ ଦୀର୍ଘତମା ଋଷିଙ୍କ ଦ୍ୱାରା ଜନ୍ମ ନେଲେ ପାଞ୍ଚଗୋଟି ପୁତ୍ର । ସେମାନେ ଥିଲେ ଅଙ୍ଗ, ବଙ୍ଗ, କଳିଙ୍ଗ, ପୁଣ୍ଡ ଓ ସୁହ୍ମ ଯେଉଁମାନେ କି ପାଞ୍ଚଗୋଟି ରାଜ୍ୟର ଶାସନଭାର ଗ୍ରହଣ କରିଥିଲେ ।

ଭାଗବତ ପୁରାଣ ଆଖ୍ୟାନ ଭିତ୍ତିରେ ରାଣୀ ସୁଦେଷ୍ଣା ଓ ଦୀର୍ଘତମାଠାରୁ ଜନ୍ମ ନେଇଥିବା ଛଅଗୋଟି ପୁତ୍ର ମଧ୍ୟରୁ ଉଡ୍ର ଥିଲେ ଷଷ୍ଠ ସନ୍ତାନ, ଯାହାଙ୍କ ନାମରେ ଆଜିର ଓଡ଼ିଶା ଭୂଖଣ୍ଡ ପରିଚିତ ଥିଲା । ଉଡ୍ର, ଉତ୍କଳ ଓ କଳିଙ୍ଗ ଆଦି ନାମକରଣ ପଛରେ ଏହି ଅଞ୍ଚଳର ଆଦିମ ସଭ୍ୟତାର ସୂଚନା ମିଳେ ।

ଅନ୍ୟପକ୍ଷରେ 'ଓକ୍କଳ' ଶବ୍ଦରୁ ଉତ୍କଳର ସୃଷ୍ଟି ହୋଇଥାଇପାରେ ବୋଲି ଅନୁମାନ କରାଯାଉଛି । 'ଓକ୍କଳ' ଶବ୍ଦର ଅର୍ଥ ହେଉଛି କୃଷି ପ୍ରଧାନ ଦେଶ । ସେତେବେଳେ ଉତ୍କଳ ରାଜ୍ୟରେ କୃଷିର ପ୍ରାଧାନ୍ୟ ଦୃଷ୍ଟିରୁ ଏହି ଓକ୍କଳ ଶବ୍ଦରୁ ନିଷ୍ପନ୍ନ 'ଉତ୍କଳ' ମଧ୍ୟ ଅନେକଙ୍କ ଦ୍ୱାରା ଗ୍ରହଣୀୟ ।

ଐତିହାସିକ ଦୃଷ୍ଟିକୋଣରୁ ବିଚାର କଲେ ଜଣାଯାଏ ଯେ ଉତ୍କଳର ନାମ ଥିଲା କଳିଙ୍ଗ । ଏହାର ଉତ୍ତର ସୀମା ଗଙ୍ଗା ନୁହେଁ, ବୈତରଣୀ ବୋଲି କୌଟିଲ୍ୟ ମତପ୍ରଦାନ କରିଛନ୍ତି । ତାଙ୍କର ମତାନୁଯାୟୀ କଳିଙ୍ଗ ରାଜ୍ୟ ଥିଲା ହୃଷ୍ଟପୁଷ୍ଟ ହାତୀ ଓ ବସ୍ତ୍ରଶିଳ୍ପ ପାଇଁ ପ୍ରସିଦ୍ଧ । ଇତିହାସରେ କଳିଙ୍ଗ, କୁଲିଙ୍ଗ, କ୍ଲୀଙ୍ଗ ଆଦି ଶବ୍ଦ ଦେଖିବାକୁ ମିଳେ । କେତେକ ଗ୍ରୀକ୍ ଲେଖକ ମଧ୍ୟ ମହାନଦୀକୁ କଳିଙ୍ଗର ସୀମା ବୋଲି ମତପ୍ରଦାନ କରିବା ସାଂଗକୁ କଳିଙ୍ଗ ରାଜ୍ୟ ତିନି ଭାଗରେ ବିଭକ୍ତ ଥିବାର ସୂଚନା ଦିଅନ୍ତି, ଯଥା- ଗଙ୍ଗାରି ଡାଇ କଳିଙ୍ଗ, ମେକ୍କୋ କଳିଙ୍ଗ ଓ କଳିଙ୍ଗ ।

ଏହାର ସାଂସ୍କୃତିକ ଇତିହାସକୁ ଅଧ୍ୟୟନ କଲେ ଜଣାପଡ଼େ ଯେ ମହାଭାରତ ଯୁଦ୍ଧ ପୂର୍ବରୁ କଳିଙ୍ଗ ରାଜ୍ୟରେ ଆର୍ଯ୍ୟ ସଂସ୍କୃତି ପ୍ରବେଶ କରି ପାରିନଥିଲା । କଳିଙ୍ଗ ରାଜା ଚିତ୍ରାଙ୍ଗଦଙ୍କ କନ୍ୟାର ସ୍ୱୟମ୍ବର ବେଳେ ଶିଶୁପାଳ, ଜରାସନ୍ଧ, ଭୀଷ୍ମକଓ ଭୋଜ ପ୍ରଭୃତି ଅନେକ ରାଜା ଯୋଗଦାନ କରିଥିବା ଜଣାପଡ଼େ । ମହାଭାରତ ଯୁଦ୍ଧ ବେଳେ କଳିଙ୍ଗ ରାଜା ଶତାୟୁଧ କୌରବ ପକ୍ଷରେ ଯୋଗ ଦେଇ ଶେଷରେ ପାଣ୍ଡବ ପକ୍ଷର ସହଦେବଙ୍କ ଦ୍ୱାରା ପରାସ୍ତ ହୋଇଥିବାର ଉଲ୍ଲେଖ ରହିଛି ।

ଏଥିରୁ ସ୍ପଷ୍ଟ ପ୍ରମାଣ ମିଳେ ଯେ ଯୁଗ ଯୁଗ ଧରି ଓଡ଼ିଶା ରାଜ୍ୟର ପ୍ରାକୃତିକ ସୌନ୍ଦର୍ଯ୍ୟ, ସାଂସ୍କୃତିକ ଓ ଐତିହାସିକ ପରମ୍ପରା, ଅନେକ ସମୟରେ ଦେବତାଙ୍କ ପକ୍ଷରେ ମଧ୍ୟ ପରମ ଲୋଭନୀୟ ହୋଇଆସିଛି । ସର୍ବୋପରି ଦେବାଧି ଦେବ ସ୍ୱୟଂ ଶ୍ରୀ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଅବସ୍ଥାନ ଓଡ଼ିଶା ଭୂଖଣ୍ଡର ମହତ୍ୱକୁ ବହୁଗୁଣରେ ପରିବର୍ଦ୍ଧିତ କରିପାରିଛି । କେବଳ ସେତିକି ନୁହେଁ, ପ୍ରକୃତିର ଅପାର କୃପା ଓ ବରଦାନ ତଥା ଶ୍ରୀଜଗନ୍ନାଥଙ୍କ କରୁଣା ଦୃଷ୍ଟିରୁ ଏଇ ରାଜ୍ୟର ଠାକୁର ଆଜି 'ବଡ଼ଠାକୁର', ଏଇ ରାଜ୍ୟର ଦେଉଳ ଆଜି 'ବଡ଼ଦେଉଳ', ଯା'ର ଦାଣ୍ଡ ଆଜି 'ବଡ଼ଦାଣ୍ଡ', ଏଇ ରାଜ୍ୟର ଭୋଗ ଆଜି 'ବଡ଼ଭୋଗ', ଏଇ ପ୍ରଦେଶର ଦିଅଁଙ୍କ ବେଶ ଆଜି 'ବଡ଼ସିଂହାର

ବେଶ' ଓ ଏଇ ରାଜ୍ୟର ନଦୀ ଆଜି 'ମହାନଦୀ' ଏବଂ ଏଇ ରାଜ୍ୟର କବି ଆଜି ଅତିବଡ଼ି (ଜଗନ୍ନାଥ ଦାସ) ନାମରେ ସର୍ବଜନବିଦିତ ।

ବେଦ, ବେଦାଙ୍ଗ, ବେଦାନ୍ତ, କାବ୍ୟ ନାଟକ ସଂଗୀତ ଧର୍ମଶାସ୍ତ୍ରାଦି ରଚନା କରିଥିବା ଓଡ଼ିଶାର ଅନେକ ଯୋଗଜନ୍ମା ମହାପୁରୁଷମାନେ ଓଡ଼ିଶାର ଗୌରବକୁ ଯେତିକି ବୃଦ୍ଧିମନ୍ତ କରିଛନ୍ତି, ଏହି ଉର୍ଦ୍ଧ୍ୱସ୍ୱଳ ଭୂମିରେ ଅବସ୍ଥିତ ପ୍ରକୃତିର ବରଦାନ ସ୍ୱରୂପ ଘନ ଅରଣ୍ୟ, ପୁରାଣ ପ୍ରସିଦ୍ଧ ଗିରିବର ଓ ପୁଣ୍ୟତୋୟା ନଦୀ ସମୂହର ଆଧ୍ୟାତ୍ମିକ ମହତ୍ୱ ଶତାବ୍ଦୀ ଶତାବ୍ଦୀ ଧରି ଓଡ଼ିଶାର ଜନମାନସକୁ ପ୍ରବୃଦ୍ଧ କରିଆସିଛି ।

ପୌରାଣିକ ଆଖ୍ୟାନରୁ ଜଣାପଡ଼େ ଯେ ନଦନଦୀମାନଙ୍କର ଉତ୍ପତ୍ତି ଓ ଅବସ୍ଥିତିର ଉହାଡ଼ରେ ଆଧ୍ୟାତ୍ମିକ ମହତ୍ୱ ଲୁକ୍କାୟିତ ଯାହାକୁ ସାଧାରଣ ଲୋକେ ଜାଣିବା ଦୁରୂହ । 'ନଦୀ' ଶବ୍ଦ ସହ କେଉଁ ଅନାଦିକାଳରୁ ଦୈବତ୍ୱ ସମ୍ବନ୍ଧିତ ହୋଇ ଆସିଛି । 'ନଦୀ'ର ଆଭିଧାନିକ ଅର୍ଥ ସ୍ରୋତ ବିଶିଷ୍ଟ ଜଳପ୍ରବାହ ବୋଲି କୁହାଯାଉଥିଲେ ହେଁ ବିଭିନ୍ନ ନଦୀମାନଙ୍କ ନାମକରଣରୁ ଭାରତ ଭଳି ଆର୍ଯ୍ୟ ଭୂମିରେ ପ୍ରବାହିତ ନଦୀମାନଙ୍କର ଆଧ୍ୟାତ୍ମିକ ଗାଥା ପ୍ରତିଫଳିତ ହୋଇଥାଏ । ଗଙ୍ଗାଙ୍କ ପୁତ୍ର ଭୀଷ୍ମଙ୍କୁ 'ନଦୀଜ' ଓ ସ୍ୱୟଂ ମହାଦେବଙ୍କୁ 'ନଦୀଧର' ବୋଲି ଆଖ୍ୟାୟିତ କରାଯାଏ ।

ଆମ ରାଜ୍ୟ ଓଡ଼ିଶାରେ ପ୍ରବାହିତ ଏହି ନଦନଦୀର ତଟପାର୍ଶ୍ୱରେ ପରବର୍ତ୍ତୀ ସମୟରେ ଗଢ଼ି ଉଠୁଥିବା ଦେବାଳୟ ଓ ପାରିପାର୍ଶ୍ୱିକ ଜୀବନଧାରା ଏଗୁଡ଼ିକର ମହତ୍ୱକୁ ଅଧିକ ପ୍ରକଟିତ କରିବାରେ ସହାୟକ ହୋଇଥିବା କଥା ନଦନଦୀର ଇତିହାସରେ ଦେଖିବାକୁ ମିଳେ । ଏହି ଦୃଷ୍ଟିରୁ ଆଲୋଚନା କଲେ ଓଡ଼ିଶା ଭୂଖଣ୍ଡ ଦେଇ ପ୍ରବାହିତ ମହାନଦୀ ବୈତରଣୀ, ବ୍ରାହ୍ମଣୀ, ଚିତ୍ରୋତ୍ପଳା, ଋଷିକୂଲ୍ୟା ଖରସ୍ରୋତା, ବୁଢ଼ାବଳଙ୍ଗ ଆଦି ନଦୀର ଆଧ୍ୟାତ୍ମିକ ମହତ୍ୱ କମ୍ ଗୁରୁତ୍ୱପୂର୍ଣ୍ଣ ନୁହେଁ ।

**ଆଧ୍ୟାତ୍ମିକ ମହତ୍ୱ : ମହାନଦୀ**

ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ପୁଣ୍ୟତୋୟା ମହାନଦୀର ମହତ୍ୱ ଏକ ଅନୁଧ୍ୟାନର ବିଷୟ ।

ମଧ୍ୟପ୍ରଦେଶର ଅମରକଣ୍ଟକ ପର୍ବତମାଳରୁ ନିର୍ଗତ ହୋଇ ଏହା ପଶ୍ଚିମ ଓଡ଼ିଶାର ସୀମାନ୍ତବର୍ତ୍ତୀ ଅଞ୍ଚଳ ପୂଜାରୀପାଲିଠାରେ ଆଧୁନିକ ଓଡ଼ିଶା ସ୍ପର୍ଶ କରି ବଙ୍ଗୋପସାଗର ଅଭିମୁଖେ ଭୀମକାନ୍ତ ରୂପରେ ଆଗେଇ ଯାଇଛି । ମହାନଦୀର ନିର୍ଗମସ୍ଥଳ ଆଜି ଅବଶ୍ୟ ଓଡ଼ିଶାରେ ନାହିଁ, କିନ୍ତୁ ଅତୀତରେ ତାହା ପାଣ୍ଡୁବଂଶୀୟ ରାଜ୍ୟର ଅଧୀନ ଥିଲା । ପାଣ୍ଡୁବଂଶୀୟ ନରପତିମାନେ ମେଖଳ ନାମକ ଅଞ୍ଚଳରେ ଶାସନ କରୁଥିଲେ ହେଁ କୋଶଳର ସାମନ୍ତ ରାଜା ରୂପେ ପରିଗଣିତ ହେଉଥିଲେ । ଇତିହାସ ପ୍ରସିଦ୍ଧ ସେହି ପ୍ରାଚୀନ 'କୋଶଳ' ଆଜି କେତୋଟି ରାଜ୍ୟ ମିଶି ମହାପରାକ୍ରମୀ ଗଂଗରାଜାମାନଙ୍କ ଅମଳରେ ବିଶାଳ କଳିଙ୍ଗ ସାମ୍ରାଜ୍ୟ ଗଠିତ ହୋଇଥିଲା ।

ମଧ୍ୟପ୍ରଦେଶର 'ଅମରକଣ୍ଟକ' ମଧ୍ୟ ପ୍ରାଚୀନ ଉତ୍କଳ ଅନ୍ତର୍ଗତ ଥିବାର ପ୍ରମାଣ କେତେକ ପ୍ରାମାଣିକ ଗ୍ରନ୍ଥରୁ ମିଳେ । ସେହି ପ୍ରାଚୀନ 'ମେଖଳ' ସାମ୍ରାଜ୍ୟ ବା ଆଧୁନିକ ଛତିଶଗଡ଼ ଅଞ୍ଚଳର ଅମରକଣ୍ଟକ ପର୍ବତମାଳାରୁ ପୁଣ୍ୟସଲିଳା ମହାନଦୀ ନିର୍ଗତ ହୋଇ ଓଡ଼ିଶାକୁ ଶସ୍ୟଶ୍ୟାମଳା କରିବା ସଂଗେସଂଗେ ଉଭୟ ତଟବର୍ତ୍ତୀ ଅନେକ ପ୍ରସିଦ୍ଧ ଦେବାଳୟର ପ୍ରାତଃ ସାନ୍ଧ୍ୟକାଳୀନ ଘଣ୍ଟଧ୍ୱନୀ ତଥା ପ୍ରସିଦ୍ଧ ନଗର ଓ ଜନପଦର ଜନକୋଳାହଳକୁ ପରିବହନ କରି ପୂର୍ବୋପସାଗରର ଉତ୍ତୁଙ୍ଗ ତରଙ୍ଗମାଳାର ଭୀମ ଗର୍ଜନ ସହିତ ସମ୍ମିଳିତ କରାଇବାର ଅନିର୍ବଚନୀୟ ଦୃଶ୍ୟ ବାସ୍ତବିକ ଉପଭୋଗ୍ୟ ।

ଏହାର ବକ୍ର ଗତିପଥରେ ବିବିଧ ନାମ ଧାରଣ କରିଛି ମହାନଦୀ । ସୋନପୁରଠାରୁ 'ତେଲବାହ' ନଦୀର ସମ୍ମିଶ୍ରଣରେ ସମ୍ବଲପୁର ପର୍ଯ୍ୟନ୍ତ ଏହା 'ଚିତ୍ରୋତ୍ପଳା' ନାମରେ ଖ୍ୟାତ । ଏହି ବିଶାଳକାୟ ନଦୀର ଚିତ୍ରୋତ୍ପଳା ଓ ମହାନଦୀ ଏହି ଦୁଇଟି ନାମ ଥିବାର ପ୍ରମାଣ ପ୍ରାଚୀନ ଅଭିଲେଖ, ଧର୍ମଶାସ୍ତ୍ର ଓ ପୁରାଣାଦିରୁ ମିଳେ ।

'ବ୍ରହ୍ମପୁରାଣ', 'କପିଳସଂହିତା' ଓ 'ନୀଳାଦ୍ରି ମହୋଦୟ' ନାମକ ଧର୍ମଶାସ୍ତ୍ରରେ ମହାନଦୀକୁ ସକଳ ପାପ ବିଧ୍ୱଂସିନୀ ଗଙ୍ଗା ସହ ତୁଳନା କରାଯାଇଛି । 'ଉତ୍ପଳେଶ'ଙ୍କଠାରୁ ଆରମ୍ଭ କରି 'ଚିତ୍ରା ମହେଶ୍ୱରୀ' ପର୍ଯ୍ୟନ୍ତ ମହାନଦୀର ଜଳପ୍ରବାହକୁ 'ଚିତ୍ରୋତ୍ପଳା' ବୋଲି କୁହାଯାଉଥିବା ପ୍ରମାଣ ମିଳୁଛି । ବ୍ରହ୍ମପୁରାଣରେ ବର୍ଣ୍ଣିତ ହୋଇଛି -

'ନଦୀ ତତ୍ର ମହାପୁଣ୍ୟା ବିନ୍ଧ୍ୟପାଦବିନିର୍ଗତା
ଚିତ୍ରୋତ୍ପଳେତି ବିଖ୍ୟାତା ସର୍ବପାପହରା ଶୁଭା ।'

ସେହିପରି 'ନୀଳାଦ୍ରି ମହୋଦୟ' ଗ୍ରନ୍ଥରେ ମଧ ନିମ୍ନୋକ୍ତ ମତେ ବର୍ଣ୍ଣନା କରାଯାଇଛି ।

'ମହାନଦୀତି ବିଖ୍ୟାତା ପୂବସାଗର ଗାମିନୀ
ବର୍ତ୍ତତେ ପୃଥିବୀନାଥ ଗଙ୍ଗେବ ମୁକ୍ତିଦାୟିନୀ ।'

ଏହି ପୁଣ୍ୟସ୍ରୋତା ମହାନଦୀର କୂଳେ କୂଳେ ଭଦ୍ରାମ୍ବିକା, ସୁବର୍ଣ୍ଣମେରୁ (ସୁବର୍ଣ୍ଣପୁର) ସମଲେଶ୍ୱରୀ (ସମ୍ବଲପୁର), ସିଦ୍ଧେଶ୍ୱର ଓ ନୀଳମାଧବ (ବୌଦ୍ଧ), ନୀଳମାଧବ (କଣ୍ଟିଲୋ), ଚର୍ଚ୍ଚିକା (ବାଙ୍କୀ), ରାମନାଥ ଓ ସିଂହନାଥ (ବୈଦ୍ୟେଶ୍ୱର), ଚମ୍ପେଶ୍ୱର (ନରସିଂହପୁର), ରାମଚଣ୍ଡୀ (ଦେବୀଦ୍ୱାର) ଓ ଧବଳେଶ୍ୱରାଦି ଦେବଦେବୀଙ୍କ ବିଖ୍ୟାତ ପ୍ରାଚୀନ ମନ୍ଦିରର ଅବସ୍ଥିତି କେବଳ ଯେ ପାରିପାର୍ଶ୍ୱିକ ଜୀବନଧାରାକୁ ଧର୍ମଧାରଣାରେ ପ୍ରଭାବିତ କରିପାରିଛି ତାହା ନୁହେଁ, ଏହି ଦେବାଳୟ ଗଢ଼ି ଉଠିବା ପଛରେ ଥିବା କିମ୍ବଦନ୍ତୀ

ଆଧ୍ୟାତ୍ମିକ ଦୃଷ୍ଟିରୁ ଯେପରି ମହତ୍ୱପୂର୍ଣ୍ଣ ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିରୁ ମଧ୍ୟ ଗୁରୁତ୍ୱପୂର୍ଣ୍ଣ ।

**ବୈତରଣୀ : ସର୍ବପାପହରାୟଣୀ**

କେନ୍ଦୁଝର ଜିଲ୍ଲାର ଗୋନାସିକା ପର୍ବତରୁ ନିଃସୃତ ହୋଇ ମୟୂରଭଂଜ, କେନ୍ଦୁଝର, ବାଲେଶ୍ୱର ଓ କଟକ ଜିଲ୍ଲାର ସୀମା ଦେଇ ପୂର୍ବୋପସାଗର ଅଭିମୁଖେ ବହି ଯାଉଥିବା ନଦୀଟିର ନାମ 'ବୈତରଣୀ' । ଏହି ନଦୀତଟରେ ଅବିଭକ୍ତ କଟକ ଜିଲ୍ଲା ଅଧୀନ ବର୍ତ୍ତମାନ ଯାଜପୁର ଜିଲ୍ଲାର ସୁପ୍ରସିଦ୍ଧ 'ବିରଜା କ୍ଷେତ୍ର' ଓ ଭଦ୍ରଖ ଜିଲ୍ଲାର ଆରଡ଼ିର ମହାମହିମ ଶ୍ରୀ ଶ୍ରୀଆଖଣ୍ଡଳମଣି ବା ଶ୍ରୀଆଖଣ୍ଡଳେଶ୍ୱର ପବିତ୍ରପୀଠ, କେନ୍ଦୁଝରର କୋଶଳେଶ୍ୱର, କେନ୍ଦୁଝରର ଜନୈକ ରାଜା ଜ୍ୟୋତିଭଂଜଙ୍କ ନାମରେ ନାମିତ ଜ୍ୟୋତିପୁର ଓ ମୟୂରଭଂଜର ଆଦିପୁର (ମୟୂରଭଂଜର ପ୍ରଥମ ରାଜା ଆଦିଭଂଜଙ୍କ ନାମରେ ନାମିତ) ଆଦି ପବିତ୍ର ଦେବାଳୟ ତଥା ଆଧ୍ୟାତ୍ମିକ ପୀଠ ବିରାଜମାନ ।

ବୈତରଣୀ ନଦୀର ମାହାତ୍ମ୍ୟ ଶ୍ରୀମଦ୍ ଭାଗବତ୍, ବାମନପୁରାଣ, କପିଳସଂହିତା ଓ ତୀର୍ଥ ଚିନ୍ତାମଣି ଆଦି ପ୍ରସିଦ୍ଧ ଗ୍ରନ୍ଥରେ ଦେଖିବାକୁ ମିଳେ । କପିଳସଂହିତା ଓ ତୀର୍ଥ ଚିନ୍ତାମଣିରେ ବୈତରଣୀକୁ ଗଙ୍ଗା ସହିତ ତୁଳନା କରାଯାଇ ସେଥିରେ ଅବଗାହନ କଲେ ଓ ଅଶେଷ ପୁଣ୍ୟ ମିଳେ ବୋଲି କୁହାଯାଇଛି ।

'ଆସ୍ତେ ବୈତରଣୀ ତତ୍ର ସର୍ବପାପହରା ନଦୀ
ଯସ୍ୟା ସ୍ନାତ୍ୱା ନରଶ୍ରେଷ୍ଠଃ ସର୍ବପାପୌଃ ପ୍ରମୁଚ୍ୟତେ ।'
(ତୀର୍ଥ ଚିନ୍ତାମଣି)

ବିରଜା କ୍ଷେତ୍ର ବା ଯାଜପୁରର ପ୍ରସିଦ୍ଧ ଦଶାଶ୍ୱମେଧ ଘାଟ, ଯଜ୍ଞବରାହ, ସପ୍ତମାତୃକା ଓ ସିଦ୍ଧେଶ୍ୱର ଆଦି ପୀଠ ଏହି ପୁଣ୍ୟତୋୟା ବୈତରଣୀ ନଦୀକୂଳରେ ଅବସ୍ଥିତ । ଏହି ବୈତରଣୀ ତଟରେ 'ନାଭିଗୟା' କ୍ଷେତ୍ର ହିନ୍ଦୁମାନଙ୍କର ପ୍ରସିଦ୍ଧ ପିଣ୍ଡଦାନ କ୍ଷେତ୍ର ରୂପେ ଲୋକବିଶ୍ରୁତ ।

**ବ୍ରାହ୍ମଣୀନଦୀ**

ଛୋଟନାଗପୁର ଅଞ୍ଚଳରୁ ବାହାରି 'ଶଙ୍ଖ' ଓ 'କୋଇଲି' ନାମକ ନଦୀଦ୍ୱୟର ସମ୍ମିଶ୍ରଣରେ ପୂର୍ବୋପସାଗର ଅଭିମୁଖରେ ଅନୁଗାମିନୀ ଏହି ବ୍ରାହ୍ମଣୀନଦୀ ଧାର୍ମିକ ଦୃଷ୍ଟିକୋଣରୁ ମହତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରେ । 'କପିଳସଂହିତା'ରେ ଏହାକୁ ଗଙ୍ଗାନଦୀର ଅନ୍ୟତମ ଧାରା ବୋଲି ବର୍ଣ୍ଣନା କରାଯାଇଛି । ମହାଭାରତ ଓ ଶ୍ରୀମଦ୍ ଭାଗବତ ଗୀତା ଆଦି ହିନ୍ଦୁମାନଙ୍କର ବହୁ ପବିତ୍ର ନଦୀକୂଳରେ ରଚିତ ହୋଇଥିବାର କିମ୍ବଦନ୍ତୀ ରହିଛି । ସୁନ୍ଦରଗଡ଼ ଜିଲ୍ଲା 'ପାନପୋଷ' ନିକଟରେ ବ୍ରାହ୍ମଣୀନଦୀ କୂଳରେ ବେଦବ୍ୟାସ ଜୟନ୍ତୀ ଓ ବେଦବ୍ୟାସ ମେଳା ଅନୁଷ୍ଠାନ ଏହି ନଦୀର ଆଧ୍ୟାତ୍ମିକ ମାହାତ୍ମ୍ୟ ସମ୍ବନ୍ଧରେ ସୂଚନା ଦିଏ । ଅଷ୍ଟାଦଶ ପୁରାଣର ରଚୟିତା ଦ୍ୱିପାୟନ କୃଷ୍ଣଙ୍କ ନାମରେ ନାମିତ ବ୍ୟାସଦେବ ପ୍ରଥମେ ତାଙ୍କର ଏକକ ସାଧନା ଏହି ବ୍ରାହ୍ମଣୀନଦୀ ତଟରେ ଅବସ୍ଥିତ ବେଦବ୍ୟାସଠାରେ ଆରମ୍ଭ କରିଥିଲେ ବୋଲି ଯୁଗ ଯୁଗ ଧରି ଜନଶ୍ରୁତି ରହିଛି ।

**ପ୍ରାଚୀନଦୀ**

ପ୍ରାଚୀ ନାମରେ ଏକ ପ୍ରାଚୀନ ପୁଣ୍ୟସଲିଳା ନଦୀ କଟକ ନିକଟସ୍ଥ ତ୍ରିଶୂଳିଆ ନାମକ ସ୍ଥାନରୁ ନିଃସୃତ ହୋଇ ଆଧୁନିକ ବାରଙ୍ଗ, ଫୁଲନଖରା, କେନ୍ଦୁଳି, କାକଟପୁର ପ୍ରଭୃତି ଅଂଚଳ ଦେଇ ପୂର୍ବୋପସାଗରରେ ଲୀନ ହୋଇଛି । ଯଦିଓ ଏହି ନଦୀର ଅବଶେଷ ନାମକୁ ମାତ୍ର ରହିଛି, ତଥାପି ପ୍ରାଚୀନ କାଳରେ ଏହା ଏକ ପ୍ରସିଦ୍ଧ ନଦୀ ନାମରେ ପରିଗଣିତ ହେଉଥିଲା ।

ପ୍ରାଚୀ ମାହାତ୍ମ୍ୟର ଏକ ଆଖ୍ୟାୟନରୁ ଜଣାଯାଏ ଯେ ପ୍ରଭୁ ଶ୍ରୀରାମଚନ୍ଦ୍ର ପ୍ରାଚୀ ତୀର୍ଥରେ ସ୍ନାନ କରିଥିବା ହେତୁ ସକଳ ମନୋରଥ ଫଳ ଲାଭ କରିଥିଲେ । ତେଣୁ ବିଭୀଷଣ ଜମ୍ବୁଦ୍ୱୀପର ଉତ୍କଳ ଦେଶରେ ଥିବା ପ୍ରାଚୀନ ତୀର୍ଥରେ ସ୍ନାନ କରିବାକୁ ମନ ବଳାଇ ଶ୍ରୀରାମଙ୍କ ଅନୁଜ୍ଞା ମାଗିଥିଲେ । ଶ୍ରୀରାମଚନ୍ଦ୍ର ତାଙ୍କୁ କହିଥିଲେ, 'ହେ ବିଭୀଷଣ ! ତୁମେ ବ୍ରାହ୍ମଣ ବେଶରେ ମାଘ ମାସର ଶୁକ୍ଳସପ୍ତମୀ ଦିନ ଯାଇ ପ୍ରାଚୀ ନଦୀର ଅଗ୍ନିତୀର୍ଥରେ ସ୍ନାନ କରି ରାମେଶ୍ୱରଙ୍କୁ ଦର୍ଶନ କରିବା ପରେ ରାମଚଣ୍ଡୀ, ଅମରେଶ୍ୱର, ଜଗନ୍ନାଥ ଓ ବିଲେଶ୍ୱର ଆଦିଙ୍କ ଦର୍ଶନ କରି ସ୍ୱପୁରକୁ ବାହୁଡ଼ିବ ।' ବିଭୀଷଣ ରାମଚନ୍ଦ୍ରଙ୍କ ଆଦେଶରେ ତୀର୍ଥଯାତ୍ରା କରି ଲଙ୍କାପୁରକୁ ଫେରି ଯାଇଥିଲେ ।

ଏହି ପୁଣ୍ୟତୋୟା ପ୍ରାଚୀନଦୀର କୂଳେ କୂଳେ ପ୍ରାଚୀନ କାଳରେ ଅନେକ ଭବ୍ୟ ମନ୍ଦିର ନିର୍ମିତ ହୋଇଥିଲା, ଯେଉଁମାନଙ୍କ ମଧ୍ୟରେ ଶିଖରଚଣ୍ଡୀ ଦ୍ୱାଦଶ ଶମ୍ଭୁ ବା ବରାହୀ, ଶୋଭନେଶ୍ୱର, ରାମେଶ୍ୱର, ଶଙ୍କରେଶ୍ୱର, ନାରିକେଶ୍ୱର, ସ୍ୱପ୍ନେଶ୍ୱର, ସୋମେଶ୍ୱର ଓ କାକଟପୁରର ସୁପ୍ରସିଦ୍ଧ ମା' ମଙ୍ଗଳାଙ୍କ ମନ୍ଦିର ପ୍ରଧାନ ଅଟେ । ଉପରୋକ୍ତ ମନ୍ଦିର ପ୍ରତିଷ୍ଠା ଓ ଏହି ନଦୀର ତଟପାର୍ଶ୍ୱ ଜନସାଧାରଣଙ୍କ ଜନଜୀବନକୁ ପରେ ଆଧ୍ୟାତ୍ମିକ ପ୍ରଭାବ ପକାଇ ପାରିଥିଲା ବୋଲି ସୂଚନା ମିଳେ ।

ପ୍ରାଚୀନଦୀର ଗତିପଥ ବକ୍ରିଳ ଓ ବିଭିନ୍ନ ଶାଖା ତଥା ଉପନଦୀ ଦ୍ୱାରା ଜାଲ ସଦୃଶ ଛନ୍ଦି ହୋଇଥିବାରୁ ରାଜା ମହାରାଜାମାନଙ୍କ ମଧ୍ୟରେ ଭୀତି ସଂଚାର କରି ଦେବ-ଦେବୀ ପୀଠ ରୂପେ ସର୍ବଜନସମକ୍ଷରେ ପ୍ରତିପାଦିତ କରିବା ପାଇଁ ଚେତନା ଜାଗ୍ରତ କରାଇଥିଲା ବୋଲି ଇତିହାସ କହେ । ଅଡଶପୁରର ସ୍ୱପ୍ନେଶ୍ୱର ମନ୍ଦିରର (ଖ୍ରୀ:ଅ: ୭ମ ଶତାବ୍ଦୀରେ ନିର୍ମିତ) ମନ୍ଦିର-ଶିଳ୍ପର ପ୍ରଥମ ନିଦର୍ଶନ ଓ ମାଧବ ଗ୍ରାମର 'ମାଧବ

ମନ୍ଦିର' (ଖ୍ରୀ:ଅ: ୧୩ଶ ଶତାବ୍ଦୀରେ ନିର୍ମିତ) ଶେଷ ନିଦର୍ଶନ ରୂପେ ଏବେ ମଧ ବିଦ୍ୟମାନ । ଏହାର ପୋଡ଼ା ଇଟା ବ୍ୟବହାରରୁ ଜଣାପଡ଼େ ଯେ ଏହି ନଦୀର ଉପତ୍ୟକାରେ ଗଢ଼ି ଉଠୁଥିବା ଧର୍ମଧାରାରେ ବୌଦ୍ଧମାନଙ୍କ ମନ୍ଦିର, ମଠ, ସ୍ତୂପ ବିହାରର ଉପସ୍ଥିତ ଥିଲା ।

ସ୍ୱପ୍ନେଶ୍ୱର ମନ୍ଦିରରେ ଋଷଭନାଥ, ବିଭିନ୍ନ ସ୍ଥାନରେ ପୂଜିତ ଯକ୍ଷ-ଯକ୍ଷିଣୀ ମୂର୍ତ୍ତି ମାଧବ ମନ୍ଦିରର ସୁନ୍ଦର ବିଷ୍ଣୁ ମୂର୍ତ୍ତି, ବୁଦ୍ଧମୂର୍ତ୍ତି ଏବଂ ଶକ୍ତିମୟୀ ଦୁର୍ଗାଦେବୀଙ୍କର ଦ୍ୱିଭୁଜା, ଚତୁର୍ଭୁଜା, ଅଷ୍ଟଭୁଜା, ଦଶଭୁଜା ଓ ଦ୍ୱାଦଶଭୁଜା ମୂର୍ତ୍ତି, କାକଟପୁର ମଙ୍ଗଳା ଓ ଚଉରାଶୀର 'ବାରାହୀ' ମୂର୍ତ୍ତି ପ୍ରଭୃତିରୁ ଶାକ୍ତଧର୍ମର ପ୍ରାଧାନ୍ୟ ବହୁଦିନ ପର୍ଯ୍ୟନ୍ତ ରହିଥିଲା ଏବଂ ଏହା ବର୍ତ୍ତମାନ ଏକ ବିଶିଷ୍ଟ ତନ୍ତ୍ରପୀଠ ରୂପେ ପରିଗଣିତ । ଏହି ପୁଣ୍ୟତୋୟା ପ୍ରାଚୀ କୂଳରେ କେନ୍ଦୁବିଲ୍ୱ ଶାସନ ପବିତ୍ର 'ଗୀତଗୋବିନ୍ଦ'ର ରଚୟିତା କବି ଜୟଦେବଙ୍କ ଜନ୍ମସ୍ଥାନ ଏହି ନଦୀର ଆଧ୍ୟାତ୍ମିକ ମାହାତ୍ମ୍ୟକୁ ବୃଦ୍ଧି କରିଥାଏ ।

### ଦୟାନଦୀ

ରାଜଧାନୀ ଭୁବନେଶ୍ୱର ନିକଟବର୍ତ୍ତୀ ବାଳକାଟି ସ୍ଥାନରୁ ଭାର୍ଗବୀ ନଦୀର ଗୋଟିଏ ଧାରା ବାହାରି 'ଦୟା' ନାମରେ ପ୍ରଖ୍ୟାତ ହୋଇ ମୌର୍ଯ୍ୟ ସମ୍ରାଟ ଅଶୋକଙ୍କ କୀର୍ତ୍ତିସ୍ଥଳ ଧଉଳି ପାହାଡ଼ର ପାଦଦେଶରେ ପ୍ରବାହିତ ହୋଇ ଚିଲିକାରେ ପଡ଼ିଅଛି । ସଂପ୍ରତି ଏହାର ଜୀର୍ଣ୍ଣଧାର କେତେକ ସ୍ଥାନରେ ଦେଖିବାକୁ ମିଳୁଥିବାବେଳେ ଏହାର ଉପତ୍ୟକାରେ ବୌଦ୍ଧଧର୍ମ, ଶୈବଧର୍ମ ତଥା ବୈଷ୍ଣବ ଧର୍ମର ପରିପ୍ରକାଶ ଘଟିଛି ।

ସାଧାରଣତଃ ଏହି ଅଞ୍ଚଳ ଭୌମକର ବଂଶର ରାଜତ୍ୱ ବେଳେ ବୌଦ୍ଧ ଧର୍ମର ଏକ ମହାନପୀଠ ରୂପେ ପରିଗଣିତ ହେଉଥିଲା । ସମ୍ରାଟ ଅଶୋକଙ୍କ ବିଜୟ ପରେ ବୌଦ୍ଧଧର୍ମ ଓଡ଼ିଶା ରାଜଧର୍ମ ରୂପେ ଗୃହୀତ ହୋଇଥିଲା । ଏହି ଉପତ୍ୟକାରେ ଗଢ଼ି ଉଠିଥିବା ଏକାମ୍ର କାନନ, ବିନ୍ଦୁସାଗର, ରାମେଶ୍ୱର ମନ୍ଦିର, ଲକ୍ଷ୍ମଣେଶ୍ୱର, ଭରତେଶ୍ୱର, ଶତ୍ରୁଘ୍ନେଶ୍ୱର ଅନନ୍ତ ବାସୁଦେବ ମନ୍ଦିର, ପ୍ରସିଦ୍ଧ ଲିଙ୍ଗରାଜ ମନ୍ଦିରର ଅବସ୍ଥିତି ଏହି ଅଞ୍ଚଳର ଆଧ୍ୟାତ୍ମିକ ଚରିତ୍ର ଓ ବୈଶିଷ୍ଟ୍ୟକୁ ପ୍ରମାଣିତ କରିଥାଏ । ଏହାର ତଟରେ ଧଉଳି ପାହାଡ଼, ବହିରଙ୍ଗେଶ୍ୱର ମନ୍ଦିର, ଜଟଣୀ ନିକଟବର୍ତ୍ତୀ ପଞ୍ଚୁପାଣ୍ଡବ ମନ୍ଦିର ବିଦ୍ୟମାନ । ଏହି ନଦୀଟିକୁ ଐର-କୁଳତିଳକ ମହାମେଘବାହନ ଖାରବେଳ ଖୋଦନ କରାଇଥିଲେ ବୋଲି ଐତିହାସିକମାନେ ଅନୁମାନ କରନ୍ତି ।

ଏଠାରେ ଆଲୋଚିତ ଓଡ଼ିଶାର ନଦୀଗୁଡ଼ିକ ବ୍ୟତୀତ ଚନ୍ଦ୍ରଭାଗା ଭାର୍ଗବୀ, କୁଶଭଦ୍ରା, ଋଷିକୁଲ୍ୟା, ବଂଶଧାରା, ଖରସ୍ରୋତା ଝଞ୍ଜାବତୀ, ସୁବର୍ଣ୍ଣରେଖା ଆଦି ନଦୀଗୁଡ଼ିକର ଆଧ୍ୟାତ୍ମିକ ମହତ୍ୱ ପୁରାଣ ଓ ଇତିହାସରେ ସ୍ଥାନିତ ହୋଇଛି । ପ୍ରାଚୀନ ପୁରାଣ ବିଷ୍ଣୁ, ମତ୍ସ୍ୟ, ପଦ୍ମ, ବ୍ରହ୍ମ, ବାମନ ଓ ସ୍କନ୍ଧ ଆଦି ଗ୍ରନ୍ଥରେ ଉତ୍କଳଦେଶର ସାଂସ୍କୃତିକ ଓ ଧାର୍ମିକ ମହତ୍ୱ ବର୍ଣ୍ଣନା ଥିବା ସଂଗେସଂଗେ ଆମ ଦେଶର ନଦୀମାନଙ୍କ ତତ୍‌କାଳୀନ ଆଧ୍ୟାତ୍ମିକ ସ୍ଥିତି ଓ ବ୍ୟାପ୍ତି ସଂପର୍କରେ ମଧ ଉଲ୍ଲେଖ ରହିଛି । କାଳକ୍ରମେ ପାରିପାର୍ଶ୍ୱିକ ଭୌଗଳିକ ଅବସ୍ଥାର ରୂପାନ୍ତରଣ କ୍ରମେ ନଦୀଗୁଡ଼ିକର ରୂପ, ଦିଗ ଓ ସ୍ଥିତିର ପରିବର୍ତ୍ତନ ଘଟୁଥିଲେ ହେଁ ଏଗୁଡ଼ିକ ଯେ ଆମ ଧାର୍ମିକ ଓ ଆତ୍ମିକ ବିଭବର ଆଧ୍ୟାତ୍ମିକ ଓ ସାଂସ୍କୃତିକ ସୌନ୍ଦର୍ଯ୍ୟକୁ ସଂଚରଣ କରିବାରେ ସହାୟକ ହୋଇଛନ୍ତି, ଏହା ନିଃସନ୍ଦେହ ।

ଅଧକ୍ଷ
କ୍ୟାପିଟାଲ ହାଇସ୍କୁଲ
ୟୁନିଟ୍-୩, ଭୁବନେଶ୍ୱର

---

## ସମ୍ବାଦ ସୂଚନା ଶାଖା ଉଦ୍‌ଘାଟିତ

ଗତ ନଭେମ୍ବର ୮ ତାରିଖରୁ ରାଜ୍ୟ ସଚିବାଳୟ ପରିସରରେ ସୂଚନା ଓ ଲୋକ ସଂପର୍କ ବିଭାଗ ଅଧୀନସ୍ଥ ସମ୍ବାଦ ସୂଚନା ଶାଖା କାର୍ଯ୍ୟ ଆରମ୍ଭ କରିଛି । ସୂଚନା ଓ ଲୋକ ସଂପର୍କ ତଥା କ୍ରୀଡ଼ା ଓ ଯୁବସେବା ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକ ଏହାକୁ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରିଛନ୍ତି । ଉଦ୍‌ଘାଟନୀ ସମୟରେ ମୁଖ୍ୟ ଶାସନ ସଚିବ ଡଃ ସୁବାସ ପାଣି, ସୂଚନା ଓ ଲୋକ ସଂପର୍କ ବିଭାଗ କମିଶନର ତଥା ଶାସନ ସଚିବ ଶ୍ରୀ ଦିଗମ୍ବର ମହାନ୍ତି, ନିର୍ଦ୍ଦେଶକ ଶ୍ରୀ ବୈଷ୍ଣବ ପ୍ରସାଦ ମହାନ୍ତି, ଯୁଗ୍ମ ନିର୍ଦ୍ଦେଶକ ଶ୍ରୀ ଲୋକନାଥ ତନ୍ତୀ, ଉପଶାସନ ସଚିବ ଶ୍ରୀ ଓମ୍ ପ୍ରକାଶ ମହାପାତ୍ର ଏବଂ ଉପନିର୍ଦ୍ଦେଶକ (ପ୍ରେସ୍) ଶ୍ରୀ ନିରଂଜନ ସେଠୀଙ୍କ ସମେତ ସୂଚନା ଅଧିକାରୀବୃନ୍ଦ ଉପସ୍ଥିତ ଥିଲେ । ସଚିବାଳୟରେ ଏହି ଶାଖା କାର୍ଯ୍ୟ କରିବା ଯୋଗୁଁ ବିଭିନ୍ନ ବିଭାଗଗୁଡ଼ିକର ଉନ୍ନୟନମୂଳକ କାର୍ଯ୍ୟକ୍ରମ ସଂପର୍କିତ ତଥ୍ୟ ସଂଗ୍ରହ ଏବଂ ସମ୍ବାଦ ପ୍ରେରଣ କ୍ଷେତ୍ରରେ ଉନ୍ନତି ଘଟିବ ଏବଂ ଯୋଗସୂତ୍ର ରକ୍ଷା କରାଯିବାରେ ବିଶେଷ ସହାୟକ ହୋଇପାରିବ ବୋଲି ମନ୍ତ୍ରୀ ଶ୍ରୀ ନାୟକ ଆଶା ପ୍ରକାଶ କରିଥିଲେ । ସମ୍ବାଦ ସୂଚନା ଶାଖାକୁ ଆଧୁନିକୀକରଣ କରାଯାଇ ତଥ୍ୟ ସଂଗ୍ରହ ଓ ପ୍ରେରଣ ବ୍ୟବସ୍ଥାକୁ ତ୍ୱରାନ୍ୱିତ କରାଯିବ ଏବଂ ଏଥିପାଇଁ ଖୁବ୍‌ଶୀଘ୍ର ଆନୁଷଙ୍ଗିକ ବ୍ୟବସ୍ଥା ଯୋଗାଇ ଦିଆଯିବ ବୋଲି ମୁଖ୍ୟ ଶାସନ ସଚିବ ଡଃ ପାଣି ପ୍ରକାଶ କରି ସୂଚନା ଅଧିକାରୀମାନେ ଅଧିକ ଦକ୍ଷତାର ସହ କାର୍ଯ୍ୟ କରିବାକୁ ପରାମର୍ଶ ଦେଇଥିଲେ ।

# ଓଡ଼ିଶା ଓ ଇଣ୍ଡୋନେସିଆର ପ୍ରାଚୀନ ସାଂସ୍କୃତିକ ଓ ବାଣିଜ୍ୟିକ ସଂପର୍କ

ଚନ୍ଦ୍ରଭାନୁ ପଟେଲ

**ଭା**ରତୀୟ ସାଂସ୍କୃତିକ ପଟ୍ଟଭୂମିରେ ଓଡ଼ିଶାର ବୈଶିଷ୍ଟ୍ୟ ସବୁ ସମୟରେ ସ୍ୱୀକୃତ । ସଭ୍ୟତାର ଆରମ୍ଭରୁ କଳା ସ୍ଥାପତ୍ୟ ଓ ସାମ୍ରାଜ୍ୟବାଦର ଚିତ୍ରପଟରେ ସାହସୀ ଉତ୍କଳୀୟମାନଙ୍କର ସାଂସ୍କୃତିକ ବୈଚିତ୍ରତା ମଧ୍ୟରେ ସୃଜନଶୀଳତାର ପ୍ରାଣୋଚ୍ଛ୍ୱାସ ସେମାନଙ୍କର କାର୍ଯ୍ୟଧାରା ଓ ସାଧନାରେ ପ୍ରତିଫଳିତ ହୋଇଥାଏ । ଆଧୁନିକ ଗବେଷଣାରୁ ଜଣାଯାଏ ଯେ ପ୍ରାଚୀନ କଳିଙ୍ଗ ସହିତ ସୁବର୍ଣ୍ଣ ଦ୍ୱୀପର (୧୩୬୦୦ ଦ୍ୱୀପପୁଞ୍ଜକୁ ନେଇ ଗଠିତ ଆଧୁନିକ ଇଣ୍ଡୋନେସିଆ ଯାହାକି ମୁଖ୍ୟତଃ ଜାଭା ସୁମାତ୍ରା, ବାଲି ଓ ବୋର୍ଣ୍ଣିଓକୁ କୁହାଯାଏ) ରହିଥିବା ସଂପର୍କରେ ବିଶେଷ ତାତ୍ପର୍ଯ୍ୟ ଅଛି ।

### ଓଡ଼ିଶାର ନୌବାଣିଜ୍ୟର ଅତୀତ

ପ୍ରାଚୀନ କାଳରୁ ମଧ୍ୟଯୁଗୀୟ କାଳ ପର୍ଯ୍ୟନ୍ତ ଓଡ଼ିଶାର ସମୁଦ୍ର ଉପକୂଳ ଦକ୍ଷିଣ-ପୂର୍ବ ଏସୀୟ ଦେଶମାନଙ୍କର ପ୍ରବେଶ ପଥ ରୂପେ ରହିଥିଲା । ଏହାର ସାଂସ୍କୃତିକ ଓ ବାଣିଜ୍ୟିକ ଧାରାର ପ୍ରଭାବ ଏବେ ମଧ୍ୟ ଦକ୍ଷିଣ-ପୂର୍ବ ଏସୀୟ ଦେଶଗୁଡ଼ିକର ପରମ୍ପରା, ସ୍ଥାନର ନାମ, ସାହିତ୍ୟ ଏବଂ ସ୍ଥାପତ୍ୟରେ ପରିଲକ୍ଷିତ ହୁଏ । କଳିଙ୍ଗର ଅଧିବାସୀମାନେ ଭାରତୀୟ ଦ୍ୱୀପପୁଞ୍ଜରେ ଭାରତୀୟ ଉପନିବେଶବାଦର ମାର୍ଗ ଦର୍ଶକ ଥିଲେ । ଅତୀତରେ ବଙ୍ଗୋପସାଗରକୁ 'କଳିଙ୍ଗ ସମୁଦ୍ର' ବୋଲି କୁହାଯାଉଥିଲା । କଳିଙ୍ଗ ଜାହାଜଗୁଡ଼ିକ ଏହି ଉପସାଗରରେ ଆଧିପତ୍ୟ ବିସ୍ତାର କରିଥିଲେ । ବଙ୍ଗୋପସାଗରରେ ଥିବା ସମସ୍ତ ଦ୍ୱୀପପୁଞ୍ଜଗୁଡ଼ିକ 'କଳିଙ୍ଗ ଦେଶୁ' ନାମରେ ଜଣାଯାଉଥିଲା ବୋଲି 'ଆର୍ଯ୍ୟ ମଞ୍ଜୁଶ୍ରୀ' ମୂଳକଳ୍ପରେ ଉଲ୍ଲେଖ ଅଛି । ଅତୀତରେ ଗ୍ରୀକ୍ ଭୂତତ୍ତ୍ୱବିଦ୍‌ମାନେ ଯେଉଁମାନେ କି ପ୍ରାଚୀ କଳିଙ୍ଗ, ଗଙ୍ଗାରିଦାଇ କଳିଙ୍ଗ ଏବଂ ମେଗା କଳିଙ୍ଗ ଭାବେ କଳିଙ୍ଗକୁ ଚିତ୍ରିତ କରିଛନ୍ତି, ସେମାନେ ଏହି ସିଦ୍ଧାନ୍ତକୁ ଦୃଢ଼ଭାବେ ସମର୍ଥନ କରିଛନ୍ତି । ପ୍ରଥମ ଶତାବ୍ଦୀରେ ଐତିହାସିକ ପ୍ଲିନିଙ୍କ ମତରେ ପ୍ରାଚୀ କଳିଙ୍ଗ ସମୁଦ୍ର ଉପକୂଳରେ ଗୋଦାବରୀଠାରୁ ସୁବର୍ଣ୍ଣରେଖା ନଦୀ ପର୍ଯ୍ୟନ୍ତ ଏବଂ ମେଗା କଳିଙ୍ଗର ଆୟତନ ଦକ୍ଷିଣ-ପୂର୍ବ ଏସୀୟ ଦେଶଗୁଡ଼ିକୁ ଯଥା- ବର୍ମା, ଇଣ୍ଡୋଚାଇନା ଏବଂ ଇଣ୍ଡୋନେସିଆ ପ୍ରଭୃତି ଦେଶକୁ ବ୍ୟାପିଛି । ମେଘାସ୍ଥିନିସ୍‌ଙ୍କ (ଖ୍ରୀଷ୍ଟୀୟ ତୃତୀୟ ଶତାବ୍ଦୀ) ମତରେ କଳିଙ୍ଗ ଉପକୂଳର ଦୂରତା ୭୦୦ ମାଇଲ



ବୋଇତ ବନ୍ଦାଣ ଦୃଶ୍ୟ

ପର୍ଯ୍ୟନ୍ତ ପ୍ରାଚୀ ଓ ଗଙ୍ଗାରିଦାଇ କଳିଙ୍ଗ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥିଲା । ମନେହୁଏ ମେଗା କଳିଙ୍ଗ ଅଧିବାସୀମାନଙ୍କର ଔପନିବେଶିକ ସାମ୍ରାଜ୍ୟ ଥିଲା । ମେଘାସ୍ଥିନିସ୍‌ଙ୍କ ମତରେ ସେତେବେଳେ କଳିଙ୍ଗର ରାଜଧାନୀ ଥିଲା ପାର୍ଥଳୀ । କିନ୍ତୁ ଟୋଲେମୀଙ୍କ ମତରେ ତୋଷାଳୀ କଳିଙ୍ଗର ରାଜଧାନୀ ଥିଲା । ଅଶୋକଙ୍କ ଧଉଳି ଶିଳାଲେଖରେ ତୋଷାଳୀ କଳିଙ୍ଗର ରାଜଧାନୀ ଥିଲା ବୋଲି ଲିଖିତ ଅଛି । ଧଉଳି ନିକଟସ୍ଥ ଶିଶୁପାଳଗଡ଼ରେ କଳିଙ୍ଗର ପ୍ରାଚୀନ ରାଜଧାନୀ ଥିଲା ବୋଲି ଧ୍ୱଂସାବଶେଷରୁ ଜଣାଯାଏ । ଏହି ଧ୍ୱଂସାବଶେଷରୁ ପ୍ରାଚୀନ ମୁଦ୍ରା ଓ ମୃତ୍ତିକା ଶିଳ୍ପର ଅବଶେଷ ଆବିଷ୍କୃତ ହୋଇଛି । ମେଘାସ୍ଥିନିସ୍‌ଙ୍କର ପାର୍ଥଳୀ ଏବଂ ଟୋଲେମୀଙ୍କର ତୋଷାଳୀ ମଧ୍ୟରେ ଅନେକ ସାମଞ୍ଜସ୍ୟ ରହିଛି । ଏକାମ୍ରକ୍ଷେତ୍ର ଭୁବନେଶ୍ୱରର ଅନ୍ୟନାମ 'ପ୍ରସ୍ତରୀ' ଯାହାକି ମାଙ୍କଡ଼ା ପଥର ଶବ୍ଦରୁ ଆନୀତ ହୋଇଛି ବୋଲି ମନେ ହୁଏ । ପାଲି ଭାଷାରେ 'ଭ' ଶବ୍ଦଟି 'ଲ' ହୁଏ । ତେଣୁ ଗ୍ରୀକ୍ ଲେଖକମାନେ 'ପ୍ରସ୍ତରୀ'କୁ 'ପରଥଳୀ' ଭାବେ ଲେଖିଛନ୍ତି । ଆଲୋଚନାରୁ ଜଣାଯାଏ ଯେ କଳିଙ୍ଗ ସାମ୍ରାଜ୍ୟ ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଲାଭ କରିଥିଲା ଏବଂ ଭୁବନେଶ୍ୱର ଏହାର ରାଜଧାନୀ ଥିଲା ।

## ଓଡ଼ିଶାର ପ୍ରାଚୀନ ବନ୍ଦର

ଓଡ଼ିଶାର ସାଂସ୍କୃତିକ ଏବଂ ବାଣିଜ୍ୟିକ କାର୍ଯ୍ୟ ସବୁ ପ୍ରାୟତଃ ଏହାର ଚାରିଗୋଟି ମୁଖ୍ୟ ବନ୍ଦର ଯଥା- ଚିଲିକା, କୋଣାର୍କ, ପୁରୀ ଏବଂ ତାମ୍ରଲିପ୍ତି ଦ୍ୱାରା ସଂପାଦିତ ହେଉଥିଲା । ଚିଲିକାର ଦକ୍ଷିଣରେ ଥିବା ପାଲୁର ଦକ୍ଷିଣ-ପୂର୍ବ ଏସିଆକୁ ଏକ ମୁଖ୍ୟ ରାସ୍ତା ଥିଲା । ଏହି ପାଲୁର ଶବ୍ଦର ବ୍ୟବହାର ଆମେ ବିଭିନ୍ନ ସାହିତ୍ୟିକ କୃତି ଏବଂ ବିଦେଶ ବିବରଣୀରୁ ବହୁଳ ଭାବରେ ପାଇଥାଉ । ଏହା ବର୍ତ୍ତମାନ ଗଞ୍ଜାମ ଜିଲ୍ଲାରେ ଅବସ୍ଥିତ । ମଧ୍ୟଯୁଗ ପର୍ଯ୍ୟନ୍ତ ବାଣିଜ୍ୟିକ କାର୍ଯ୍ୟ ଏହି ଆନ୍ତର୍ଜାତୀୟ ବନ୍ଦର ଦ୍ୱାରା ହିଁ କରାଯାଉଥିଲା । ସଂପ୍ରତି ପ୍ରତ୍ନତାତ୍ତ୍ୱିକ ସର୍ଭେ ଏବଂ ଖନନରୁ ଜଣାଯାଏ ଯେ ଏଠାରେ ଏକ ବନ୍ଦରଭିତ୍ତିକ ନଗର ଗଢ଼ି ଉଠିଥିଲା । ମାଣିକ ପାଟଣା (୩୫.୫ ଅକ୍ଷାଂଶ ଏବଂ ୯୪.୫ ଦୈର୍ଘ୍ୟାଂଶ) ଚିଲିକା କୂଳରେ ଅନ୍ୟ ଏକ ବନ୍ଦରଭିତ୍ତିକ ସହର ଥିଲା । ନିକଟରେ ଦକ୍ଷିଣ-ପୂର୍ବ ଏସୀୟ ବାଣିଜ୍ୟିକ ପ୍ରତିଷ୍ଠାନ, ଭୁବନେଶ୍ୱର ଦ୍ୱାରା ହୋଇଥିବା ପ୍ରତ୍ନତାତ୍ତ୍ୱିକ ଖନନରୁ ଜଣାଯାଏ ଯେ ଏହି ସ୍ଥାନର ବହିର୍ଦ୍ଦେଶଗୁଡ଼ିକ ସହିତ ସାଂସ୍କୃତିକ ସମ୍ବନ୍ଧ ଥିଲା । ରୋମାନ ମୃତ୍ତିକା ପାତ୍ର ଏବଂ ଜାର୍ ଇତ୍ୟାଦିର ଆବିଷ୍କାର ଫଳରେ କଳିଙ୍ଗ ସହିତ ରୋମାନ ସାମ୍ରାଜ୍ୟର ବାଣିଜ୍ୟିକ ସଂପର୍କ ଥିଲା ବୋଲି ପ୍ରମାଣ ମିଳେ । ରୋମାନ ଐତିହାସିକ ଗିବନଙ୍କ ଦ୍ୱାରା ମଧ୍ୟ ଏହା ସମର୍ଥିତ ହୋଇଛି । ଚୀନ ମାଟି ପାତ୍ରର ଅଂଶବିଶେଷର ଆବିଷ୍କାର କଳିଙ୍ଗ ଏବଂ ଚୀନ ସହିତ ନିଶ୍ଚିତ ଭାବରେ ବାଣିଜ୍ୟିକ ସଂପର୍କ ଥିଲା ବୋଲି ପ୍ରମାଣ ମିଳିଥାଏ । ଶ୍ରୀମଦ୍ ସହସମଲ୍ଲ ଲିଖିତ ସିଂହଳୀ ମୁଦ୍ରାର ପ୍ରାପ୍ତି ଯାହାକି ଏକାଦଶ ବା ଦ୍ୱାଦଶ ଶତାବ୍ଦୀର ଅନୁମାନ କରାଯାଏ ଯେ ଶ୍ରୀଲଙ୍କା ସହିତ କଳିଙ୍ଗର ମଧ୍ୟଯୁଗର ଶେଷ ପର୍ଯ୍ୟନ୍ତ ସଂପର୍କ ଥିଲା । ଇଣ୍ଡୋନେସିଆ ଶୈଳୀରେ ମୃଣ୍ମୟ ପଶୁମୂର୍ତ୍ତିଗୁଡ଼ିକର ଆବିଷ୍କାର ଇଣ୍ଡୋନେସିଆ ସହିତ କଳିଙ୍ଗର ସାଂସ୍କୃତିକ ସମ୍ବନ୍ଧର ସୂଚନା ଦିଏ । ଆଲୋଚନାରୁ ବୁଝାଯାଏ ଯେ ଚିଲିକା ହ୍ରଦ ଦେଇ ବିଭିନ୍ନ ସମୟରେ ବାଣିଜ୍ୟିକ କାରବାର ଚାଲୁ ରହିଥିଲା । ଏକଦା ଚିଲିକାରେ ହଜାର ହଜାର ଜାହାଜ ଭାସୁଥିଲା ବୋଲି ବ୍ରହ୍ମାଣ୍ଡ ପୁରାଣରେ ଉଲ୍ଲେଖ ଅଛି ।



'ଚିଲିକା ହ୍ରଦେ ସହସ୍ରାଂତୁ
ସୁପୋତ ଜଳଗାମିନଃ ।'

ଚନ୍ଦ୍ରଭାଗା ତୀରରେ କୋଣାର୍କ ମଧ୍ୟ ଏକ ପ୍ରସିଦ୍ଧ ବନ୍ଦରଭିତ୍ତିକ ସହର ଥିଲା । ଟୋଲେମୀ ତାଙ୍କ ବିବରଣୀରେ ଏହାକୁ କନଗର ବା କେନନଗର ବୋଲି ଅବିହିତ କରିଛନ୍ତି । ପୁରୀରେ ଯେଉଁ ବନ୍ଦର ଥିଲା ବୋଲି କୁହାଯାଉଛି ତାହାର ନାମ ଚରିତ୍ର, ଚେଲିତାଲୋ ଓ ଆଦାମୋସ ବୋଲି ବିଭିନ୍ନ ପ୍ରାଚୀନ ଗ୍ରନ୍ଥମାନଙ୍କରେ ଉଲ୍ଲେଖ ଅଛି । ସେହିପରି କଳିଙ୍ଗ ସମୁଦ୍ର ଉପକୂଳରେ ତାମ୍ରଲିପ୍ତି ମଧ୍ୟ ଗୋଟିଏ ପ୍ରସିଦ୍ଧ ସାମୁଦ୍ରିକ କେନ୍ଦ୍ର ଥିଲା । ଉପକୂଳ ବନ୍ଦରଭିତ୍ତିକ ସହରକୁ ଛାଡ଼ି ଦେଲେ ସ୍ଥଳଭାଗରେ ମହାନଦୀ କୂଳରେ ମଧ୍ୟ କେତେଗୁଡ଼ିଏ ବନ୍ଦରଭିତ୍ତିକ ସହର ଥିଲା । ପ୍ରାଚୀନ ସମ୍ବଳକ ବା ଅଧୁନା ସମ୍ବଲପୁର ମନଦ ବା ମହାନଦୀ କୂଳରେ ଏକ ପ୍ରସିଦ୍ଧ ସହର ଥିଲା ବୋଲି ଟୋଲେମୀ ବର୍ଣ୍ଣନା କରିଛନ୍ତି । ସମ୍ବଲପୁରର ହୀରାଖଣି ପୃଥିବୀ ପ୍ରସିଦ୍ଧ ଥିଲା । ସେଠାରୁ ହୀରା ଓ ଅନେକ ପ୍ରକାର ମୂଲ୍ୟବାନ ପଥର ସବୁ ବିଦେଶକୁ ରପ୍ତାନୀ କରାଯାଉଥିଲା । କିଞ୍ଚିତ ସବୁଜ ଥିବା ଏହି ସମ୍ବଲପୁର ହୀରା ସୋରିଷ ଫୁଲର ଦୀପ୍ତି ପରି ବହୁ ଆକର୍ଷଣୀୟ ଥିଲା ଏବଂ ପୃଥିବୀର ସବୁଜାଗାରେ ଏହାର ସବୁଠାରୁ ବେଶୀ ଚାହିଦା ଥିଲା । ତେଲ ନଦୀ କୂଳରେ ସ୍ଥଳଭାଗରେ ଏକ ପ୍ରସିଦ୍ଧ ବନ୍ଦରଭିତ୍ତିକ ସହର ଥିଲା । ଏହା ବଲାଙ୍ଗୀର ଜିଲ୍ଲାରେ ଅବସ୍ଥିତ । ତେଲ ନଦୀ ବୌଦ୍ଧ ଜାତକ ଗଳ୍ପରେ ତେଲବାହ ନଦୀ ନାମରେ ଉଲ୍ଲେଖ ଅଛି । ବୃଷ୍ଟିକାଳରେ ଏହି ନଦୀ ଦେଇ ବାଣିଜ୍ୟିକ କାରବାର କରାଯାଉଥିଲା । ବଲାଙ୍ଗୀର ଜିଲ୍ଲାରେ ସୁକ୍ତିମତୀପୁର ଯାହାକି ଆଧୁନିକ ସକମା ଏକ ମୁଖ୍ୟ ନଗର ଥିଲା । ଏହା ସୁକ୍ତିମତି (ବର୍ତ୍ତମାନର ସୁକତେଲ) ନଦୀ କୂଳରେ ଥିଲା । ନିକଟରେ ରାଜ୍ୟ ସଂଗ୍ରହାଳୟରେ ସଂଗୃହୀତ ହୋଇଥିବା ୩୫୦ଟି ପଞ୍ଚମାର୍କ (ଲାଞ୍ଛବ) ରୋପ୍ୟ ମୁଦ୍ରାରୁ ଏଠାରେ ବାଣିଜ୍ୟିକ କାରବାର ଥିଲାବୋଲି ପ୍ରମାଣ ମିଳେ । ବଲାଙ୍ଗୀର ଜିଲ୍ଲା ସୁକ୍ତିମତୀପୁର ସୁକମାଠାରୁ ୪/୫ କିଲୋମିଟର ଦୂର ଲୋକାପଡ଼ାଠାରୁ ଉଭୟ ଦେଶୀୟ ଓ ସ୍ଥାନୀୟ ଲାଞ୍ଛବ ମୁଦ୍ରା ସଂଗୃହୀତ ହୋଇଛି । କୋଶଳ ଅଞ୍ଚଳରୁ ନଦୀ ପଥରେ ଆନ୍ତର୍ବାଣିଜ୍ୟ ଦ୍ୱାରା ବିଭିନ୍ନ ଦ୍ରବ୍ୟ ସବୁ ସଂଗୃହୀତ ହେଉଥିଲା । ତାମ୍ରଲିପ୍ତିଠାରୁ ଦାମୋଦର, ରୂପ ନାରାୟଣ ଓ ଗଙ୍ଗାନଦୀ ଦେଇ ନୌକା ସାହାଯ୍ୟରେ ହସ୍ତିନାପୁର ପର୍ଯ୍ୟନ୍ତ ବାଣିଜ୍ୟିକ କାରବାର ହେଉଥିଲା । ବ୍ରାହ୍ମଣୀ, ବୈତରଣୀ ଓ ସାଳନ୍ଦୀ ନଦୀ ଦ୍ୱାରା ବାଲେଶ୍ୱର ଅଞ୍ଚଳର ଦ୍ରବ୍ୟ ସବୁ ଆମଦାନୀ ଓ ରପ୍ତାନୀ କରାଯାଉଥିଲା । ପ୍ରାଚୀନ କାଳରେ ଏହିପରି ଭାବରେ ଅର୍ନ୍ତ ଓ ବର୍ହିଃ ବାଣିଜ୍ୟ ସଂଗଠିତ ଭାବରେ କରାଯାଉଥିଲା ।

ସମ୍ବଲପୁରର ରାଜା ଇନ୍ଦ୍ରଭୂତିଙ୍କ ଦ୍ୱାରା ପ୍ରଚାରିତ ବଜ୍ରଯାନ ବାଲିରେ ଖୁବ୍ ଜନପ୍ରିୟ ଥିଲା । ଇନ୍ଦ୍ରଭୂତିଙ୍କର ଆଦିବୁଦ୍ଧ ଜଗନ୍ନାଥ ସେଠାରେ ଖୁବ୍ ଆଦୃତ ହେଉଥିଲା । ସେଠାରେ ମଧ୍ୟ ଶୈବ ଓ ବୈଷ୍ଣବ ସଂସ୍କୃତିର ମିଳନ ହୋଇଥିଲା ।

ସଂସ୍କୃତ ଶବ୍ଦ 'ସାର୍ଥବାହ'ରୁ ସାଧବ ଶବ୍ଦର ଉତ୍ପତ୍ତି ହୋଇଅଛି । ସାଧବମାନେ ବିତ୍ତଶାଳୀ ଓ ସାହସୀ ଥିଲେ । ବ୍ୟକ୍ତିଗତ ପ୍ରଚେଷ୍ଟା ଓ ସାମୂହିକ ଉଦ୍ୟମ ଜରିଆରେ ସେମାନେ ଆର୍ନ୍ତ ଓ ବର୍ହିଃ ବାଣିଜ୍ୟ କରୁଥିଲେ । ଓଡ଼ିଶାରେ ସାଧବମାନଙ୍କ ବିଷୟରେ ଅନେକ କିମ୍ବଦନ୍ତୀ ଓ ଦୁଃସାହସିକ କାହାଣୀ ରହିଛି । ବଙ୍ଗୋପସାଗରରେ ସାମୁଦ୍ରିକ ପଥରେ ଯାତାୟାତ ଏବଂ ବାଣିଜ୍ୟ ପାଇଁ ସେମାନଙ୍କର ପ୍ରସିଦ୍ଧି ଥିଲା । ଏପରିକି ବଙ୍ଗୋପସାଗରକୁ ସେମାନେ କଳିଙ୍ଗ ସାଗର ବୋଲି ଆଖ୍ୟା ଦେଇଥିଲେ । ରାଜାମାନେ ମଧ୍ୟ ସମୟ ସମୟରେ ସେମାନଙ୍କର ବାଣିଜ୍ୟରେ ସଂପୃକ୍ତ ଥିଲେ । ରପ୍ତାନୀ ଦ୍ରବ୍ୟ ସବୁ ସଂଗ୍ରହ କରିବା ପରେ ସେମାନେ କାର୍ତ୍ତିକ ଅମାବାସ୍ୟା ଦିନ ଲକ୍ଷ୍ମୀପୂଜା କରୁଥିଲେ । ତା'ପରେ ସେମାନେ ଜାହାଜରେ ସେଗୁଡ଼ିକୁ ବୋଝେଇ କରି କାର୍ତ୍ତିକ ପୂର୍ଣ୍ଣିମା ଦିନ ଜଳଯାତ୍ରାରେ ବାହାରୁଥିଲେ । ଉତ୍ତର ଦିଗରୁ ବହୁଥିବା ବାୟୁ ଯୋଗୁଁ ସେମାନେ ଜାଭା, ସୁମାତ୍ରା, ବାଲି, ବୋର୍ଣ୍ଣିଓ, ଶ୍ୟାମ, ଶ୍ରୀଲଙ୍କା ଓ ଚୀନକୁ ଜଳଯାତ୍ରା କରିପାରୁଥିଲେ । ଏହି ପରମ୍ପରାକୁ ମନେ ରଖିବା ପାଇଁ ଏବେ ଆମେ କାର୍ତ୍ତିକ ପୂର୍ଣ୍ଣିମା ଦିନ ବାଲିଯାତ୍ରା ଉତ୍ସବ ପାଳନ କରୁ । ଟୋଲେମୀ ମଧ୍ୟ ଏହା ଉଲ୍ଲେଖ କରିଛନ୍ତି । ସେମାନେ ଚୈତ୍ରମାସ ପର୍ଯ୍ୟନ୍ତ ଦକ୍ଷିଣ ଏସୀୟ ଦେଶଗୁଡ଼ିକୁ ବାଣିଜ୍ୟ ପାଇଁ ଯାଉଥିଲେ ଏବଂ ବିପୁଳ ସମ୍ପତ୍ତି ଧରି ପ୍ରତ୍ୟାବର୍ତ୍ତନ କରୁଥିଲେ । ତାଙ୍କର ଘରବାହୁଡ଼ାକୁ ପଣା ସଂକ୍ରାନ୍ତି ଉତ୍ସବ ଭାବରେ ପାଳନ କରାଯାଉଥିଲା । ଏହି ପରମ୍ପରା ଏବେ ମଧ୍ୟ ରହିଛି ।

ଦ୍ୱାଦଶ ଶତାବ୍ଦୀର ଜାଭାର ରାଜା ଜୟଭାୟାଙ୍କର ବଂଶଧର କଳିଙ୍ଗବାସୀ ଥିଲେ ବୋଲି ସେ ଉଲ୍ଲେଖ କରିଛନ୍ତି । ଜାଭାରେ ହୋହିଙ୍ଗ ବୋଲି ଏକ ସ୍ଥାନ ଅଛି ଯେଉଁଠାରେ କି କଳିଙ୍ଗର ଲୋକମାନେ ପ୍ରଥମେ ପଦାର୍ପଣ କରୁଥିଲେ । କେତେକ ଗବେଷକଙ୍କ ମତରେ ଚୀନରେ କଳିଙ୍ଗ ଶବ୍ଦଟି ହୋହିଙ୍ଗର ସମସାମୟିକ । ନାଗରୀ ଭାଷାରେ ଜାଭାରେ ଦେଖା ଯାଉଥିବା ଶିଳାଲେଖ ସବୁ ଓଡ଼ିଶାର ଶିଳାଲେଖ ସହିତ ପ୍ରାୟ ସମାନ । ବୋର ବୁଦୁରର ବୁଦ୍ଧମୂର୍ତ୍ତି ଓ ରତ୍ନଗିରିର ବୁଦ୍ଧମୂର୍ତ୍ତି ମଧ୍ୟରେ ଅନେକ ସାମଞ୍ଜସ୍ୟ ରହିଛି । ଜାଭାର କାଳମକର ମୂର୍ତ୍ତି ସହିତ ମୁକ୍ତେଶ୍ୱର ମନ୍ଦିର ମକର ତୋରଣ ଏବଂ କୀର୍ତ୍ତିମୁଖ ସ୍ଥାପତ୍ୟ ଶୈଳୀର ଅନେକ ମେଳ ରହିଛି । ଏଥିରୁ ସୂଚନା ମିଳେ ଯେ ଓଡ଼ିଶାର ଶିଳ୍ପୀମାନେ ତାଙ୍କର ବାଣିଜ୍ୟ ଦ୍ରବ୍ୟ ଓ ଧର୍ମଗୁରୁମାନଙ୍କ ସହିତ ଜାଭା ଯାଉଥିଲେ । ଜାଭାରେ ପଞ୍ଚମ ଶତାବ୍ଦୀରେ ଚନ୍ଦ୍ରଭାଗା ଓ ଗୋମତୀ ନାମରେ ଦୁଇଟି କେନାଲ ଖୋଳା, ଏହି ଭ୍ରମଣକାରୀଙ୍କ ଦ୍ୱାରା ହୋଇଥିଲା ବୋଲି ଅନୁମାନ କରାଯାଏ । ପରିବ୍ରାଜକ ଫାହିୟାନ ୪୧୩ ଖ୍ରୀଷ୍ଟାବ୍ଦରେ ତାଙ୍କର ଜାଭା ଭ୍ରମଣ କାଳରେ କଳିଙ୍ଗରୁ ଅନେକ ବ୍ରାହ୍ମଣ ଓ ବୌଦ୍ଧ ଚୀନକୁ ଆସୁଥିବାର ଉଲ୍ଲେଖ କରିଛନ୍ତି ଏବଂ ଯେଉଁ ଜାହାଜରେ ସେ କ୍ୟାଣ୍ଟନ ଯାତ୍ରା କରୁଥିଲେ ସେଥିରେ ଶହ ଶହ ହିନ୍ଦୁ ବଣିକ ଥିଲେ ବୋଲି ସେ କହିଛନ୍ତି । ଚୀନର ତାପଙ୍ଗ ବଂଶର ଇତିହାସରୁ ନିର୍ଦ୍ଦିଷ୍ଟ ଭାବେ ଜଣାଯାଏ ଯେ ଜାଭାରେ କଳିଙ୍ଗ ନାମରେ ଏକ ରାଜ୍ୟ ଥିଲା ସେହି ସମୟରେ ସୁମାତ୍ରାରେ ମଧ୍ୟ କଳିଙ୍ଗ ସଂସ୍କୃତିର ଛାପର ପ୍ରତିଫଳ ଏବଂ ଶବ୍ଦର ପ୍ରତିଧ୍ୱନୀ ଅନୁଭୂତ ହେଉଥିଲା ।

## କଳିଙ୍ଗ ଓ ବାଲି

ଇଣ୍ଡୋନେସିଆର ରାଜ୍ୟମାନଙ୍କ ଭିତରେ ବାଲି କଳିଙ୍ଗ ସଂସ୍କୃତିର ବିଶେଷ ସ୍ୱାକ୍ଷର ବହନ କରେ । ବର୍ତ୍ତମାନ ଏହା ମୂଳତଃ ହିନ୍ଦୁଭୂମି । ଏହାର ଆକାରର ଅନିୟମିତତା ଅଛି । କାରଣ ଏହାର ଲମ୍ବା ୮୦ ମାଇଲ ଏବଂ ଓସାର ୫୦ ମାଇଲ । ଏଠାରେ ଅନେକ ଆଗ୍ନେୟଗିରି ଶୃଙ୍ଗ ରହିଛି । ଭୁବନେଶ୍ୱର ପରି ଏହାକୁ ସହସ୍ର ମନ୍ଦିରମାଳିନୀ ଦ୍ୱୀପ ବୋଲି କୁହାଯାଏ ।

କଳିଙ୍ଗମାନଙ୍କର ପ୍ରଥମ ବାଲିଯାତ୍ରାର ସ୍ମୃତିକୁ ଉଜ୍ଜୀବିତକରିବା ପାଇଁ ଏଠାରେ ପ୍ରତିବର୍ଷ ବାଲିଯାତ୍ରା ଉତ୍ସବ ପାଳନ କରାଯାଏ । ଓଡ଼ିଶାର ଶୈଳୋଦ୍ଭବ ବଂଶର ଇତିହାସରୁ ଜଣାଯାଏ ଯେ ଷଷ୍ଠ ଶତାବ୍ଦୀରେ ରାଜା ମାଧବରାଜଙ୍କୁ ୨୦ ହଜାର ସୈନ୍ୟଙ୍କ ସହିତ ବାଲିକୁ ନିର୍ବାସନ କରାଯାଇଥିଲା । ସେ ବାଲିରେ ନିଜର ରାଜ୍ୟ ପ୍ରତିଷ୍ଠା କଲେ ଏବଂ ପରବର୍ତ୍ତୀ ସମୟରେ ବିଜୟ ଏବଂ ବାଣିଜ୍ୟ ଦ୍ୱାରା ଅନ୍ୟ ଅଞ୍ଚଳରେ ନିଜର ପ୍ରଭାବ ବିସ୍ତାର କରିଥିଲେ । ଅନୁମାନ କରାଯାଏ ଯେ, ସେହିଦିନଠାରୁ ବାଲିକୁ ସାମୁଦ୍ରିକ ବାଣିଜ୍ୟ କାରବାର ଓ ଯାତାୟାତ ବହୁ ପରିମାଣରେ ବୃଦ୍ଧି ପାଇଲା । ଓଡ଼ିଶାର ରାମାୟଣ ଓ ମହାଭାରତର ନୃତ୍ୟଧାରା ସହିତ ବାଲିର ନୃତ୍ୟଧାରାର ବହୁତ ସାମଞ୍ଜସ୍ୟ ରହିଛି । ବାଲିର ମାଙ୍କଡ଼ ନାଚ ସହିତ ଓଡ଼ିଶାର ଆଦିବାସୀ ନୃତ୍ୟର ଅନେକ ମେଳ ରହିଛି । ବୋରଙ୍ଗ ସାମରିକ ନୃତ୍ୟ ପରମ୍ପରା ଓଡ଼ିଶାର ପାଇକ ନୃତ୍ୟ ପରମ୍ପରାର ସ୍ୱାକ୍ଷର ବହନ କରେ । ପର୍ବତରୁ ବହୁଥିବା ଝରଣାରେ ସ୍ନାନରତା ନଗ୍ନ ଯୁବତୀ ଗଛଲତା ପତ୍ରର ମୃଦୁନାଦ ଭିତରେ ଅରଣ୍ୟ ଦେବତାର ଦୃଶ୍ୟ ଓଡ଼ିଶାର ଆଦିବାସୀ ଜନଜୀବନର ସ୍ମୃତି ଉଦ୍ରେକ କରିଥାଏ । ସମ୍ବଲପୁରୀ ବସ୍ତ୍ରର ରଙ୍ଗ, ଧୂଳେଇ ଓ ବୁଣିବା ପରମ୍ପରା ମଧ୍ୟ ବାଲିର ହସ୍ତତନ୍ତ ବସ୍ତ୍ର ଉପରେ ଅନେକ ପ୍ରଭାବ ପକାଇଛି । ବାଲିର ଗବେଷକ ଡ. ଆଇ.ଜି.ପି. ଫାଲଗୁଲାଡ଼ିଙ୍କ ମତରେ ବାଲି ଏବଂ ଓଡ଼ିଶାର ଲୋକମାନଙ୍କର ଖାଦ୍ୟ, ପେୟ, ଧାର୍ମିକ ଆଚରଣ ଏବଂ ଶବ୍ଦ ସମ୍ଭାଷଣରେ ଅନେକ ସାମଞ୍ଜସ୍ୟ ରହିଛି ।

ମୋଗଲମାନଙ୍କ ଆଗମନ ପରେ ଓଡ଼ିଶାର ନୌବାଣିଜ୍ୟ ପରମ୍ପରାର ଅବକ୍ଷୟ ଆରମ୍ଭ ହୋଇଥିଲା ଏବଂ ବର୍ତ୍ତମାନ ଏହା ଏକ ବାର୍ଷିକ ପରମ୍ପରାର ନମୂନା ରୂପେ କାର୍ତ୍ତିକ ପୂର୍ଣ୍ଣିମା ଦିନ ଛୋଟ ଛୋଟ ଖେଳନା ଡଙ୍ଗା ଭସାଯାଇ ସେହି ପ୍ରାଚୀନ ଗୌରବମୟ ପରମ୍ପରାକୁ ଉଜ୍ଜୀବିତ କରାଯାଉଛି ।

ଅଧ୍ୟକ୍ଷ, ରାଜ୍ୟ ସଂଗ୍ରହାଳୟ
ଭୁବନେଶ୍ୱର

# ସାଗର ସେପାରେ ସାଧବପୁଅ

କାହ୍ନୁ ନାରାୟଣ ମହାନ୍ତି

**କୌ**ଣସି ଦେଶ ବା ଜାତିର ଅନ୍ତଃପ୍ରକୃତି ହିଁ ସେହି ଦେଶର ବା ଜାତିର ସଂସ୍କୃତି, ବହିର୍ବିକାଶ ହିଁ ସଭ୍ୟତା - ଏହାର ଆତ୍ମିକ ଦ୍ୟୋତନା ଓ ଚେତନା ହିଁ ସଂସ୍କୃତି । ସଂସ୍କୃତି ଦ୍ୱାରା ହିଁ ବିକଶିତ ହୁଏ ସଭ୍ୟତା ।

ଆମ ଦେଶ ଉତ୍କଳ । ଆମ ରାଜ୍ୟ ଓଡ଼ିଶା । ଆମ ମାଆ ଭାରତ । ଆମ ସେନା କଳିଙ୍ଗ ସେନା । ଆମ ଭାଷା ଓଡ଼ିଆ । ଆମ ସଂସ୍କୃତି ଉତ୍କଳୀୟ ସଂସ୍କୃତି । ଆମ ବାଣିଜ୍ୟ ନୌବାଣିଜ୍ୟ । ଆମ ପ୍ରଭୁ ଶ୍ରୀଜଗନ୍ନାଥ ।

ଆମ ସଂସ୍କୃତି ଭାରତୀୟ ସଂସ୍କୃତିରେ ମହନୀୟ ଧାର । ଏହା ସମଗ୍ର ଏସିଆ ମହାଦେଶର ସାଂସ୍କୃତିକ ସ୍ରୋତ ସହ ମିଶିଯାଇ ବିଶ୍ୱ ସଂସ୍କୃତିରେ ଏକ ଅପୂର୍ବ ପରମ୍ପରା ସୃଷ୍ଟି କରିପାରିଛି ।

ସଂସ୍କୃତି ହେଉଛି ଜ୍ଞାନଗତ ଉତ୍କର୍ଷ । ମଣିଷର ଆବିର୍ଭାବ ଘଟିବା ସଂଗେସଂଗେ ତା'ର ସଂସ୍କୃତି ତା' ସଂଗେସଂଗେ ରହି ଆସିଛି । ସଂସ୍କୃତି ସଦା ଜୀବନ୍ତ । ମଣିଷ ତା'ର ସଂସ୍କୃତିକୁ ନିଜ ହାତରେ ଗଢ଼ିଛି, ନିଜ ଦୃଷ୍ଟିର ଅଳଙ୍କାରରେ ତାକୁ ରୂପାୟିତ କରିଛି ।

ଉତ୍କୃଷ୍ଟ କଳାର ଦେଶ ଉତ୍କଳ । ସଂଗୀତ, ସାହିତ୍ୟ, ସ୍ଥାପତ୍ୟ ନୃତ୍ୟ ଶିଳ୍ପ, ଭାସ୍କର୍ଯ୍ୟ ତଥା ବାଣିଜ୍ୟ ପ୍ରତ୍ୟେକ କ୍ଷେତ୍ରରେ ଏହାର ସୁନାମ ସୁଦୂର ପ୍ରସାର ଲାଭ କରିଥିଲା ।

ମହୋଦଧିର ନୀଳତରଙ୍ଗରେ କଳିଙ୍ଗର ସାଧବପୁଅ ବୋଇତ ମେଲି ସାଗରର ସୀମା ଲଂଘି ପହଞ୍ଚିଛି ବ୍ରହ୍ମଦେଶ, ଶ୍ୟାମ, କମ୍ବୋଜ, ମାଳୟ, ଚମ୍ପା, ସୁମାତ୍ରା, ଜାଭା ବୋର୍ଣ୍ଣିଓ ସିଂହଳ ଓ ବାଲିଦ୍ୱୀପରେ ।

ସାଗର ପାରି ଦ୍ୱୀପପୁଞ୍ଜରେ ବାଣିଜ୍ୟ କେନ୍ଦ୍ର । ଉତ୍କଳୀୟମାନେ ସାଗରତଟୀରେ ଶୁଭ କାଳ ଦେଖି ଗଙ୍ଗାମାତାଙ୍କଠାରୁ ମାଆ ମଙ୍ଗଳାଙ୍କୁ ବନ୍ଦନା କରି ଯାତ୍ରାରମ୍ଭ କରିଥାନ୍ତି । ଦୀର୍ଘକାଳର ବିପଦଶଙ୍କୁଳ ଅଥଳ ଜଳପଥ ସାହସୀ ସାଧବକୂଳ ନିଃଶଙ୍କ । ସେ ଜାଣେ 'ବାଣିଜ୍ୟେ ବସତି ଲକ୍ଷ୍ମୀ । ତଦର୍ଦ୍ଧଂ କୃଷି କର୍ମାଣି' - ଉତ୍କଳୀୟମାନଙ୍କ ପାଇଁ ଯଥାର୍ଥ ଥିଲା । ବୀର ଜାତି ଭୟ କ'ଣ ଜାଣି ନଥିଲା । ଦୁର୍ଗମ ଗିରି ଅଥଚ ଜଳରାଶିରେ ସେ ବିଜୟୀ । ନୌବାଣିଜ୍ୟରେ ଉତ୍କଳୀୟମାନେ ନିପୁଣ ଥିଲେ ତା'ର ସତଧା ପ୍ରମାଣ ଲିପିବଦ୍ଧ ହୋଇ ରହିଛି ।

ସାଧବ ପୁଅ ଉଦାତ୍ତ କଣ୍ଠରେ ଉପନିଷଦର ମହାଭାବନା ଆ, କା, ମା, ଭୈଙ୍କୁ କେବଳ ଉଚ୍ଚାରଣ କରୁ ନଥିଲା ସେ ଥିଲା ବଣିଜ ମାଧମରେ ଅମୃତର ସନ୍ଧାନୀ ।

ଯେମିତି ସେ ଦେଶକୁ ହୀରା ମୋତି ମାଣିକ ଆଣି ରାଜକୋଷ ଭରୁଥିଲା ସେମିତି ସୁକର୍ଣ୍ଣ ରାଇଜର କଳାକୃତିକୁ, ଅପୂର୍ବ କଳାନୈପୂଣ୍ୟକୁ ସେ ସୁନା, ହାତୀଦାନ୍ତ, ପାଟ ପିତାମ୍ବରୀରେ ସଜାଇ ଦୂରଦେଶରେ ଜାତିର କୀର୍ତ୍ତି ବଢ଼ାଉଥିଲା । ସାଥିରେ ବି ନେଉଥିଲା ନାନା ବନଜାତ ଦ୍ରବ୍ୟ, ଲୁହା, ଡାଲି ଜାତୀୟ ଖାଦ୍ୟଶସ୍ୟ ଏବଂ ବିଳାସ ସାମଗ୍ରୀ ।

ଯୁଗେ ଯୁଗେ ଉତ୍କଳୀୟମାନଙ୍କର ନୌବାଣିଜ୍ୟ ଅଣ-ଉତ୍କଳୀୟମାନଙ୍କୁ ଆକୃଷ୍ଟ କରିଛି । ଦେଶ ଦେଶାନ୍ତରେ ଦେଖା ଦେଇଛି ଉତ୍କଳୀୟ ନୌବାଣିଜ୍ୟର ପରମ୍ପରା । ଖାଦ୍ୟ, ଶସ୍ୟ, ବସ୍ତ୍ର ମସଲା ସାମଗ୍ରୀ ଛଡ଼ା ହୀରା ଥିଲା ବାଣିଜ୍ୟର ଅନ୍ୟତମ ସାମଗ୍ରୀ । ମହାନଦୀ ଶଯ୍ୟାରୁ ସମ୍ବଲପୁରର ଝାଡୁଆ ଜାତି ହୀରା ସଂଗ୍ରହ କରି ବ୍ୟବସାୟ କରୁଥିଲେ । ଝାଡୁଆମାନେ ହୀରାକାରବାର ନିମନ୍ତେ ଦେଶ ବିଦେଶରେ ଯାଇ ବସତି ସ୍ଥାପନ କରି ରହିଥିବାର ଦେଖାଯାଏ ।

ସମ୍ବଲପୁରରେ 'ହୀରାକୁଦ' ହୀରା ବ୍ୟବସାୟର ମୁଖ୍ୟକ୍ଷେତ୍ର ଥିଲା ବୋଲି ମୂକସାକ୍ଷୀ ସଦୃଶ ରହିଛି । ସମ୍ବଲପୁର ହୀରାର ପ୍ରସିଦ୍ଧ କେବଳ ଭାରତରେ ନୁହେଁ, ରୋମ ସହରରେ ମଧ ବହୁ ମୂଲ୍ୟରେ ବିକ୍ରୀ ହେଉ ଥିଲା । 'ଉତ୍କଳ ଇତିହାସ'ରେ ପଣ୍ଡିତ କୃପାସିନ୍ଧୁ ମିଶ୍ର ଲେଖିଛନ୍ତି, 'ସମ୍ବଲପୁରର ହୀରାକୁଦରୁ ଏବେ ହୀରା ଶେଷ ହୋଇଛି କିନ୍ତୁ ଝାଡୁଆ ଜାତି ଅଦ୍ୟାପି ଦେଶ ବିଦେଶରେ ବସତି କରି ପୂର୍ବପୁରୁଷର ବାଣିଜ୍ୟ ଲକ୍ଷ୍ମୀର ସ୍ମୃତିରେ ଜୀବିତ ଅଛନ୍ତି ।

ଆଷାଢ଼ରେ ଯାଇ କାର୍ତ୍ତିକରେ ଫେରୁଥିବା ଓଡ଼ିଆ ସାଧବପୁଅମାନଙ୍କର ମାଆ ମଙ୍ଗଳା ପୂଜା ବା ଖୁଦୁରୁକୁଣୀ ଓଷା ବୋଇତ, ସାଧବପୁଅ ଓ ସଂଭ୍ରାନ୍ତ ଜୀବନଯାତ୍ରାର ଐତିହ୍ୟ 'ତଅପୋଇ' ଗୀତ ତା'ର ବଳିଷ୍ଠ ପ୍ରମାଣ ।

ଓଡ଼ିଶାର ଅନେକ ପ୍ରମାଣଯୋଗ୍ୟ ପରମ୍ପରା ପରି ଢଗଢ଼ମାଳି ମଧ୍ୟରେ ମଧ୍ୟ ଅନେକ ସାଂସ୍କୃତିକ ଓ ସାମାଜିକ ଚିତ୍ର ପ୍ରତିଫଳିତ ହୋଇରହିଛି । ଯେମିତି -

ଅଙ୍ଗ ଦେଶର ଚୂଡ଼ି, ବଙ୍ଗ ଦେଶର ଶାଢ଼ୀ
କଳିଙ୍ଗ ଦେଶର ସାଧବପୁଅ ମୁଁ ବୋଇତ ଦେଇଛି ମେଲି ।

ସାଧବପୁଅ ନଦୀ ସମୁଦ୍ର ଦିଗଦିଗନ୍ତ, ପାଣିପାଗ, ମୌସୁମୀ ସହିତ ବିଭିନ୍ନ ଅଂଚଳରେ ମିଳୁଥିବା ଓ ଚାହିଦାଥିବା ସାମଗ୍ରୀକୁ ସଂଗ୍ରହ କରି ସମୁଦ୍ରଯାତ୍ରା କରୁଥିଲା ।

'ଚଇତ ଶୀତ ଯାଏ ବୋଇତ' ଏ କଥାର ତାତ୍ପର୍ଯ୍ୟ ହେଲା- ଚୈତ୍ର ମାସ ଯାଏ ଶୀତ ଥାଏ ତା'ପରେ ସୂର୍ଯ୍ୟର ପ୍ରଚଣ୍ଡ ରଶ୍ମିରେ ନଦୀ ଶୁଖିଯାଇ ବୋଇତ ଯାତ୍ରା ପାଇଁ ଅନୁପଯୁକ୍ତ ହୁଏ । ସେଥିପାଇଁ ଚଇତରୁ ଆଷାଢ଼ ପର୍ଯ୍ୟନ୍ତ ଡଙ୍ଗା, ନୌକା ବା ବୋଇତର ବ୍ୟବହାର ବନ୍ଦ ରହେ । ଏହି ବିଧାନ ଆଜି ବି ଉତ୍କଳରେ ରହିଛି । କୈବର୍ତ୍ତମାନେ ଚୈତ୍ର ପୂର୍ଣ୍ଣିମାଦିନ ନୌକା ପୂଜା କରି ଘୋଡ଼ାନାଚ ଇତ୍ୟାଦି ନାନା ଉତ୍ସବରେ ମାତି ରୁହନ୍ତି ।

ଲକ୍ଷ୍ମୀଙ୍କର ଜନ୍ମସ୍ଥାନ ବା ପିତା ହେଲେ ସମୁଦ୍ର । ସମୁଦ୍ରକୁ ପ୍ରାଚୀନ ହିନ୍ଦୁମାନେ ଲକ୍ଷ୍ମୀଙ୍କ ବାସସ୍ଥାନ ମନେ କରି ବାଣିଜ୍ୟ କଲେ ଧନପ୍ରାପ୍ତି ହୁଏ ବୋଲି ସମୁଦ୍ର ବାଣିଜ୍ୟ କରୁଥିଲେ ।

ସମୁଦ୍ର ପରି ଉତ୍କଳର ନଦୀ ଓ ଉପକୂଳ ସବୁ ସୁନାବ୍ୟା ଓ ପୋତାଶ୍ରୟ ପାଇଁ ଉପଯୁକ୍ତ ଥିଲା । ଆଜି ଉତ୍କଳର ନଦୀ ସମୂହ ପୂର୍ବପରି ସୁଗଭୀର ଓ ସ୍ରୋତସ୍ୱିନୀ ନୁହଁନ୍ତି । ଉତ୍କଳର ଉପକୂଳ ପୋତାଶ୍ରୟ ହେବାକୁ ଅନୁପଯୁକ୍ତ ହୋଇପଡ଼ିଛି । ଏହା ଅବଶ୍ୟ ରାଜଶକ୍ତିର ନୌବାଣିଜ୍ୟ ପ୍ରତି ଯଥାଯଥ ପ୍ରତିକାର ବା ପଦକ୍ଷେପ ଅଭାବ ହେତୁ କିମ୍ବା ପ୍ରାକୃତିକ ବିପର୍ଯ୍ୟୟ ଅବା ବହିଃଶତ୍ରୁମାନଙ୍କର ବାରମ୍ବାର ଆକ୍ରମଣ ଯୋଗୁଁ ଘଟିଥାଇପାରେ । ତେବେ ଏହା ବେଶି ଦିନର ନୁହେଁ ।

ଧର୍ମଯାଜକମାନଙ୍କ ଲିଖିତ ଗୌତମବୁଦ୍ଧ ଜୀବନୀରୁ ଜଣାଯାଏ ଯେ ବ୍ରହ୍ମଦେଶର 'ତପୁସ' ଓ 'ପଲିକତ୍' ନାମକ ଦୁଇଜଣ ବଣିକ ଗୌତମଙ୍କ ପାଇଁ ପାଞ୍ଚଶହ ଗାଡ଼ି ଉପହାର ଧରି ଉତ୍କଳର ଉତ୍ତରରେ ଥିବା ଅଜୀତ ବନ୍ଦରରେ ପହଞ୍ଚିଥିଲେ । ଏହା ପଞ୍ଚମ ଶତାବ୍ଦୀର କଥା ।

ଚାଣକ୍ୟଙ୍କର ରଚିତ ଅର୍ଥଶାସ୍ତ୍ର ହେଲା ଖ୍ରୀ:ପୂ: ତୃତୀୟ-ଚତୁର୍ଥ ଶତାବ୍ଦୀର । ସେଥିରେ ସେ ପ୍ରଣୟନ କରିଥିବା ନୌବାଣିଜ୍ୟର ନିୟମମାନ କଳିଙ୍ଗ ପ୍ରଭୃତି ସମୁଦ୍ରଯାତ୍ରା ଦେଶମାନଙ୍କର ରୀତିନୀତି ଏବେ ମଧ୍ୟ ପ୍ରଚଳିତ ହୋଇ ଆସୁଛି । ଆଜି ଉତ୍କଳର ନୌବାଣିଜ୍ୟ ସଂସ୍କୃତିର ଗୌରବମୟ ପରମ୍ପରାକୁ ସ୍ମରଣ କରି ଆମେ ଆମ ଇତିହାସ, ଜାତୀୟ ଜୀବନକୁ ସ୍ମରଣ କରି ସୋଲ ଓ କଦଳୀ ପଟୁକାରେ ଡଙ୍ଗା ନଇ, ପୋଖରୀ ସାଗରରେ ଭସାଇ ସ୍ମୃତିରକ୍ଷା ପର୍ବପାଳନ କରୁଛେ ।

ଆମ ଅତୀତର ମହାନତାକୁ ବହୁ କବି ତାଙ୍କ ରଚନାରେ ପରିସ୍ଫୁଟ କରିଛନ୍ତି । ପଣ୍ଡିତ ନୀଳକଣ୍ଠ ଦାସ 'କୋଣାର୍କ'ରେ ଲେଖିଛନ୍ତି -

ତରଙ୍ଗରେ ଖେଳି ତରଣୀ ପୁଣି ଟେକିବ ପାଲ
ଶାରଦ ଗଗନେ ବଉଦ ପରି ହେବ ବାହାର
କାହିଁ ଜାଭା କାହିଁ ବୋର୍ଣ୍ଣିଓ କାହିଁ ମଶାଲ ଦ୍ୱୀପେ
ଯିବ ଭାସି ସୁଖ ସ୍ୱପନେ ମଣିବହେ ସମୀପେ ।

ବିରୂପାକ୍ଷ କରଙ୍କ ନିବନ୍ଧରେ କୁହାଯାଇଛି- ଉତ୍କଳୀୟମାନେ କେବଳ ଦକ୍ଷିଣାଞ୍ଚଳ ଦେଶମାନଙ୍କରେ ବାଣିଜ୍ୟ କରୁନଥିଲେ । ସୁଦୂର ଚୀନ, ବ୍ରହ୍ମଦେଶ ପର୍ଯ୍ୟନ୍ତ ତାଙ୍କ ବାଣିଜ୍ୟପୋତ ଯାତାୟତ କରୁଥିଲା । ଟୋଲେମୀଙ୍କ ଲିଖିତ ଖ୍ରୀଷ୍ଟିୟ ପ୍ରଥମ ଶତାବ୍ଦୀରେ ଉତ୍କଳ ଉପକୂଳରେ ଅନେକ ବନ୍ଦର ଥିଲା, ନନିଗେନ (ପୁରୀ), କତିକର୍ଦ୍ଦମ (କଟକ), କୋଣଗର (କୋଣାର୍କ), କୋଶମ୍ବ (ବାଲେଶ୍ୱର) ଓ ଅନ୍ୟାନ୍ୟ ଅନେକଙ୍କ ମଧ୍ୟରୁ ଏମାନେ ପ୍ରଧାନ । ଗଂଜାମର ପାଲୁର ତଥା ପୁରୀର ଆଡ଼ାମସ ମଧ୍ୟ ବଡ଼ ବନ୍ଦର ଥିଲା ।

ସେହି ସମୟରେ ଚେଳିତୋଳ, ରଙ୍ଗଣୀ, ଛନୁୟା, କୁରାମନ୍, ଲଛମନ୍‌ପୁର, ସରଥ, ଧାମରା, ଗୋପାଳପୁର ଇତ୍ୟାଦି ସ୍ଥାନରେ ଛୋଟଛୋଟ ବନ୍ଦର ତଥା ବାଣିଜ୍ୟ କ୍ଷେତ୍ର ଥିଲା । ଦେବୀ ନଦୀ ତୀରବର୍ତ୍ତୀ ବହୁ ଅଞ୍ଚଳରେ ଶସ୍ୟ ସଂଗ୍ରହ ଓ ମାଲ ସଂଗ୍ରହ ଓ ସଂରକ୍ଷଣ ପାଇଁ କେତେକ ବାଣିଜ୍ୟିକ କେନ୍ଦ୍ର ଥିଲା । ଊନବିଂଶ ଶତାବ୍ଦୀ ପର୍ଯ୍ୟନ୍ତ ଦେବୀନଦୀ ସମୁଦ୍ରଠାରୁ ସାତ ମାଇଲ ଯାଏ ବଡ଼ ବଡ଼ ଜାହାଜ ଓ ବୋଇତମାନଙ୍କର ଗମନାଗମନ ପକ୍ଷେ ଉପଯୋଗୀ ଥିଲା । ମହାନଦୀର ମୁହାଣଠାରୁ ନଦୀ ଗର୍ଭରେ ପାଞ୍ଚ ଶହ ଟନ୍ ମାଲ ବୋଝେଇ ଜାହାଜ ଯାତାୟତ କରୁଥିଲା । ଧାମରା ଲୁଣ ଦେବୀନଦୀର ମାଛଗାଁ ଧାନ ରପ୍ତାନୀର ପ୍ରଧାନ କେନ୍ଦ୍ର ଥିଲା । ବୈଦେଶ୍ୱର, କଣ୍ଟିଲୋ, ପଦ୍ମାବତୀ ମହାନଦୀ କୂଳର ତିନୋଟି ବାଣିଜ୍ୟଜୀବୀ ସ୍ଥାନ ଥିଲା । ତାମ୍ରଲିପି ପିପିଲି ମଧ୍ୟ ସେତେବେଳେ ପ୍ରସିଦ୍ଧ ବନ୍ଦର ଥିଲା । ବାଲେଶ୍ୱରରେ ଉତ୍କଳୀୟ ନୌବାଣିଜ୍ୟର ଅନ୍ତ ହୋଇଥିଲା ।

ଦୂରଦେଶକୁ ଓଡ଼ିଆ ସାଧବପୁଅ ବୋଇତ ନେଇ ବାଣିଜ୍ୟ କରିଯାଉଥିଲେ ଏବଂ ଦେଶ ବା ରାଜ୍ୟ ଭିତରେ ପରିବହନ ପାଇଁ ମଧ୍ୟ ବୋଇତ ଚାଲୁଥିଲା । ନାବିକମାନେ ମସଲା, ନଡ଼ିଆ, ଲୁଣ, ପିତ୍ତଳ ଇତ୍ୟାଦି ସମ୍ବଲପୁର ଅଞ୍ଚଳକୁ ନେଇ ଯାଉଥିଲେ ଏବଂ ସେଠାରୁ ଗହମ, ଟସର, କପା, ହଳଦୀ, ଲୁହା ଓ ଧାନ ଇତ୍ୟାଦି ଆଣି ଆସୁଥିଲେ । ଦେଶୀୟ ଜାହାଜରେ ହାତୀ ନେଇ ଦୂରଦେଶରେ ସାଧବମାନେ ବିକ୍ରୀ କରୁଥିଲେ, କାରଣ ହାତୀ ରଖିବା ରାଜାମାନଙ୍କର ସଂଭ୍ରାନ୍ତ ପଣିଆ ଥିଲା ।

ଟୋଲେମୀଙ୍କ ଐତିହାସିକ ତଥ୍ୟ ପ୍ରମାଣ କରେ ଯେ ଦୀର୍ଘ ଦେଢ଼ ହଜାର ବର୍ଷ କାଳ କଳିଙ୍ଗ ନୌବାଣିଜ୍ୟ ଜଗତ ବିଖ୍ୟାତ ଥିଲା (ଖ୍ରୀ:ପୂ: ୬୦୦ଠାରୁ ଖ୍ରୀଷ୍ଟାବ୍ଦ ୯୦୦) ।

ମଗଧ ସମ୍ରାଟ ଅଶୋକ କଳିଙ୍ଗର ଏହି ସାମୁଦ୍ରିକ ବାଣିଜ୍ୟରେ ଉନ୍ନତିକୁ ସହ୍ୟ କରି ନପାରି ଯୁଦ୍ଧ ଯାତ୍ରା କରି କଳିଙ୍ଗକୁ ଛିନ୍ନଭିନ୍ନ କରିଦେଇଥିଲେ, କାରଣ ସେତେବେଳେ ଭାରତବର୍ଷ ମଧ୍ୟରେ କଳିଙ୍ଗ ଥିଲା ଅପରାଜେୟ ଶକ୍ତି । ସେଥିପାଇଁ ବଙ୍ଗୋପସାଗରର ପୂର୍ବର ନାଁ ଥିଲା କଳିଙ୍ଗ ସାଗର । ମହାକବି କାଳିଦାସ ପ୍ରସିଦ୍ଧ କାବ୍ୟ ରଘୁବଂଶରେ (ଷଷ୍ଠସର୍ଗ) କଳିଙ୍ଗରାଜାଙ୍କୁ 'ମହୋଦଧି ପତି' ଭାବରେ ଉଲ୍ଲେଖ କରିଛନ୍ତି । ଶ୍ରୀମନ୍ଦିର, କୋଣାର୍କ, ଭୁବନେଶ୍ୱର, ବ୍ରହ୍ମେଶ୍ୱର ପ୍ରଭୃତି ଅନେକ ମନ୍ଦିରରେ ଉତ୍କଳ ନୌବାଣିଜ୍ୟର ବଳିଷ୍ଠ ପରମ୍ପରା ଖୋଦିତ ହୋଇ ରହିଛି ।

ଜାହାଜର ବ୍ୟବହାର କରୁଥିବା ଉନ୍ନତ ଓଡ଼ିଆ ଜାତି ବା ଉତ୍କଳୀୟଗଣ ମଧ୍ୟ ଜାହାଜ ତିଆରି କରିବାରେ ଦକ୍ଷ ଥିଲେ । 'ଅର୍ଣ୍ଣବ ବିହାର' ଗ୍ରନ୍ଥରେ ପଣ୍ଡିତ ନୃସିଂହ ରାୟଗୁରୁ ଓ 'ପାଇକଖେଦା'ରେ କହ୍ଣେଇ ଚଂପତ୍ତି ପ୍ରାଚୀନ ଉତ୍କଳର ନୌବାଣିଜ୍ୟ ଅର୍ଣ୍ଣବପୋତ ନିର୍ମାଣ ସଂପର୍କରେ ବର୍ଣ୍ଣନା କରିଛନ୍ତି ।

ଜାହାଜର ବିଭାଗୀକରଣ ଯଥା- ନନ୍ଦିଆ, ଲାଞ୍ଜୁଆ, ଖାଇଜଗା, ଚୋଟମୁଖୀ, ରାଜପୁର, ସୁରଚାତୁରୀ, ଗଙ୍ଗପ୍ରସାଦ, ଗଣ୍ଡିଆ, ଖଡ୍ଗୁପ ଇତ୍ୟାଦି ପାଇକଖେଦାରେ ବର୍ଣ୍ଣିତ ହୋଇଛି । ଚିଲିକା ହ୍ରଦ ଏକ ବିଶାଳ ନୌବହର ଥିଲା । ଇଂରେଜମାନଙ୍କ ଆଗମନ କାଳରେ ବାଲେଶ୍ୱରରେ ଜାହାଜ ନିର୍ମାଣ ହେଉଥିଲା ।

କଳିଙ୍ଗର ସାଧବପୁଅମାନେ ବଣିଜ କରିବାକୁ ଯାଇ ଦୂରଦେଶରେ ମଧ୍ୟ ସେମାନଙ୍କର ଉପନିବେଶ ସ୍ଥାପନ କରିଥିଲେ । ତା'ର ପ୍ରମାଣ ସ୍ୱରୂପ ଜାଭା, ବୋର୍ଣ୍ଣିଓ, ଇଣ୍ଡୋନେସିଆ, ଚୀନରେ ମଧ୍ୟ ଉତ୍କଳ ସଂସ୍କୃତିର ପ୍ରଭାବ ଏବେ ମଧ୍ୟ ସଜୀବ ରହିଥିବ । ବାଲିଦ୍ୱୀପକୁ ଯାତ୍ରା ପାଇଁ ଅତୀତର ସ୍ମୃତି ଶୁଭ ଓ ସମୃଦ୍ଧି ଉତ୍ସବ ବାଲିଯାତ୍ରା ପୂର୍ବ ଐତିହ୍ୟକୁ ସ୍ମରଣ କରାଇଦିଏ ।

'ଆଶ୍ରମ'
ଶ୍ରୀବିହାର କଲୋନୀ, କଟକ-୮

---

## ନଭେମ୍ବର ମାସ ନିମନ୍ତେ ୩୦ଟି ଜିଲ୍ଲାକୁ ୧୬,୧୫୮ ମେଟ୍ରିକ୍ ଟନ୍ ଏ.ପି.ଏଲ୍. ଗହମ ଯୋଗାଣ

ଚଳିତ ନଭେମ୍ବର ମାସ ପାଇଁ ସରକାର ରାଜ୍ୟର ୩୦ଟି ଜିଲ୍ଲାରେ ଦାରିଦ୍ର୍ୟ ସୀମାରେଖା ଉପରେ ଥିବା ପରିବାରମାନଙ୍କୁ ଆବଣ୍ଟନ ନିମନ୍ତେ ସମୁଦାୟ ୧୬,୧୫୮ ମେଟ୍ରିକ୍ ଟନ୍ ଗହମ ଯୋଗାଇ ଦେଇଛନ୍ତି । ଫଳରେ ପ୍ରତ୍ୟେକ ଏ.ପି.ଏଲ୍. କାର୍ଡ଼ଧାରୀ ପରିବାର ସରକାରୀ ଧାର୍ଯ୍ୟ ମୂଲ୍ୟରେ ମାସକୁ କାର୍ଡ଼ ପିଛା ୯ କେ.ଜି. ୪୫୫ ଗ୍ରାମ ଲେଖାଏଁ ଗହମ ପାଇ ପାରିବେ ବୋଲି ରାଜ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ ବିଭାଗ ସୂତ୍ରରୁ ଜଣାପଡ଼ିଛି । ଚଳିତ ମାସ ନିମନ୍ତେ କେଉଁ ଜିଲ୍ଲାକୁ କେତେ ପରିମାଣର ଗହମ ଯୋଗାଇ ଦିଆଯାଇଛି, ତାହା ନିମ୍ନରେ ପ୍ରଦତ୍ତ ହେଲା -

ଅନୁଗୁଳ ଜିଲ୍ଲାକୁ ୩୪୫ ମେ.ଟନ୍, ବାଲେଶ୍ୱର ଜିଲ୍ଲାକୁ ୬୫୦ ମେ. ଟନ୍, ବରଗଡ଼ ଜିଲ୍ଲାକୁ ୬୦ ମେ. ଟନ୍, ଭଦ୍ରକ ଜିଲ୍ଲାକୁ ୬୩୦ ମେ. ଟନ୍, ବଲାଙ୍ଗୀର ଜିଲ୍ଲାକୁ ୧୦୦ ମେ. ଟନ୍, ବୌଦ୍ଧ ଜିଲ୍ଲାକୁ ୧୦ ମେ. ଟନ୍, କଟକ ଜିଲ୍ଲାକୁ ୨୫୦୦ ମେ. ଟନ୍, ଦେଓଗଡ଼ ଜିଲ୍ଲାକୁ ୧୫ ମେ. ଟନ୍, ଢେଙ୍କାନାଳ ଜିଲ୍ଲାକୁ ୩୫୫ ମେ. ଟନ୍, ଗଜପତି ଜିଲ୍ଲାକୁ ୯୦ ମେ. ଟନ୍, ଗଂଜାମ ଜିଲ୍ଲାକୁ ୧୩୩୦ ମେ. ଟନ୍, ଜଗତସିଂହପୁର ଜିଲ୍ଲାକୁ ୮୦୦ ମେ. ଟନ୍, ଯାଜପୁର ଜିଲ୍ଲାକୁ ୧୧୦୦ ମେ. ଟନ୍, ଝାରସୁଗୁଡ଼ା ଜିଲ୍ଲାକୁ ୪୩୩ ମେ. ଟନ୍, କଳାହାଣ୍ଡି ଜିଲ୍ଲାକୁ ୫୦ ମେ. ଟନ୍, କନ୍ଧମାଳ ଜିଲ୍ଲାକୁ ୩୦ ମେ. ଟନ୍, କେନ୍ଦ୍ରାପଡ଼ା ଜିଲ୍ଲାକୁ ୧୫୦୦ ମେ. ଟନ୍, କେଉଁଝର ଜିଲ୍ଲାକୁ ୪୦୦ ମେ. ଟନ୍, ଖୋର୍ଦ୍ଧା ଜିଲ୍ଲାକୁ ୧୫୨୦ ମେ. ଟନ୍, କୋରାପୁଟ ଜିଲ୍ଲାକୁ ୨୦୦ ମେ. ଟନ୍, ମାଲକାନଗିରି ଜିଲ୍ଲାକୁ ୫୦ ମେ. ଟନ୍, ନବରଂଗପୁର ଜିଲ୍ଲାକୁ ୨୫ ମେ. ଟନ୍, ମୟୂରଭଂଜ ଜିଲ୍ଲାକୁ ୩୯୦ ମେ. ଟନ୍, ନୟାଗଡ଼ ଜିଲ୍ଲାକୁ ୭୦୦ ମେ. ଟନ୍, ନୂଆପଡ଼ା ଜିଲ୍ଲାକୁ ୨୫ ମେ. ଟନ୍, ପୁରୀ ଜିଲ୍ଲାକୁ ୧୨୦୦ ମେ. ଟନ୍, ରାୟଗଡ଼ା ଜିଲ୍ଲାକୁ ୨୫ ମେ. ଟନ୍, ସମ୍ବଲପୁର ଜିଲ୍ଲାକୁ ୬୨୫ ମେ. ଟନ୍, ସୋନପୁର ଜିଲ୍ଲାକୁ ୫୦ ମେ. ଟନ୍, ସୁନ୍ଦରଗଡ଼ ଜିଲ୍ଲାକୁ ୯୫୦ ମେ. ଟନ୍ ।

# କଳିଙ୍ଗର ନୌବାଣିଜ୍ୟ

ବୈକୁଣ୍ଠନାଥ ପ୍ରଧାନ

**ଖ୍ରୀ:**ପୂ: ଷଷ୍ଠ ଶତାବ୍ଦୀରେ ଭାରତର ପୂର୍ବ ଉପଖଣ୍ଡର ବଙ୍ଗୋପସାଗର କୂଳରେ ଏକ ସମୃଦ୍ଧ ଜନପଦର ଅଭ୍ୟୁଦୟ ହୋଇଥିଲା । ତା'ର ନାଁ ହେଉଛି କଳିଙ୍ଗ । ଗ୍ରୀକ୍ ଭୌଗଳିକ ଟୋଲେମୀଙ୍କର ଖ୍ରୀ:ପୂ: ଦ୍ୱିତୀୟ ଶତାବ୍ଦୀରେ ପ୍ରଣିତ ଶାସ୍ତ୍ରରୁ ଜଣାଯାଏ ଯେ କଳିଙ୍ଗରେ ସେତେବେଳେ ଏକ ବିସ୍ତୃତ ବେଳାଭୂମି ଥିଲା ଏବଂ ସେଠାରେ ଏକ ସମୃଦ୍ଧ ନୌବାଣିଜ୍ୟ ପ୍ରସାରଲାଭ କରିଥିଲା । କାଳକ୍ରମେ ଏହି କଳିଙ୍ଗର ପରିସୀମା ଉତ୍ତରରେ ଗଙ୍ଗାନଦୀଠାରୁ ଦକ୍ଷିଣରେ ଗୋଦାବରୀ ନଦୀ ଉପତ୍ୟକା ଓ ପୂର୍ବରେ ବଙ୍ଗୋପସାଗରଠାରୁ ପଶ୍ଚିମରେ ଅମରକଣ୍ଟକ ପର୍ବତମାଳା ପର୍ଯ୍ୟନ୍ତ ବିସ୍ତୃତିଲାଭ କରିଥିଲା । ରାଜା ବଳିଙ୍କର ପାଞ୍ଚ ପୁତ୍ର ଥିଲେ ଏବଂ କଳିଙ୍ଗ ତାଙ୍କର ଜଣେ ପୁତ୍ରଙ୍କ ନାମ ଥିଲା । ଏହି କଳିଙ୍ଗଙ୍କ ନାମାନୁସାରେ ପ୍ରାଚୀନ କଳିଙ୍ଗର ନାମକରଣ କରାଯାଇଛି ବୋଲି ପୁରାଣରୁ ଜଣାଯାଇଥାଏ । ପୁନଶ୍ଚ, ପ୍ରାଚୀନ କଳିଙ୍ଗର ଅଧିବାସୀଙ୍କ ନାମାନୁସାରେ ଏ ରାଜ୍ୟର ନାମ କଳିଙ୍ଗ ହୋଇଛି ବୋଲି ଅନ୍ୟ କେତେକ ମତାମତ ଦେଇଥାନ୍ତି । କଳିଙ୍ଗବାସୀଙ୍କର ପ୍ରଧାନ ପେଷା କୃଷି ହୋଇଥିବା ଦୃଷ୍ଟେ ସେମାନଙ୍କୁ 'କାଳିଙ୍ଗା' ବୋଲି କୁହାଯାଉଥିଲା । ଅନ୍ୟ କେତେକଙ୍କ ମତରେ ଏହି କାଳିଙ୍ଗା ଶବ୍ଦରୁ କଳିଙ୍ଗର ନାମକରଣ ହୋଇଛି ବୋଲି ଜଣାପଡ଼େ ।

ଏକଦା ପ୍ରାଚୀନ କଳିଙ୍ଗର ସୁଦୀର୍ଘ ସାମୁଦ୍ରିକ ବେଳାଭୂମିରେ ଶହ ଶହ ପୋତାଶ୍ରୟ ଏବଂ ବନ୍ଦର ଥିଲା । ଏହି ରାଜ୍ୟର ସୁଦୀର୍ଘ ସମୁଦ୍ର ଉପକୂଳ ଥିବାରୁ ଏହାର ଅଧିବାସୀମାନେ ନୌବାଣିଜ୍ୟରେ ବିଶେଷ ପାରଦର୍ଶିତା ଦେଖାଇ ପାରିଥିଲେ । ନୌବାଣିଜ୍ୟ ମାଧ୍ୟମରେ କଳିଙ୍ଗର ସାଧବପୁଅମାନେ ସମୁଦ୍ର ଉପରେ ଆଧିପତ୍ୟ ଜାହିର କରିପାରିଥିଲେ । ସମୁଦ୍ର ଆରପାଖରେ ଥିବା ବିଭିନ୍ନ ରାଷ୍ଟ୍ରମାନଙ୍କରେ ବେପାର ବଣିଜ କରି ସେମାନେ ସେଠାରେ ବସତି ସ୍ଥାପନ କରିଥିଲେ । ବୋଧହୁଏ ସେଥିପାଇଁ କାଳିଦାସ ତାଙ୍କ ରଘୁବଂଶ କାବ୍ୟରେ କଳିଙ୍ଗ ରାଜାଙ୍କୁ 'ମହୋଦଧିପତି' ରୂପେ ବର୍ଣ୍ଣନା କରିଛନ୍ତି । ବହୁଦିନଧରି କଳିଙ୍ଗ ବୌଦ୍ଧ ଧର୍ମର ଏକ ପୀଠସ୍ଥଳ ଥିଲା ଏବଂ ଏହିଠାରୁ ବୌଦ୍ଧଭିକ୍ଷୁ ଓ ଶ୍ରମଣମାନେ ଜଳପଥରେ ଯାଇ ଚୀନ୍, ବ୍ରହ୍ମଦେଶ, ସିଂହଳ ପ୍ରଭୃତିରେ ବୌଦ୍ଧଧର୍ମ ପ୍ରଚାର କରିଥିଲେ । ପ୍ରାଚୀନ ବୌଦ୍ଧଶାସ୍ତ୍ରମାନଙ୍କରେ



ବର୍ତ୍ତମାନର ବଙ୍ଗୋପସାଗରକୁ କଳିଙ୍ଗ ସାଗର ନାମରେ ବର୍ଣ୍ଣନା କରାଯାଇଥିବାର ଜଣାପଡ଼େ ।

ବିଶିଷ୍ଟ ଐତିହାସିକ ହଣ୍ଟରଙ୍କ 'ଓଡ଼ିଶା ଇତିହାସ' ପୁସ୍ତକର ପ୍ରଥମ ଖଣ୍ଡରୁ ଜଣାପଡ଼େ ଯେ ଓଡ଼ିଶାରେ ସୁବର୍ଣ୍ଣରେଖା, ଛନୁଆ, ବାଲେଶ୍ୱର, ଲଇଛଣପୁର, ଚୂଡ଼ାମଣି, ଧାମରା, ଫଲ୍ସପଏଣ୍ଟ, ପୁରୀ ଓ ଗୋପାଳପୁର ନାମରେ ନଅଗୋଟି ବନ୍ଦର କାର୍ଯ୍ୟକାରୀ ହେଉଥିଲା । ଗ୍ରୀକ୍ ଭୌଗଳିକ ଟୋଲେମୀ ପ୍ରଥମ ଶତାବ୍ଦୀରେ କଳିଙ୍ଗର କେତେଗୁଡ଼ିଏ ସମୃଦ୍ଧଶାଳୀ ନଗର, ବନ୍ଦର ଓ ନଦୀ ବିଷୟରେ ବର୍ଣ୍ଣନା କରିଛନ୍ତି । ତାଙ୍କ ବର୍ଣ୍ଣିତ କନର୍ଦ୍ଦମ-କଟକ, ନନୀଗେନ-ପୁରୀ, କୋଣମ୍ଭ-ବାଲେଶ୍ୱର, କୋଣଗର-କୋଣାର୍କ, ଅଦମସ-ସୁବର୍ଣ୍ଣରେଖା, ପଲରୁ-ଜଳେଶ୍ୱର, ପଲୁରା-ଗଞ୍ଜାମର ଏକ ନଗର, ଦୋସରମ-ବୈତରଣୀ ପ୍ରଭୃତି ବଡ଼ ବଡ଼ ନଦୀ ଓ ବନ୍ଦର ନଗରମାନ ପ୍ରଥମ ଶତାବ୍ଦୀର ବହୁ ପୂର୍ବରୁ ବାଣିଜ୍ୟ କେନ୍ଦ୍ର ଭାବରେ ପ୍ରସିଦ୍ଧିଲାଭ କରିଥିଲା । ପ୍ରାଚୀନ ଚେଲିତାଲୋ ଓ ଚରିତ୍ରପୁର ବନ୍ଦର ବାଲେଶ୍ୱରର ଚାନ୍ଦବାଲି ଓ ଚାନ୍ଦିପୁର ବୋଲି ଅନୁମାନ କରାଯାଏ । ପ୍ରଥମ ଶତାବ୍ଦୀରେ ପ୍ଲିନି ତାଙ୍କ 'ନେଚୁରାଲ ହିଷ୍ଟ୍ରି' ବହିରେ ଲେଖିଛନ୍ତି ଯେ ଏହି ବନ୍ଦରମାନଙ୍କରୁ ସାଧବପୁଅମାନେ ସିଂହଳ, ଜାଭା, ସୁମାତ୍ରା, ବାଲି, ବୋର୍ଣ୍ଣିଓ ଓ ବର୍ମା ଇତ୍ୟାଦି ଦେଶରେ ବାଣିଜ୍ୟ କରି ଓଡ଼ିଶାର ଗୌରବକୁ ବଢ଼ାଇ ଥିଲେ । ବ୍ରହ୍ମ ଦେଶର ପେଗୁ ଅଞ୍ଚଳରେ କଳିଙ୍ଗ ଅଧିବାସୀମାନେ ଉପନିବେଶ ସ୍ଥାପନ କରିଥିଲେ ବୋଲି ଗ୍ରୀକ୍ ପରିବ୍ରାଜକ ମେଘାସ୍ଥିନିସ୍‌ଙ୍କ ବିବରଣୀରୁ ଜଣାପଡ଼େ ।

ସେତେବେଳେ କାର୍ତ୍ତିକ ପୂର୍ଣ୍ଣିମା ଦିନ ସାଧବପୁଅମାନେ ପ୍ରତ୍ୟୁଷରୁ ସ୍ନାନ କରି ବୋଇତରେ ଗଙ୍ଗାମାତାଙ୍କୁ ପାନ ଏବଂ ଗୁଆ ସମର୍ପଣ ପୂର୍ବକ ପୂଜା କରୁଥିଲେ । ସେଦିନର ବୋଇତ ମହାଆଡ଼ମ୍ବରରେ ବନ୍ଧୁବାନ୍ଧବ, ମାଝି ସୌଦାଗରଙ୍କ ଜ୍ଞାତି ଭୋଜନ ପରେ, ମା'ମଙ୍ଗଳାଙ୍କ ପୂଜା ଅର୍ଚ୍ଚନା, ବ୍ରାହ୍ମଣ-ଜ୍ୟୋତିଷଙ୍କ ମଙ୍ଗଳାଷ୍ଟକ ପାଠ, ଲୋକମୁଖରେ ହରିବୋଲ ଓ ପୁରନାରୀମାନଙ୍କର ହୁଳହୁଳି ନାଦ ପରେ ଧୂପ ଦୀପରେ ବିଦାୟ ନେଇ ଅଖାଳ ଉଡ଼ାଇ ସମୁଦ୍ରର ନୀଳ ଜଳରେ ଭାସି ଯାଉଥିଲା । ଚାରିପାଞ୍ଚ ମାସ ପରେ ଓଲଟା ମୌସୁମୀ ବାୟୁ ବହିଲେ ସାଧବ ପୁଅମାନେ ବୋଇତକୁ ଧନରତ୍ନରେ ପୂର୍ଣ୍ଣକରି ଘରକୁ ଫେରୁଥିଲେ ।

ଷୋଡ଼ଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଶାସନ କ୍ଷେତ୍ରରେ ଅସ୍ଥିରାବସ୍ଥା, ଅତ୍ୟାଚାର, ରାଜ୍ୟ ମଧ୍ୟରେ ଜୀବନଯାତ୍ରାର ଅଚଳ ଅବସ୍ଥା, ଲୁଣ୍ଠନ, ରାହାଜାନୀ ସହିତ ସାଗର ମଧ୍ୟରେ ସାଗର ଦସ୍ୟୁମାନଙ୍କ ଆକ୍ରମଣରେ ଓଡ଼ିଆ ସାଧବର ବଣିଜ ତରୀ ପୂର୍ବବତ୍ ସାଗରର ନୀଳ ଜଳରାଶିରେ ଆଗେଇ ପାରିଲା ନାହିଁ । ଦସ୍ୟୁ ମରହଟ୍ଟାବର୍ଗୀମାନଙ୍କ ଆକ୍ରମଣ ଭୟରେ କଳିଙ୍ଗର ସାଧବପୁଅମାନେ ବୋଇତରେ ବେପାର କରିବା ପାଇଁ ଆଉ ଲାଭଦାୟକ ମନେ କଲେ ନାହିଁ । ପରବର୍ତ୍ତୀ ସମୟରେ ଇଷ୍ଟଇଣ୍ଡିଆ କମ୍ପାନୀର ବାଣିଜ୍ୟପୋତ କଳିଙ୍ଗ ସାଧବ ପୁଅମାନଙ୍କର ବାଣିଜ୍ୟିକ ଅଧିକାରକୁ ଅପହରଣ କରି ନେଲେ । ବୋଇତ ସାହାଯ୍ୟରେ ବେପାର ବଣିଜ କରିବା କଳିଙ୍ଗରୁ ଲୋପ ପାଇଲା ।

ପ୍ରାଚୀନ କଳିଙ୍ଗର ନୌବାଣିଜ୍ୟର ସ୍ମାରକୀ ବହନ କରି ଆଜି ବି ଓଡ଼ିଶାର ପୁରପଲ୍ଲୀରେ ବିଭିନ୍ନ ପ୍ରକାର ପର୍ବପର୍ବାଣି ପାଳନ କରାଯାଉଛି । କାର୍ତ୍ତିକ ପୂର୍ଣ୍ଣିମାରେ ହେଉଥିବା ବାଲିଯାତ୍ରା ଓ ବୋଇତ ବନ୍ଦାଣ, ଚୈତ୍ର ପୂର୍ଣ୍ଣମୀରେ ଘୋଡ଼ାନାଚ, ଭାଦ୍ରବ ମାସରେ ଖୁଦୁରୁକୁଣୀ ଓଷା, ଦୀପାବଳୀରେ ବୋଇତ ଝୋଟି ଇତ୍ୟାଦି ପାଳିତ ହେବା ସଂଗେସଂଗେ ପୂର୍ବ ଗୌରବ ଓ ପରମ୍ପରାକୁ ମନେ ପକାଇ ଦିଏ । ଖୁଦୁରୁକୁଣୀ ଓଷାରେ ଭଉଣୀମାନେ ଭାଇମାନଙ୍କର ଶୁଭ ମନାସି ମା'ମଙ୍ଗଳାଙ୍କୁ ପ୍ରାର୍ଥନା ଓ ପୂଜା କରିଥାନ୍ତି । ଏହା ସାଧବପୁଅମାନଙ୍କ କଥା ମନେ ପକାଇ ଦିଏ । ପ୍ରାଚୀନ କାଳର ବୋଇତ ଯାତ୍ରାର ସ୍ମୃତିକୁ ପାଳନ କରିବା ପାଇଁ ଏବେ ବି ଓଡ଼ିଶାର ଲୋକମାନେ କାର୍ତ୍ତିକ ପୂର୍ଣ୍ଣିମା ଦିନ ପ୍ରାତଃ କାଳରେ କଦଳୀ ବାହୁଙ୍ଗା କିମ୍ବା ସୋଲରେ ତିଆରି ଛୋଟ ଛୋଟ ଡଙ୍ଗା ସବୁ ନଇ, ନାଳ, ପୋଖରୀ ଓ ସମୁଦ୍ରରେ ସ୍ନାନ କରିବା ପୂର୍ବକ ସେଠାରେ ଥିବା ପାଣିରେ ଭସାନ୍ତି । ସେହି ଡଙ୍ଗାଗୁଡ଼ିକରେ ବତିସବୁ ଖୋସା ଯାଇଥାଏ ଏବଂ ପାନ ଓ ଗୁଆ ଥୁଆ ହୋଇଥାଏ । ଡଙ୍ଗା ଭସାଇଲା ବେଳେ ସେମାନେ କହନ୍ତି -

'ଆକା ମାଭୈଃ, ପାନ ଗୁଆ ଥୋଇ
ପାନ ଗୁଆ ତୋର, ମାସକଯାକ ଧର୍ମ ମୋର ।'

କଟକ ଗଡ଼ଗଡ଼ିଆଘାଟଠାରେ କାର୍ତ୍ତିକ ପୂର୍ଣ୍ଣିମାଠାରୁ ଆରମ୍ଭ ହୋଇ ସାତଦିନ ବାଲିଯାତ୍ରା ଆରମ୍ଭ ହୁଏ । ପାରାଦ୍ୱୀପ ବନ୍ଦରରେ କାର୍ତ୍ତିକ ପୂର୍ଣ୍ଣିମା ଦିନ ବୋଇତ ବନ୍ଦାଣ ଉତ୍ସବ ଅନୁଷ୍ଠିତ ହୋଇଥାଏ ।

ପ୍ରାଚୀନ କଳିଙ୍ଗର ନୌବାଣିଜ୍ୟର ସ୍ମୃତିଚାରଣ ନିମନ୍ତେ ଓଡ଼ିଶାର ବରପୁତ୍ର ବିଜୁ ପଟ୍ଟନାୟକଙ୍କ ମୁଖ୍ୟମନ୍ତ୍ରୀତ୍ୱ ସମୟରେ ଓଡ଼ିଶା ସରକାର ୧୯୯୨ ମସିହା ନଭେମ୍ବର ମାସ ୧୦ ତାରିଖ କାର୍ତ୍ତିକ ପୂର୍ଣ୍ଣିମା ଦିନ ପାରାଦ୍ୱୀପ ବନ୍ଦରରୁ ଏକ ଐତିହାସିକ ନୌଯାତ୍ରାର ଶୁଭାରମ୍ଭ କରିଥିଲେ । ଭାରତୀୟ ନୌବାହିନୀର ଜାହାଜ ଆଇ.ଏନ୍.ଏସ୍. 'ସମୁଦ୍ର' କାର୍ତ୍ତିକ ପୂର୍ଣ୍ଣିମା ଦିନ ସକାଳରୁ ବାଲିଦ୍ୱୀପ ଅଭିମୁଖେ ସାତ ଜଣ ନୌ-ଅଭିଯାତ୍ରୀଙ୍କୁ ଧାରଣ କରିବା ପୂର୍ବକ ଯାତ୍ରା ଆରମ୍ଭ କରିଥିଲା । ଏହି ଯାତ୍ରାରେ ଜଣେ ଉତ୍କଳୀୟ ସ୍ଥାନ ପାଇଥିଲେ । ପାରାଦ୍ୱୀପ ବନ୍ଦରରୁ ଏହି ଯାତ୍ରା ଆରମ୍ଭ ହୋଇ ଗୋପାଳପୁର ବନ୍ଦର ବାଟଦେଇ ଭାଇଜାଗ୍, ମାନ୍ଦ୍ରାଜ, କାମ୍ପବେଲ, ବେ-ଅଫ୍-ନିକୋବର, ଥାଇଲାଣ୍ଡ, ବେଦାଙ୍ଗ ଏବଂ ଇଣ୍ଡୋନେସିଆର ଜାକର୍ତ୍ତା ଓ ସୁରବାୟା ଆଦି ବନ୍ଦର ଦେଇ ଉକ୍ତ ଜାହାଜ ବାଲିଦ୍ୱୀପରେ ପହଞ୍ଚିଥିଲା । ୧୯୯୩ ମସିହା ଜାନୁଆରୀ ୩୧ ତାରିଖ ଦିନ ନୌ-ଅଭିଯାତ୍ରୀମାନଙ୍କୁ ସମ୍ବର୍ଦ୍ଧନା ଦେବାପୂର୍ବକ ଏକ ଉତ୍ସବ ଅନୁଷ୍ଠିତ ହୋଇଥିଲା । ତତ୍‌ସଂଗେସଂଗେ ଓଡ଼ିଶା ଉତ୍ସବ ଉଦ୍‌ଘାଟିତ ହୋଇଥିଲା । ଏହି ଉତ୍ସବ ପାଳନ ଦ୍ୱାରା ଓଡ଼ିଶାର ପୂର୍ବ ଗୌରବ ଓ ଐତିହ୍ୟକୁ ମନେ ପକାଯାଇଥିଲା ।

ଅତୀତର ଗୌରବ ପ୍ରତ୍ୟେକ ଜାତିର ପ୍ରେରଣାର ଉତ୍ସ । ପୂର୍ବ ଗୌରବର ସ୍ମୃତି ଉନ୍ନତି ପାଇଁ ଏକ ଉତ୍କୃଷ୍ଟ ସହାୟ । ଓଡ଼ିଆ ଜାତି ପୂର୍ବ ଗୌରବକୁ ଫେରାଇ ଆଣି ନୌବାଣିଜ୍ୟ ମାଧ୍ୟମରେ ଅର୍ଥନୈତିକ ସ୍ୱଚ୍ଛଳତା ଆଣିବା ପାଇଁ ବଦ୍ଧପରିକର ହେବା ଅତୀବ ଜରୁରୀ ମନେହୁଏ । ଯଥାର୍ଥରେ କବି ମାୟାଧର ମାନସିଂହ 'ବୋଇତ ବନ୍ଦାଣ' କବିତାରେ ବୋଇତକୁ ଆହ୍ୱାନ କରି ଗାଇଛନ୍ତି -

'ଜୟ ଗୋ ବୋଇତରାଣୀ ସଳିଳ-ସୁନ୍ଦରୀ
ଆମ୍ଭ ଲାଗି ଆଣଧନ କାହୁଁ ଗର୍ଭେ ଭରି
ପୂର୍ଣ୍ଣକର ଗନ୍ଧାଘର
ତୁମ୍ଭଲାଗି ପୂରି ଉଠେ ଭବନ ଆମ୍ଭର ।'

**ସହାୟକ ଗ୍ରନ୍ଥସୂଚୀ :**

୧. ବହିତ୍ର (ଧାମରା-ଚାନ୍ଦବାଲି ବନ୍ଦର ସ୍ମାରକୀ-୧୯୯୨)
୨. ଉତ୍କଳ ପ୍ରସଙ୍ଗ, ନଭେମ୍ବର-୧୯୯୩

ସା: ନାଇଦୋଳି
ପୋ: କୁମ୍ଭାରମୂଳି, ବାଲେଶ୍ୱର

# ଭଦ୍ରକାଳୀ : ପୌରାଣିକ, କିମ୍ବଦନ୍ତୀମୂଳକ, ଐତିହାସିକ ଓ ସାଂସ୍କୃତିକ ଅଧ୍ୟୟନ

ଡକ୍ଟର ସୋମା ଚାନ୍ଦ

**ସୃ**ଷ୍ଟିର ଆଦିମ ପ୍ରଭାତରୁ ନଦୀକୁ କେନ୍ଦ୍ର କରି ଗଢ଼ି ଉଠିଛି ମାନବ ସଭ୍ୟତା ଓ ସଂସ୍କୃତି । ଇତିହାସର ପୃଷ୍ଠା ଉନ୍ମୋଚନ କଲେ ନୀଳନଦୀ ସଭ୍ୟତାଠାରୁ ଆରମ୍ଭ କରି ବେବିଲୋନୀୟ ସଭ୍ୟତା, ସିନ୍ଧୁ ସଭ୍ୟତା ତଥା ଚୀନ ସଭ୍ୟତା ପର୍ଯ୍ୟନ୍ତ ଗଢ଼ି ଉଠିଥିବା ସମସ୍ତ ସଭ୍ୟତାକୁ ନଦୀ କୈନ୍ଦ୍ରିକ ସଭ୍ୟତା କହିଲେ ଅତ୍ୟୁକ୍ତି ହେବ ନାହିଁ । ସେହି ଦୃଷ୍ଟିକୋଣରୁ ମେଘାସନନନ୍ଦିନୀ ସାଳନ୍ଦୀକୁ ଭିତ୍ତିଭୂମି କରି ଗଢ଼ି ଉଠିଛି ଭଦ୍ରକ ଜିଲ୍ଲାର ସଭ୍ୟତା ଓ ସାଂସ୍କୃତିକ ଐତିହ୍ୟ । ପ୍ରଖ୍ୟାତ ଐତିହାସିକ କାର୍ଲାଇଲଙ୍କ ମତରେ - ଭୂଗୋଳ ହେଉଛି ଇତିହାସର ଚକ୍ଷୁ । ଯଥାର୍ଥରେ ସ୍ଥାନର ଭୌଗଳିକ ପରିବେଶ ସେହି ସ୍ଥାନର ଇତିହାସ ଗଠନରେ ସହାୟକ ହୋଇଥାଏ । 'ସାଳନ୍ଦୀର ଦାନ' ଭଦ୍ରକର ଐତିହ୍ୟ ଓ ସଂସ୍କୃତି ବିଷୟରେ ଚିନ୍ତାକଲେ ଏହି କଥାଟି ବେଶ ପ୍ରାଞ୍ଜଳ ଭାବରେ ବୁଝି ହୁଏ । ସାଳନ୍ଦୀ ବିଧୌତ ଏଇ ଭଦ୍ରକ ଭୂମିର ଗୌରବୋଜ୍ଜ୍ୱଳ ଐତିହ୍ୟ ସବୁ ଯୁଗରେ ଓଡ଼ିଶାର ଜନଜୀବନକୁ ସମୃଦ୍ଧ ଓ ରୁଦ୍ଧିମନ୍ତ କରିଆସିଛି । ଏହି ପୃଷ୍ଠଭୂମିରେ ଭଦ୍ରକର ସାଂସ୍କୃତିକ ଐତିହ୍ୟ କଥା ଚିନ୍ତା କଲେ ଯାହାଙ୍କ ନାମ ପ୍ରଥମେ ମନ ମଧ୍ୟକୁ ଆସେ, ସେ ହେଲେ ମହାକାଳୀ - ମେଘାସନରୁ ଭଦ୍ରକାଳୀ - ଭଦ୍ରକ ଜିଲ୍ଲାର ଅଧିଷ୍ଠାତ୍ରୀ ଦେବୀ : ମହାମାୟା ଭଦ୍ରକାଳୀ । ପ୍ରାଚୀନ କାଳରୁ ଅଦ୍ୟାବଧି ଏକ ପ୍ରଧାନ ଶକ୍ତିପୀଠ ଭାବେ ଏହା ସାରା ଓଡ଼ିଶାରେ ବେଶ ସୁପରିଚିତ ।

ବ୍ୟାସ, ବାଲ୍ମିକୀ ତଥା ବିଭିନ୍ନ ମୁନିଋଷି ଅଧ୍ୟୁଷିତ ଏଇ ଆମର ସ୍ୱର୍ଣ୍ଣପ୍ରସୁ ପବିତ୍ର ଭାରତ ଭୂମିରେ ଯେଉଁସବୁ ଇତିହାସ ଓ ପୁରାଣ ପ୍ରସିଦ୍ଧ କ୍ଷେତ୍ରମାନ ସମନ୍ୱୟବାଦୀ ସଂସ୍କୃତିର ଜୟଗାନ କରୁଛି ତନ୍ମଧ୍ୟରୁ ଶକ୍ତିପୀଠ ଭଦ୍ରକାଳୀ ଅନ୍ୟତମ । ଯଜ୍ଞାନଳସମ୍ଭୂତା ଦୁର୍ଗା 'ଭଦ୍ରକାଳୀ' ନାମ ଧାରଣ କରି ଅଧିଷ୍ଠାତ୍ରୀ ଦେବୀ ଭାବେ ଏଇ ଭଦ୍ରକ ମାଟିକୁ ବିଶେଷ ଗୌରବାନ୍ୱିତ କରିଛନ୍ତି ।

## ପୌରାଣିକ ଅଧ୍ୟୟନ

ଅତି ପୁରାତନ ସମୟରୁ ଭାରତୀୟ ସଭ୍ୟତାରେ ଶକ୍ତିପୂଜା ଏକ ବିଶେଷ ସ୍ଥାନ ଅଧିକାର କରିଆସିଛି । ଐତିହାସିକ ପ୍ରତ୍ନତତ୍ତ୍ୱବିତ୍, ଦାର୍ଶନିକ, ବୁଦ୍ଧିଜୀବି ତଥା ଭାରତର ବିଶେଷଜ୍ଞମାନେ (Indologists) ଶକ୍ତିବାଦର ଉତ୍ପତ୍ତି ସମ୍ବନ୍ଧରେ ଅନେକ ତଥ୍ୟ



ଭଦ୍ରକାଳୀ, ଭଦ୍ରକ

ଉପସ୍ଥାପନ କରିଥିଲେ ମଧ୍ୟ ଏପର୍ଯ୍ୟନ୍ତ କୌଣସି ମତବାଦକୁ ସର୍ବପ୍ରାଧାନ୍ୟ ଦିଆଯାଇ ନାହିଁ । ଏହାର ଉତ୍ପତ୍ତି ବିଷୟରେ ଯେତେ ବାକ୍‌ବିତଣ୍ଡା ଥିଲେ ମଧ୍ୟ ଏହା ଯେ ଆମ ଧର୍ମୀୟ ଐତିହ୍ୟର ଏକ ବିଶେଷ ଅଙ୍ଗ ତାହା କିନ୍ତୁ ଅନସ୍ୱୀକାର୍ଯ୍ୟ ।

ଦେବୀସୂକ୍ତ ଅନୁସାରେ ଦେବୀ 'ଶକ୍ତି' ନିଜକୁ ବିଭିନ୍ନ ଉପାୟରେ ଉପସ୍ଥାପିତ କରିଥାଆନ୍ତି । ଯଥା- ସରସ୍ୱତୀ ବିଦ୍ୟା ଓ ଜ୍ଞାନ ମାଧ୍ୟମରେ, ଲକ୍ଷ୍ମୀ ଧନ ମାଧ୍ୟମରେ, ଦୁର୍ଗା ମାନବହିତ ମାଧ୍ୟମରେ ଓ କାଳି ହିଂସା ମାଧ୍ୟମରେ ଇତ୍ୟାଦି ଇତ୍ୟାଦି ।

'ଏକୈବ ଶକ୍ତି ପରମେଶ୍ୱରସ୍ୟ
ବିବିଧା ବଦନ୍ତି ବ୍ୟବହାର କାଳେ,
ଭୋଗେ ଭବାନୀ ପୁରୁଷେଷୁ ଲକ୍ଷ୍ମୀ
ଶକ୍ତେ ତୁ ଦୁର୍ଗା ପ୍ରଳୟେ ତୁ କାଳୀ ।'

ପ୍ରାକ୍‌ବୈଦିକ ଯୁଗରୁ 'ଶକ୍ତିତତ୍ତ୍ୱ'ର ଆବିର୍ଭାବ ହୋଇଥିଲେ ମଧ୍ୟ ପରବର୍ତ୍ତୀ କାଳରେ ବେଦ, ଉପନିଷଦ, ପୁରାଣ, ଉପପୁରାଣ,

ମହାକାବ୍ୟ ଇତ୍ୟାଦିରେ 'ଶକ୍ତି'ଙ୍କୁ ବିଶ୍ୱମାତା ହିସାବରେ ଗ୍ରହଣ କରାଯାଇ ସର୍ବପ୍ରାଧାନ୍ୟ ଦିଆଯାଇଛି ।

ଧର୍ମର କାଳ ବିବର୍ତ୍ତନରେ ପ୍ରକୃତି ପୂଜା, ଜୀବଜନ୍ତୁ ପୂଜା ସହିତ ସରଳ ଜୀବନଯାପନର ମହତ ଚିନ୍ତାଧାରାରୁ ମୂର୍ତ୍ତିପୂଜା କ୍ରମଶଃ ପ୍ରାଧାନ୍ୟ ବିସ୍ତାର କରିବାକୁ ଲାଗିଲା । ବୌଦ୍ଧ, ଜୈନ ଓ ହିନ୍ଦୁ ସମସ୍ତଙ୍କ ଭିତରେ ମୂର୍ତ୍ତି ପୂଜାର ପ୍ରବଣତା ଦେଖାଗଲା । ମୂର୍ତ୍ତି ଉପାସନା ଆରମ୍ଭ ହେବା ଦ୍ୱାରା ମନୁଷ୍ୟ ବିଭିନ୍ନ ଉପାଦାନରେ ମୂର୍ତ୍ତି ନିର୍ମାଣ ଆରମ୍ଭ କଲା । ପ୍ରଥମେ କାଷ୍ଠ, ପରେ ପାଷାଣ ତଥା ବିଭିନ୍ନ ଧାତୁର ମୂର୍ତ୍ତି ଉପାସନା ମଣିଷର ଚିନ୍ତାଧାରାକୁ ଆପ୍ଳୁତ କରି ରଖିଲା । କାଷ୍ଠ ରୂପରେ ହିନ୍ଦୁ ଜଗନ୍ନାଥ ମହାପ୍ରଭୁଙ୍କ ପୂଜା କରେ ଓ ସେ ଦାରୁବ୍ରହ୍ମ ନାମରେ ପରିଚିତ । ପାଷାଣ ବିଗ୍ରହ ମଣିବିଗ୍ରହ ନାମରେ ନାମିତ । ରାମାୟଣ ଯୁଗରେ ଅହଲ୍ୟାଙ୍କ ପାଷାଣୀ ମୂର୍ତ୍ତି ଆଖ୍ୟାଟି ପାଷାଣ ମୂର୍ତ୍ତିର ଧାରା ବହନ କରେ, ପରବର୍ତ୍ତୀ କାଳରେ ଧାତୁ ନିର୍ମିତ ମୂର୍ତ୍ତି ଉପାସନା ଜନପ୍ରିୟତା ଲାଭ କରିଥିଲା ।

ପ୍ରାଚୀନ ପୁରାଣ ଓ ତନ୍ତ୍ରଶାସ୍ତ୍ରରୁ ସ୍ପଷ୍ଟ ଆଭାସ ମିଳେ ଯେ ଖ୍ରୀଷ୍ଟିୟ ତୃତୀୟ ଓ ଚତୁର୍ଥ ଶତାବ୍ଦୀରୁ ଦ୍ୱାଦଶ ଶତାବ୍ଦୀ ମଧ୍ୟରେ ଭାରତରେ ବହୁ ଶକ୍ତିପୀଠ ପ୍ରସିଦ୍ଧି ଲାଭ କରିଥିଲା । ତାନ୍ତ୍ରିକ ମନ୍ତ୍ରରେ ଭାରତର ଯେଉଁସବୁ ପୀଠର ବର୍ଣ୍ଣନା କରାଯାଇଛି, ତାହା ଭିତରୁ ଓଡ଼ିଶା ଅନ୍ୟତମ -

'ଓଡ୍ରାଖଂ ପ୍ରଥମ ପୀଠ
ଦ୍ୱିତୀୟ ଦାଲ ଶତକମ୍,
ତୃତୀୟ ପୂର୍ଣ୍ଣପୀଠସ୍ତୁ
କାମରୂପଂ ଚତୁର୍ଥକମ୍ ।'

ଐତିହାସିକ ଡକ୍ଟର ହରେକୃଷ୍ଣ ମହତାବଙ୍କ ମତରେ ଓଡ୍ରାଖ, ଶ୍ରୀହଟ୍ଟ, ପୂର୍ଣ୍ଣକୋଟି ଓ କାମାକ୍ଷୀ ବୋଲି ଭାରତର ଯେଉଁ ଚାରିଗୋଟି ତନ୍ତ୍ରପୀଠ ଅଛି ତନ୍ତ୍ରଧରୁ ଓଡ୍ରାଖି ବା ଓଡ୍ୟାଂଶ ବା ଓଡ଼ିଶା ହେଉଛି ପ୍ରଥମପୀଠ । ଓଡ଼ିଶାର ଦେବୀପୀଠମାନଙ୍କ ମଧ୍ୟରେ ଝଙ୍କଡ଼ର ଶାରଳାପୀଠ, କଟକର କଟକ ଚଣ୍ଡୀ, ବାଣପୁରର ଭଗବତୀ, ଖିଚିଂର କୀଚକେଶ୍ୱରୀ, ବାଙ୍କୀର ଚର୍ଚ୍ଚିକା, କାକଟପୁରର ମଙ୍ଗଳା, ପୁରୀର ବିମଳା, ଯାଜପୁରର ବିରଜା, ସମ୍ବଲପୁରର ସମଲେଶ୍ୱରୀ ଓ ଭଦ୍ରକର ଭଦ୍ରକାଳୀ ଅନ୍ୟତମ । ଏହି ପୀଠଗୁଡ଼ିକର ମୂର୍ତ୍ତିସବୁ ପାଷାଣ ନିର୍ମିତ । ଏମାନେ ସମସ୍ତେ ଏକ ଓ ଅଭିନ୍ନ ଓ ଏହି ଦେବୀମାନେ ମହାକାଳ ଶିବଙ୍କର ଶକ୍ତି ।

ମହାମାୟା ଭଦ୍ରକାଳୀଙ୍କ ମୂର୍ତ୍ତି କଳା ମୁଗୁନି ପଥରରେ ନିର୍ମିତ । ଉଚ୍ଚତା ପ୍ରାୟ ଚାରିଫୁଟ । ଦେବୀ ସିଂହବାହିନୀ ଓ ଚତୁର୍ଭୁଜା, ଉପର ଦକ୍ଷିଣ ହସ୍ତରେ ଖଡଗ୍ ଓ ବାମହସ୍ତରେ ଖର୍ପର । ନିମ୍ନ ଦକ୍ଷିଣଭୁଜରେ ଶିଶୁ ସନ୍ତାନ (ଯାହାକୁ ଭକ୍ତମାନେ ଶ୍ରୀକୃଷ୍ଣ ବା ବାଲଗୋପାଳ ବୋଲି ବର୍ଣ୍ଣନା କରନ୍ତି) ଓ ବାମଭୁଜରେ ଜପମାଳା । ଦେବୀଙ୍କର ହସ୍ତ, ପାଦ ବାହୁ, କଣ୍ଠ, ନାସା, କର୍ଣ୍ଣ ଓ ମସ୍ତକ ପ୍ରସ୍ତର ଖୋଦିତ ପର୍ଣ୍ଣ ଭୂଷଣରେ ଆଭୂଷିତା । ଦେବୀଙ୍କ ଦୁଇ ପାର୍ଶ୍ୱରେ ଜୟା ଓ ବିଜୟାଙ୍କ ମୂର୍ତ୍ତି । ତାଙ୍କ ନିକଟରେ ପଞ୍ଚ ଦେବତା ଅର୍ଥାତ୍ ଗଣେଶ, ଭାସ୍କର, ବିଷ୍ଣୁ, ଶିବ ଓ ଦୁର୍ଗା ମଧ୍ୟ ଅବସ୍ଥାନ କରିଛନ୍ତି । ପ୍ରତିମା ଶାସ୍ତ୍ରୀୟ ବର୍ଣ୍ଣନାର ସଠିକ୍ ଅନୁରୂପ -

'ଶ୍ରୀକାଳୀ ଭଦ୍ରକାଳୀ ଦାନବଦଳିନୀ କେଶରୀ ପୃଷ୍ଠ ସଂସ୍ଥା
ଶ୍ରୀକୃଷ୍ଣାଙ୍କା ଶାନ୍ତରୂପା ନିଖିଳ ଭୟହରା ନୀରଦାଭା ତ୍ରିନେତ୍ରା
ବକ୍ଷୋର୍ଦ୍ଧେ ଖଡଗ୍ ବାମେଚ ଖର୍ପରଧରା ଅଭୟା ଭକ୍ତବତ୍ସଳା
ବୈଷ୍ଣବୀ ବିଷ୍ଣୁ ମାୟା ଭବତୁ ବରଦା ପାତୁ ମାଂ ଭଦ୍ରକାଳୀ ।'

ଶ୍ରୀମନ୍ଦିରର ଉପରିଭାଗରେ ଯେଉଁ ବନଦୁର୍ଗାଙ୍କର ମୂର୍ତ୍ତି ରହିଛି ସେଠାରେ ବନଦୁର୍ଗାଙ୍କ ପାଦରୁ ଶ୍ରୀକୃଷ୍ଣ ନିଜେ କଣ୍ଟା ବାହାର କରୁଛନ୍ତି । ଖିଚିଂରେ ଏକ ଚତୁର୍ଭୁଜା ବୈଷ୍ଣବୀ ମୂର୍ତ୍ତି ପୂଜା ପାଇଥାନ୍ତି । ଭଦ୍ରକାଳୀଙ୍କର ଉପର ଦୁଇ ହସ୍ତରେ ଶଙ୍ଖ ଓ ଚକ୍ର । ନିମ୍ନ ବାମ ହସ୍ତରେ ଅଭୟମୁଦ୍ରା ଓ ଡାହାଣ ହସ୍ତରେ ଏକ ଶିଶୁ ସନ୍ତାନ, ଯାହାକୁ କୃଷ୍ଣଙ୍କର ବାଲଗୋପାଲ ରୂପେ ଗ୍ରହଣ କରାଯାଇଥାଏ । ଏଥିପାଇଁ ଭଦ୍ରକର ଭଦ୍ରକାଳୀ ମୂର୍ତ୍ତିଙ୍କୁ ମଧ୍ୟ ଦୁର୍ଗାଙ୍କର ଶାନ୍ତ ବୈଷ୍ଣବୀ ରୂପ ହିସାବରେ ଆରାଧନା କରାଯାଏ । ତାଙ୍କୁ ଜୀବଜଗତର ପାଳନକର୍ତ୍ତୀ ରୂପେ ପୂଜା କରାଯାଏ । ସେ ଶାନ୍ତରୂପା ଓ ସୌମ୍ୟା ମୂର୍ତ୍ତିରେ ଜଗତପାଳନ କରନ୍ତି । ଏହାର ପ୍ରାମାଣିକ ତଥ୍ୟ ଭଦ୍ରକାଳୀଙ୍କ ପ୍ରସ୍ତର ବିଗ୍ରହରେ ହିଁ ଆଧାରିତ ଓ ପର୍ଯ୍ୟବସିତ ।

ଜୀବନର ସମସ୍ତ ପ୍ରକାର ସୁସମୟ ବା ଶୁଭ ସମୟ ମଧ୍ୟରୁ ନୂତନ ସୃଷ୍ଟିର ସମୟ ହିଁ ସର୍ବୋତ୍କୃଷ୍ଟ ଉଦ୍ଦୀପନାମୟ ଓ ଆବେଗମୟ । ମା' ଭଦ୍ରକାଳୀଙ୍କ ହସ୍ତର ଶିଶୁ ସନ୍ତାନଟି ଯେ ନୂତନ ସୃଷ୍ଟି ବା ଶୁଭମୟ ପ୍ରବାହର ଏକ ନିଖୁଣ ପ୍ରତିବିମ୍ବ ଏଥିରେ ଦ୍ୱିରୁକ୍ତି ନାହିଁ । ପାରିବାରିକ ଓ ସାମାଜିକ ଜୀବନରେ ନବ ଆବିର୍ଭାବ ଯେପରି ଶୁଭତ୍ୱର ପରିଚାୟକ ମହାମାୟା ଭଦ୍ରକାଳୀଙ୍କ ବିଗ୍ରହରେ ଏଇ ଶିଶୁ ସନ୍ତାନଟି ସେହିପରି ସଂସାରର ସାଙ୍କେତିକ ମଙ୍ଗଳର ପରିଚୟ ମାତ୍ର ।

ମା' ଭଦ୍ରକାଳୀ ପ୍ରାଚୀନ ପୌରାଣିକ ଦେବୀ । ଭାରତବର୍ଷର ସମସ୍ତ ତନ୍ତ୍ରଶାସ୍ତ୍ର ମହାମାୟା ଭଦ୍ରକାଳୀଙ୍କ ସ୍ତୁତିଗାନରେ ମୁଖରିତ । ଶ୍ରୀ ଶ୍ରୀ ଭଦ୍ରକାଳୀ ଆଦିମାତା ଚଣ୍ଡୀଙ୍କର ଅନ୍ୟନାମ ଓ ଦେବୀ ଦୁର୍ଗାଙ୍କର ଅଷ୍ଟୋତ୍ତର ଶତନାମ ମଧ୍ୟରୁ ଗୋଟିଏ । ସପ୍ତସତୀ ଚଣ୍ଡୀର ଏକାଦଶ ଅଧ୍ୟାୟରେ ବର୍ଣ୍ଣିତ ଅଛି -

'ଜ୍ୱାଳା କରାଳ ମୃତ୍ୟୁଗ୍ର ମହିଷାସୁର ସଦନଂ
ତ୍ରିଶୂଳ ପାତୁନୋଭୀତେ ଭଦ୍ରକାଳୀ ନମୋସ୍ତୁତେ ।'

ଦୁର୍ଗାଙ୍କର ଅଷ୍ଟୋତ୍ତର ଶତନାମ ସ୍ତୋତ୍ରରେ ମଧ୍ୟ ଭଦ୍ରକାଳୀଙ୍କ ନାମ ଦେଖିବାକୁ ମିଳେ -

'ଅଗ୍ନିଜ୍ୱାଳା, ରୌଦ୍ରମୁଖୀ, କରାଳଭିଷ୍ଟପସ୍ୱିନୀ
ନାରାୟଣୀ, ଭଦ୍ରକାଳୀ, ବିଷ୍ଣୁମାୟା ଜଳୋଦରୀ ।

ମହାଭାରତର ଗଦାପର୍ବ, ପଦ୍ମପୁରାଣ, ମାର୍କଣ୍ଡେୟ ପୁରାଣ, ସାରଳାଦାସଙ୍କ ଚଣ୍ଡୀପୁରାଣ, ବିଷ୍ଣୁପୁରାଣ, ଶ୍ରୀମଦ୍ ଭାଗବତ ଶ୍ରୀକୃଷ୍ଣଙ୍କ ତନ୍ତ୍ର ପ୍ରସଙ୍ଗ ଓ ହରିବଂଶର ଦ୍ୱିତୀୟ ଖଣ୍ଡରେ ଭଦ୍ରକାଳୀଙ୍କ ବର୍ଣ୍ଣନା ଦେଖିବାକୁ ମିଳେ । ଚଣ୍ଡୀର ଉତ୍ତର ଚରିତ ଅନ୍ତର୍ଗତ ମହାକାଳୀ ଅସୁର ନିଧନ ଚରିତରେ ଆଦ୍ୟାଶକ୍ତିଙ୍କ ଦ୍ୱାରା ଅସୁର ନିଧନ ହେବା ପରେ ଇନ୍ଦ୍ରାଦି ଦେବତାମାନେ ତାଙ୍କୁ ଭଦ୍ରକାଳୀ ବୋଲି ସମ୍ବୋଧନ କରିବାର ବର୍ଣ୍ଣନା ରହିଛି । ସେ ସର୍ବବ୍ୟାପିନୀ, ଆଦ୍ୟା, ନିତ୍ୟା, ପରମାବିଦ୍ୟା, ମହାମାୟା ଓ ପରଂବ୍ରହ୍ମରୂପିଣୀ । କାଳିକାପୁରାଣ ଓ ଯୋଗିନୀତନ୍ତ୍ରରେ ମଧ୍ୟ ଭଦ୍ରକାଳୀ ପୀଠ ମହାନ୍ ଶକ୍ତିପୀଠର ଗୌରବ ଲାଭ କରିଛି ।

'ହିନସ୍ତି ଦୈତ୍ୟ ତେଜାଂସି ସ୍ୱନେଦା ପୂର୍ଜ୍ୟଯା ଜଗଦ୍
ଯା ଘଣ୍ଟା ପାତୁନାଭିତେ ଭଦ୍ରକାଳୀ ନମସ୍ତୁତେ ।'

ଆଦ୍ୟାଶକ୍ତି ନିଜେ ପ୍ରାଣୀର ବନ୍ଧନ ଓ ମୁକ୍ତିଦାତ୍ରୀ । ଜଗତର ସର୍ବବିଧ କଲ୍ୟାଣ ପାଇଁ ସେ ଆଧିଭୌତିକ ରୂପ ଧାରଣ କରିଥାନ୍ତି । ଚଣ୍ଡୀ ବର୍ଣ୍ଣିତ ମହାକାଳୀ, ମହାଲକ୍ଷ୍ମୀ, ମହାସରସ୍ୱତୀ ଯଥାକ୍ରମେ ତମରୂପା, ରଜରୂପା ଓ ସତ୍ୱରୂପା ଅଟନ୍ତି । ଏହି ସମସ୍ତ ଗୁଣର ସମନ୍ୱୟରେ ଭଦ୍ରକାଳୀ ମୂର୍ତ୍ତି ଗଠିତ । ସେ ବ୍ରହ୍ମ ବିଦ୍ୟାସ୍ୱରୂପା, ଅବିଦ୍ୟାସ୍ୱରୂପା ଓ ବିସ୍ମୃତି ସ୍ୱରୂପା ଅଟନ୍ତି । ସେ ଜ୍ଞାନରୂପା ଓ ଅଜ୍ଞାନରୂପା । ଶ୍ରେଷ୍ଠ ଦେବଶକ୍ତି ଓ ଶ୍ରେଷ୍ଠ ଅସୁରଶକ୍ତି । ଚଣ୍ଡୀରେ ବର୍ଣ୍ଣିତ ଅଛି -

'ତଥା ସଂହୃତି ରୂପାନ୍ତେ ଜଗତୋସ୍ୟ ଜଟନ୍ମୟେ
ମହାବିଦ୍ୟା ମହାମାୟା ମହାମେଧା ମହୋସ୍ମୃତି ।
ମହା ମହୋନ ଭବତି ମହାଦେବୀ ମହାସୁରୀ,
ପ୍ରକୃତିସ୍ତଂଳ ସର୍ବସ୍ୟ ଗୁଣତ୍ରୟ ବିଭାବନୀ ।'

ସିଂହ ଦୁର୍ଗାଙ୍କର ବାହନ । ସିଂହ ସର୍ବଶକ୍ତିମାନ ଜ୍ଞାନମୟ । ତେଣୁ ବିଶ୍ୱଜ୍ଞାନମୟୀ ଦୁର୍ଗା ଓ ଆଦ୍ୟାଶକ୍ତି କାଳୀ ପ୍ରଭୃତି ଶକ୍ତିମାନଙ୍କର ବାହନ ରୂପେ ପ୍ରାଚୀନ ଋଷିମାନେ ସିଂହକୁ ଗ୍ରହଣ କରିଛନ୍ତି । ସେମାନେ ଆସୁରିକ ଶକ୍ତି କବଳିତା ଧରାଭୂମିରେ ଶାନ୍ତିର ମନ୍ଦାକିନୀ ଧାରା ବୁହାଇ ଦିଅନ୍ତି । ଆଶାପୂର୍ଣ୍ଣ ପ୍ରତିଶ୍ରୁତି ଦେଇ ସେମାନେ ଭକ୍ତମାନଙ୍କ ଇଚ୍ଛାପୂର୍ଣ୍ଣ କରିବାକୁ ସଦାପ୍ରସ୍ତୁତ ।

ଇତଥ୍ ଯଦା ଯଦା ବାଧା ଦାନବୋତ୍‌ଥା ଭବିଷ୍ୟତି
ତଦା ତଦା ବତୀର୍ଯ୍ୟାହଂ କରିଷ୍ୟମ୍ୟରି ସଂକ୍ଷଣ । (ଶ୍ରୀଚଣ୍ଡୀ)

ସେମାନଙ୍କର ପ୍ରତିଜ୍ଞା ଭକ୍ତ ପ୍ରାଣରେ ସିଞ୍ଚନ କରେ କୃତଜ୍ଞତାର ବାରି -

ଶରଣାଗତ ଦୀନାର୍ତ୍ତ ପରିତ୍ରାଣ ପରାୟଣେ,
ସର୍ବସ୍ୟାର୍ତ୍ତିହରେ ଦେବୀ ନାରାୟଣୀ ନମୋସ୍ତୁତେ । (ଶ୍ରୀଚଣ୍ଡୀ)

ଯାଜପୁର ଶକ୍ତିପୀଠରେ ବିରଜା ଦେବୀଙ୍କ ମନ୍ତ୍ର ଆରାଧନା ଓ ଭଦ୍ରକ ଶକ୍ତିପୀଠ ଭଦ୍ରକାଳୀଙ୍କ ମନ୍ତ୍ର ଆରାଧନାରେ ବହୁ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ଦୁହିଁଙ୍କର ସ୍ତୁତି ମନ୍ତ୍ର ଏକ ।

'ଓଁ ଜୟନ୍ତୀ ମଙ୍ଗଳା କାଳୀ ଭଦ୍ରକାଳୀ କପାଳିନୀ,
ଦୁର୍ଗା କ୍ଷମା ଶିବା ଧାତ୍ରୀ ସ୍ୱାହା ସ୍ୱଧା ନମୋସ୍ତୁତେ ।'

ସାରଳା ଦାସଙ୍କ ଗ୍ରନ୍ଥରେ ଚଉଷଠୀ ଯୋଗିନୀଙ୍କ ସହ ଭଦ୍ରକାଳୀ ଓ ବିରଜାଙ୍କ ନାମ ମଧ୍ୟ ଦେଖିବାକୁ ମିଳେ । ଚଣ୍ଡୀପୁରାଣ ବର୍ଣ୍ଣିତ ପଇଁଚାଳିଶ ଯୋଗିନୀଙ୍କ ନାମ ଓ ବାହନ ବର୍ଣ୍ଣନା ସମୟରେ ଆମେ ଭଦ୍ରକାଳୀଙ୍କ ଉପସ୍ଥିତି ଲକ୍ଷ୍ୟ କରୁଁ ।

ଭଇରବୀ ବିଜେ କଲେ ସମ୍ପାତି ବାହନେ
ବ୍ୟାଘ୍ରବାହନେ ଭଦ୍ରକାଳୀ ଚଳନ୍ତି ବିଦ୍ୟମାନେ ।
ଚର୍ଚ୍ଚିକା ବାହନେ ଯେ ମୃତପିଣ୍ଡେ ଗୋଟି,
ଉଗ୍ରତାରା ବିରାଜେ ବରୋହାର ପିଠି ।।'

କବିଙ୍କ ମତରେ ଜଗତର ସୃଷ୍ଟି ପ୍ରକ୍ରିୟାରେ ଶକ୍ତିଦେବୀଙ୍କର ଏକ ବିଶେଷ ଅବଦାନ ରହିଛି । ଯୋଗିନୀ ଉପାସନା ଶକ୍ତି ସଂସ୍କୃତିର ଅନ୍ୟତମ ଅଙ୍ଗ । ମହାଦେବୀ, ଉଗ୍ରଚଣ୍ଡୀ, ଭଦ୍ରକାଳୀ, ଦୁର୍ଗା, ଉଗ୍ରତାରା, କୌଶିକୀ, ଶିବଦୂତୀ ଓ ଚଣ୍ଡିକା ଏହି ଅଷ୍ଟଦେବୀଙ୍କ ମୂର୍ତ୍ତିରୁ ଚଉଷଠୀ ଯୋଗିନୀ ସମ୍ଭୂତ ହୋଇଥିଲେ । ଏମାନଙ୍କ ଉପାସନା ବ୍ୟତିରେକ ମାନବ ମୁକ୍ତି ଅସମ୍ଭବ ବୋଲି ସ୍ୱୟଂ ଶଙ୍କର ମଧ୍ୟ ସ୍ୱୀକାର କରିଛନ୍ତି ।

'ଶକ୍ତିଜ୍ଞାନୀ ବିନା ଦେବୀ ମୁକ୍ତିର୍ହାସ୍ୟାୟ କଳ୍ପତେ ।'

### କିମ୍ବଦନ୍ତୀରେ ଭଦ୍ରକାଳୀ

ଅଧୁନା ଭଦ୍ରକାଳୀ ପୀଠ ଭଦ୍ରକ ସହରର ପୂର୍ବ ଦିଗରେ ପୁରୁଣା ବଜାରସ୍ଥ ସଙ୍ଗତ ଗୁରୁଦ୍ୱାର ଛକଠାରୁ ପ୍ରାୟ ପାଞ୍ଚ କିଲୋମିଟର ଓ ଭଦ୍ରକ କଚେରୀ ଛକଠାରୁ ସାତ କିଲୋମିଟର ଦୂରରେ ଅବସ୍ଥିତ । ସ୍ଥାନଟି 'ଭଦ୍ରକାଳୀ ସାହି' ନାମରେ ପରିଚିତ । ମନ୍ଦିର ପୂର୍ବପାର୍ଶ୍ୱରେ ଯାତ୍ରାସ୍ଥଳୀ ଓ ଏକ ପୁଷ୍କରିଣୀ ବିଦ୍ୟମାନ । ପଶ୍ଚିମରେ ସ୍ୱଚ୍ଛସଲିଳା 'ଭଦ୍ରକ କାଳିନ୍ଦୀ ରୂପିଣୀ ସାଳନ୍ଦୀ' ପ୍ରବାହିତ । ଉତ୍ତର ଓ ଦକ୍ଷିଣ ଦିଗରେ ତଥା ମନ୍ଦିର ଚତୁଃପାର୍ଶ୍ୱରେ ଦେବୀ ଉପାସକମାନଙ୍କ ବାସଗୃହ । ପୁଷ୍କରିଣୀ ଚାରିପାଖେ ଓ ମନ୍ଦିରକୁ ଘେରି ନାରିକେଳ ଓ ପୁଷ୍ପବୃକ୍ଷର ଶୋଭା ଏକ ମନୋରମ ପରିବେଶ ସୃଷ୍ଟି କରିଛି, ଭଦ୍ରକାଳୀ ମନ୍ଦିର ବ୍ୟତୀତ ଏହି ପରିସର ମଧ୍ୟରେ ମହାପ୍ରଭୁ ଜଗନ୍ନାଥଙ୍କ ମନ୍ଦିର ରହିଛି । ଦେବୀଙ୍କ ସହ ଶ୍ରୀକୃଷ୍ଣଙ୍କ ଶେଷ ଅବତାର 'ଶ୍ରୀଜଗନ୍ନାଥ'ଙ୍କ ସହାବସ୍ଥାନ ଏହି କ୍ଷେତ୍ରର ସମନ୍ୱୟ ଉତ୍କର୍ଷତା ପ୍ରତିପାଦନ କରେ ।

କିନ୍ତୁ ଅନେକଙ୍କ ମତରେ ଏହା ଦେବୀଙ୍କର ଆଦ୍ୟ ପୀଠ ନୁହଁ । ଅନେକ ପ୍ରଚଳିତ କିମ୍ବଦନ୍ତୀ ମଧ୍ୟ ଉକ୍ତ ଧାରଣାକୁ ଦୃଢ଼ୀଭୂତ

କରେ । ଇତିହାସ ସଭ୍ୟତାର ପ୍ରାଣବିନ୍ଦୁ ହେଲେ କିମ୍ବଦନ୍ତୀ ତା'ର ଆତ୍ମାସ୍ୱରୂପ । ଏହା କେବଳ ମନଗଢ଼ା କଥା ନୁହଁ । ଏହାର ଅନ୍ତରାଳରେ ଲୁଚି ରହିଛି ଅନେକ ମାର୍ମିକ ଅଭିବ୍ୟକ୍ତି ଓ ଲୁକ୍କାୟିତ ଇତିହାସର ପଟ୍ଟଭୂମି । ଇତିହାସ ପରି ତଥ୍ୟଭିତ୍ତିକ ନହେଲେ ମଧ୍ୟ ଏହାର ଭୂମିକା ଯଥେଷ୍ଟ ଗୁରୁତ୍ୱପୂର୍ଣ୍ଣ ।

ଗୋଟିଏ କିମ୍ବଦନ୍ତୀ ଅନୁସାରେ ଭଦ୍ରକାଳୀଙ୍କର ଆଦିମୂର୍ତ୍ତି ଭଦ୍ରକ ସହରର ପୂର୍ବ ଦିଗରେ ଅବସ୍ଥିତ ଭୂୟାଁ ମହଲାରେ ଏକ ବହୁ କାରୁକାର୍ଯ୍ୟ ଖଚିତ ପ୍ରସ୍ତରର ସୁନ୍ଦର ମନ୍ଦିରରେ ପୂଜା ପାଉଥିଲେ । ଓଡ଼ିଶାରେ ମୁସଲମାନ ଆକ୍ରମଣର ପରିପ୍ରେକ୍ଷୀରେ ଅନେକ ହିନ୍ଦୁ ମନ୍ଦିର ଓ ଦେବାଦେବୀଙ୍କ ମୂର୍ତ୍ତି ଆକ୍ରମଣକାରୀଙ୍କ ଦ୍ୱାରା ଧ୍ୱଂସ ସ୍ତୂପରେ ପରିଣତ ହୋଇଥିଲା । ଭଦ୍ରକାଳୀଙ୍କ ଆଦିମନ୍ଦିର ମଧ୍ୟ ଉକ୍ତ ଆକ୍ରମଣ ଦ୍ୱାରା ଧୂଳିସାତ୍ ହୋଇଗଲା । ଭୂୟାଁବଂଶର ଉପାସକମାନେ ଦେବୀଙ୍କର ଶରଣାପନ୍ନ ହେବାରୁ ଦେବୀ ତାଙ୍କ ମୂର୍ତ୍ତିକୁ ସ୍ଥାନାନ୍ତରିତ କରିବା ପାଇଁ ସ୍ୱପ୍ନାଦେଶ ଦେଲେ । ସ୍ୱପ୍ନାଦିଷ୍ଟ ଭକ୍ତବୃନ୍ଦ ପୀଠସ୍ଥଳୀରୁ ଦେବୀଙ୍କୁ ଉଦ୍ଧାର କରି ପୂର୍ବାଭିମୁଖେ ନୌକାଦ୍ୱାରା ବନାକୀର୍ଣ୍ଣ ସାଳନ୍ଦୀ ତଟଦେଶରେ ପହଞ୍ଚିଲେ । ତା'ପରେ ଅଧୁନା ଭଦ୍ରକାଳୀ ନିକଟବର୍ତ୍ତୀ ସାଳନ୍ଦୀ ନଦୀଜଳରେ ଦେବୀଙ୍କୁ ବୁଡ଼ାଇ ରଖି ଲୁକ୍କାୟିତ ଭାବେ ପୂଜାର୍ଚ୍ଚନା କରୁଥିଲେ ।

ଏକଦା ନଦୀବାଲିରେ ପିଲାମାନେ ବଣଭୋଜି ଆୟୋଜନ କରି ମନ ଆନନ୍ଦରେ ମାତିଥିଲେ । ବାଳ ଆନନ୍ଦରେ ବିଭୋର ଦେବୀ ପିଲାଙ୍କ ସହ ଛଦ୍ମବେଶରେ ଆକଣ୍ଠ ଭୋଜନ କରି ତୃପ୍ତିଲାଭ କରିଥିବାରୁ ସ୍ଥାନଟି ପରବର୍ତ୍ତୀ ସମୟରେ 'ଆହାରପଦା' ନାମରେ ପରିଚିତ ଲାଭ କରିଥିଲା । ମୁସଲମାନ ଭୟ ଦୂରୀଭୂତ ହେବାପରେ ଉପାସକମାନେ ଅଧୁନା ଭଦ୍ରକାଳୀ ସାହିସ୍ଥ ପୀଠରେ କ୍ଷୁଦ୍ର ମନ୍ଦିରଟିର ନିର୍ମାଣ କରି ନଦୀଗର୍ଭରୁ ଦେବୀଙ୍କୁ ଆଣି ସେଠାରେ ସ୍ଥାପନା କରିଥିଲେ । ସେହିଦିନଠାରୁ ସାଳନ୍ଦୀ ନଦୀର ଉକ୍ତ ଅଂଶଟି 'ଭଦ୍ରକାଳୀ ଗଣ୍ଡ' ନାମରେ ଏବେବି ଜୀବିତ । ଆତଙ୍ଗ ପୃଷ୍ଟି ନାମକ ଜନୈକ ବଦାନ୍ୟ ଭକ୍ତି ଭକ୍ତ ମନ୍ଦିର ନିର୍ମାଣ କରିବାର କିମ୍ବଦନ୍ତୀ ରହିଛି । ଭୂୟାଁ ବଂଶର ଉପାସକମାନେ ଯାଜପୁର ନିକଟସ୍ଥ ସିଦ୍ଧେଶ୍ୱର ଗ୍ରାମରୁ ବ୍ରାହ୍ମଣ ଆଣି ସେମାନଙ୍କ ଦ୍ୱାରା ଦେବୀଙ୍କ ପୂଜାର୍ଚ୍ଚନା କରାଇ ଆସୁଥିଲେ । ଷୋଡ଼ଶ ଶତାବ୍ଦୀର ମନ୍ଦିରଟି କାଳକ୍ରମେ ନଷ୍ଟ ହୋଇଯିବାରୁ ୧୯୫୩ ମସିହାରୁ ୧୯୫୯ ମସିହା ମଧ୍ୟରେ ବଦାନ୍ୟଚିତ୍ତ ବ୍ୟକ୍ତିମାନଙ୍କ ଅକୁଣ୍ଠିତ ଦାନଦ୍ୱାରା ବର୍ତ୍ତମାନର ମନ୍ଦିରଟି ତିଆରି ହୋଇଛି ।

ଅନ୍ୟ ଏକ କିମ୍ବଦନ୍ତୀ ଅନୁସାରେ ଭଦ୍ରକାଳୀଙ୍କ ଆଦ୍ୟ ପୀଠସ୍ଥଳୀ ମୟୂରଭଞ୍ଜର ମେଘାସନ ପର୍ବତ । ମେଘାସନନନ୍ଦିନୀ ସାଳନ୍ଦୀର ଉତ୍ପତ୍ତିସ୍ଥଳସ୍ଥ ଶାଳବନର ଏକ ନିଭୃତ ଗୁମ୍ଫାରେ ତାପସ ନାମକ ଜଣେ ବିଶିଷ୍ଟ ତାନ୍ତ୍ରିକ ସୁପ୍ରାଚୀନ କାଳରୁ ଦେବୀ ଭଦ୍ରକାଳୀଙ୍କୁ ପୂଜା କରୁଥିଲେ । ଦିନେ ଋଷି ତାପସଙ୍କ ସ୍ତୁତି ଝଙ୍କାରରେ ଦେବୀମୂର୍ତ୍ତିଙ୍କ ବାମସ୍ତନରୁ କ୍ଷୀର ନିର୍ଗତ ହୋଇ ଏକ ଝରଣା ସଂଗେ ମିଶି ନଦୀ ରୂପେ ପ୍ରବାହିତ ହେଲା, କ୍ଷୀର ନୀର ମିଶି ଶାଳବଣରୁ ନଦୀଟି ପ୍ରବାହିତ ହୋଇ ଶୈଳସୂତା ସାଳନ୍ଦୀ ନାମରେ ପ୍ରସିଦ୍ଧି ଲାଭ କଲା । ତାପସଋଷି ଏହା ଦେଖି ଅତ୍ୟନ୍ତ ଆନନ୍ଦ ଚିତ୍ତରେ ଉକ୍ତ କ୍ଷୀର ମିଶ୍ରିତ ନୀର ପାନ କରିବାରୁ ତାଙ୍କ ଆତ୍ମା ଦେବୀଙ୍କ ଶରୀରରେ ଲୀନ ହୋଇଗଲା ।

ଏହାପରେ ତାପସ ଋଷିଙ୍କ ଶିଷ୍ୟ ଭଦ୍ରନାଥ ଗୁରୁଙ୍କୁ ସମାଧି ଦେଲେ ଓ ଦେବୀଙ୍କର ଦୈନନ୍ଦିନ ପୂଜା ମଧ୍ୟ କଲେ । ହଠାତ୍ ଦିନେ ଭଦ୍ରନାଥ ସ୍ୱର୍ଗତଃ ଗୁରୁଙ୍କ ଶରୀର ସମାଧିରୁ ନିର୍ଗତ ହୋଇ ତଳେ ପଡ଼ିଥିବାର ଦେଖି କିଂ କର୍ତ୍ତବ୍ୟ ମୂଢ଼ ହୋଇ ଦେବୀଙ୍କୁ ସ୍ତୁତିଗାନ କଲେ । ଗୁରୁଙ୍କୁ ପିଣ୍ଡଦାନ ଦେଇ ଏହି ନଦୀରେ ଉତ୍ସର୍ଗ କଲେ ଏହି ସ୍ରୋତସ୍ୱିନୀର ପବିତ୍ର ସ୍ରୋତଧାରା ଗୋନାସିକା କନ୍ୟା ପୁତଃ ବୈତରଣୀ ବକ୍ଷରେ ଲୀନ ହୋଇ ଯୁଗ ଯୁଗ ଧରି ଏକ ଶିବଗଙ୍ଗା ତୀର୍ଥର ମର୍ଯ୍ୟାଦାଲାଭ କରିବ ବୋଲି ଦୈବବାଣୀ ହେଲା । ପୁନଶ୍ଚ ଦେବୀମୂର୍ତ୍ତିଙ୍କୁ ଜଳରେ ସ୍ଥାପନ କରି ଶୁଦ୍ଧ ଚିତ୍ତରେ ତାଙ୍କର ନୂପୁର ଧ୍ୱନିକୁ ଅନୁସରଣ କରି କିଛି ଦିନ ଚାଲିବା ପରେ ଦିନେ ଗୋଟିଏ ସ୍ଥାନରେ ଏକ ସୁନ୍ଦର ରାଜନଅରର ଶୋଭା ଦର୍ଶନରେ ବିମୁଗ୍ଧ ହୋଇ ଦେବୀଙ୍କ ନୁପୂର ନିକ୍ୱଣ ଶୁଣି ପାରିଲେ ନାହିଁ । ସନ୍ଦେହବଶତଃ ସେ ପଶ୍ଚାତ୍ ଅବଲୋକନ କରିବା ମାତ୍ରେ ଦେବୀ ସେହିଠାରେ ଅବସ୍ଥାନ କରିବେ ବୋଲି ଦୈବବାଣୀ ହେଲା ।

ଏହି ସ୍ଥାନଟି ସମ୍ବନ୍ଧରେ ରହସ୍ୟମୟ କିମ୍ବଦନ୍ତୀ ଅଛି । ବର୍ତ୍ତମାନ ଏହି ସ୍ଥାନଟି ଭଦ୍ରକ-ଚାନ୍ଦବାଲି ରାସ୍ତାର ଛଡ଼ାକ୍ ମହଲାକୁ ସଂଯୋଗ କରୁଥିବା ପକ୍କା ରାସ୍ତାର ଦଶ କିଲୋମିଟର ଦୂରରେ ଅବସ୍ଥିତ । ଏଠାରେ ଏକ ଛୋଟ ପୋଖରୀ ଅଛି । ଉକ୍ତ ଅଞ୍ଚଳଟି ଜନୈକ ବ୍ୟକ୍ତିଙ୍କ ଘେରା ମଧ୍ୟରେ ରହିଛି । ସେଠାରେ କେତୋଟି ବଡ଼ ବଡ଼ ପଥର ଓ ପଥର ଚଟାଣଟିଏ ମଧ୍ୟ ରହିଛି । କଲିକତାଠାରୁ ଶ୍ରୀକ୍ଷେତ୍ର ମଧ୍ୟ ଦେଇ ମାନ୍ଦ୍ରାଜ ପର୍ଯ୍ୟନ୍ତ ଯାଇଥିବା ରାସ୍ତାଟି ଭଦ୍ରକ ମଧ୍ୟ ଦେଇ ଯାଇଥିବାର ଐତିହାସିକ ତଥ୍ୟ ମଧ୍ୟ ରହିଛି ।

ପ୍ରାଚୀନ ଭଦ୍ରକରୁ ଶ୍ରୀଜଗନ୍ନାଥଙ୍କ ଦର୍ଶନ ପାଇଁ ଯାଇଥିବା ବଡ଼ଦାଣ୍ଡ ରାସ୍ତାଟି ଏହି ସ୍ଥାନଟିର ପାର୍ଶ୍ୱ ଦେଇ ଯାଇଥିଲା ବୋଲି ଲୋକେ କହନ୍ତି । ଏଠାରୁ ଅଳ୍ପ ଦୂରରେ ପୁରୁଷୋତ୍ତମ ଦେବଙ୍କ ମନ୍ତ୍ରୀ ବିଦ୍ୟାଧରଙ୍କ ଦ୍ୱାରା ଶ୍ରୀକ୍ଷେତ୍ର ଯାତ୍ରୀଙ୍କ ନିମିତ୍ତ ଏକ ପୋଖରୀ ଖୋଳା ହୋଇଥିଲା ଯାହାର ବର୍ତ୍ତମାନ ନାମ ବିଂଝାଦଉ ପୋଖରୀ । ଦେଶ ବିଦେଶର ଅଗଣିତ ସାଧୁ ସନ୍ୟାସୀ, ପଣ୍ଡିତ ଓ ଭକ୍ତ ଭଦ୍ରକ ଭୂମି ଦେଇ ପୁରୀଧାମ ଯିବା ଆସିବା କରି ଏକ ପାଦଚଲା ରାସ୍ତା ସୃଷ୍ଟି କରିଥିଲେ । ଏବେ କେତେକ ସ୍ଥାନରେ ଥିବା ତା'ର କିୟଦଂଶ ବଡ଼ଦାଣ୍ଡ ରାସ୍ତା ନାମରେ ବିଦିତ । ଭଦ୍ରକ ଆଖଣ୍ଡଳମଣି ରାସ୍ତାର ସାତଭଉଣୀ

ଛକରୁ ଦକ୍ଷିଣକୁ ଧାମନଗର ଆଡ଼େ ଯେଉଁ ରାସ୍ତାଟି ଯାଇଛି ତାହା ମଧ ଏକ 'ବଡ଼ଦାଣ୍ଡ ରାସ୍ତା' ନାମରେ ଲୁପ୍ତ ଗୌରବ ବହନ କରୁଛି । ସେହି ପଥରର ଚଟାଣକୁ ପ୍ରାଚୀନ ଭଦ୍ରକର ଅଂଶବିଶେଷ ବୋଲି କେତେକ ମଧ କହନ୍ତି । ଭଦ୍ରନାଥ ଏହିଠାରେ ଅବସ୍ଥାନ କରି ଦେବୀ ଆରାଧନା ଆରମ୍ଭ କରିଥିଲେ । କାଳକ୍ରମେ ବିବାହ କରି ସେ ଅପୂର୍ବ ସୁନ୍ଦରୀ କନ୍ୟାରତ୍ନଟିଏ ମଧ ଲାଭ କରିଥିଲେ ।

ପୁନଶ୍ଚ କିମ୍ବଦନ୍ତୀ କହେ ଏକଦା ତୀର୍ଥାଟନରେ ପୁରୁଷୋତ୍ତମ ପୁରୀଯାତ୍ରୀ ମରହଟ୍ଟା ଚୌହାନ ଯୁବକ ଭ୍ରାତୃଦ୍ୱୟ ପ୍ରାଚୀନ ଭଦ୍ରକ ନିକଟରେ ପହଞ୍ଚିଥିଲେ । ପଥଭ୍ରଷ୍ଟ ହୋଇ ଘୋର ଅରଣ୍ୟ ମଧରେ ପ୍ରବେଶ କରି ସେମାନେ ଦିଗନିର୍ଣ୍ଣୟ କରିବାରେ ବିଫଳ ହେଲେ । ରାତ୍ରିର ଅନ୍ଧକାରରେ ଭୀତତ୍ରସ୍ତ ହୋଇ ଇତଃସ୍ତତ ଦୃଷ୍ଟି ନିକ୍ଷେପ କରୁଥିବାବେଳେ ସେମାନଙ୍କ ଦୃଷ୍ଟିରେ ଆସିଥିଲା ଏକ ଆଲୋକର ଶିଖା । ଏହାକୁ ଲକ୍ଷ୍ୟ କରି ସେମାନେ ଆଗେଇ ଯାଇ ପହଞ୍ଚିଥିଲେ ଏକ ପର୍ଣ୍ଣକୁଟୀରର ଦ୍ୱାରଦେଶରେ ।

ଦୁର୍ଭେଦ୍ୟ ବନାକୀର୍ଣ୍ଣ ଏହି ଅଞ୍ଚଳରେ କନିଷ୍ଠ ଭ୍ରାତା ରୋଗଗ୍ରସ୍ତ ହୋଇ ଯୋଗୀ ଭଦ୍ରନାଥଙ୍କ ଆଶ୍ରମରେ ବିଶ୍ରାମ କଲେ ଓ ଅଗ୍ରଜ ଶ୍ରୀକ୍ଷେତ୍ର ଉଦ୍ଦେଶ୍ୟରେ ଯାତ୍ରା କଲେ । ସାଧୁକନ୍ୟାଙ୍କ ଶୁଶ୍ରୁଷା ଫଳରେ ରୋଗାକ୍ରାନ୍ତ ଯୁବକ ଆରୋଗ୍ୟଲାଭ କଲେ । କ୍ରମେ ଦୁହେଁ ପ୍ରେମ ବନ୍ଧନରେ ଆବଦ୍ଧ ହୋଇ ଭଦ୍ରନାଥଙ୍କ ଅନୁମତିକ୍ରମେ ବିବାହ କଲେ । ଚୌହ୍ୱାନ ଯୁବକ ଭଦ୍ରନାଥଙ୍କର ଦୈନନ୍ଦିନ ଏକ ଦୂରଗହନକୁ ଯାତ୍ରା କରିବା ଦେଖି ବିଶେଷ କୁତୁହଳୀ ହେଲେ । ତାଙ୍କ ଅଜ୍ଞାତରେ ତାଙ୍କୁ ଅନୁସରଣ କରି ଲକ୍ଷ୍ୟ ସ୍ଥଳରେ ପହଞ୍ଚିଲେ ଓ ସମ୍ମୁଖରେ ଯାହାକୁ ଦେଖିଲେ ସେ ଆଉ କେହି ନୁହଁନ୍ତି - ମହାମାୟା ଭଦ୍ରକାଳୀ ।

ସେଦିନ ରାତିରେ ଯୁବକ ଏକ ଅଦ୍ଭୁତ ସ୍ୱପ୍ନ ଦେଖିଲେ । ଦେବୀ ଭଦ୍ରକାଳୀ ସ୍ୱପ୍ନରେ ତାଙ୍କୁ ଏକ ଆଶୀର୍ବାଦ ପୁଷ୍ପଧାରଣ କରିବାକୁ ଦେଲେ । ପୁଷ୍ପଟି ଧରି ଯୁବକ ଯେତେ ବାଟ ଅଗ୍ରସର ହୋଇପାରିବ ସେ ସମସ୍ତ ଅଞ୍ଚଳ ତାଙ୍କର ଶାସନାଧୀନ ହେବ । ପରଦିନ ରାତିରେ ଦେବୀଙ୍କ କୃପାପୁଷ୍ପ ଲାଭ କରି ଯୁବକ ଅଗ୍ରସର ହୁଅନ୍ତେ ତାଙ୍କୁ ଅନୁସରଣ କଲେ ସ୍ୱୟଂ ମହାମାୟା । ତାଙ୍କର ପାଦପଦ୍ମର ନୁପୂରରେ ନିକ୍ୱଣିତ ହେଲା ନିସ୍ତବ୍ଧରଜନୀ । ଶୁଷ୍କ ସାଳନ୍ଦୀ ଅବବାହିକାରେ ଅଗ୍ରସର ହେଉଥିବା ବେଳେ ଯୁବକ ମାତାଙ୍କ ନୁପୂର ଧ୍ୱନି ଶ୍ରବଣ କରିନପାରି ପଛକୁ ଦୃଷ୍ଟିପାତ କରିବାରୁ ଆଦିମାତା ସେହିଠାରେ ପ୍ରସ୍ତର ପ୍ରତିମା ରୂପ ଧାରଣ କଲେ ।

ରତ୍ନକୋଷର ବର୍ଣ୍ଣନା ଅନୁଯାୟୀ ଭଦ୍ରକାଳୀ ଭଦ୍ରକ ଭୂୟାଁବଂଶର କୁଳଦେବୀ । ଏହି ବ୍ୟକ୍ତି ଜଣକ ଭୂୟାଁବଂଶର ଆଦିପୁରୁଷ । ସେହି ସ୍ଥାନଟିର ନାଁ ହେଲା, ଭୂୟାଁ ମହଲା ଯାହା ଥିଲା ପ୍ରାଚୀନ ଭଦ୍ରକର ରାଜଧାନୀ । ଭୂୟାଁମାନେ ଥିଲେ ସାଳନ୍ଦୀ ଅବବାହିକାର ଶାସକ ଓ ଭଦ୍ରକାଳୀଙ୍କ ପୂଜକ । ପରବର୍ତ୍ତୀ ସମୟରେ ଦୁର୍ଦ୍ଧର୍ଷ ଆଫଗାନମାନଙ୍କ ଆକ୍ରମଣ ବେଳେ ସେହି ଭୂୟାଁମାନେ ପଶ୍ଚାତଗମନ କରି ଦୋଳସାହି ନିକଟସ୍ଥ ଏକ ଜନପଦରେ ବସତି ସ୍ଥାପନ କରିଥିଲେ ଯାହା ଭୂୟାଁଉଆସ ନାମରେ ପରିଚିତ । ଭୂୟାଁବଂଶର ଦାୟାଦମାନେ ଭଦ୍ରକ ତାଳପଦାର ସାମନ୍ତରାୟବଂଶ, କୁବେରାର ଭୂୟାଁ ବଂଶ ଓ ନଦୀ ଗାଁର କାନୁନ୍‌ଗୋ ବଂଶ ଭାବରେ ପରିଚିତ ।

୧୫୬୭ ଖ୍ରୀ:ରେ ବଙ୍ଗର ତତ୍‌କାଳୀନ ଶାସନକର୍ତ୍ତା ସୁଲେମାନ କରାଣୀ ଓଡ଼ିଶା ଆକ୍ରମଣ କରିଥିଲେ । ସେ ସମୟରେ ରାଜା ମୁକୁନ୍ଦଦେବ ନିଜ ମାତାଙ୍କ ବାସନା ପୂରଣ କରିବା ପାଇଁ ଗଙ୍ଗାଙ୍କୁ ଉତ୍କଳ ଆଣିବା ପାଇଁ ତ୍ରିବେଣୀଠାରେ ତପସ୍ୟା କରୁଥିଲେ । ମୁସଲମାନ ଆକ୍ରମଣର ଖବର ପାଇ ସେ ସ୍ୱଦେଶକୁ ଫେରି ଆସି ତାଙ୍କର ଅଙ୍ଗଦେବତା ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥଙ୍କ ମୂର୍ତ୍ତି ତ୍ରୟଙ୍କୁ ସାଥିରେ ଆଣି ଭଦ୍ରକାଳୀ ପୀଠରେ ରଖିଥିଲେ ।

ଓଡ଼ିଶାର ଶେଷ ସ୍ୱାଧୀନ ଗଜପତି ମୁକୁନ୍ଦ ହରିଚନ୍ଦନଙ୍କ ସୁଲେମାନ କରାଣୀ ସହ ଯୁଦ୍ଧ ହୁଏ ଗୋହିରା ଟିକିରିରେ । ଏହା ଭଦ୍ରକଠାରୁ ଅନତି ଦୂରରେ ଧାମନଗର ଥାନା ଅନ୍ତର୍ଗତ ଗେଙ୍ଗୁଟି ନଦୀକୂଳରେ ଅବସ୍ଥିତ ଏକ ସ୍ଥାନ ସହ ଚିହ୍ନିତ । ସମ୍ଭବତଃ ସେଥିପାଇଁ ଧାମନଗର ମୁସଲମାନ ଅଧ୍ୟୁଷିତ ଅଞ୍ଚଳରେ ପରିଣତ ହୋଇଛି । କଲିକତା ଶ୍ରୀକ୍ଷେତ୍ର ରାସ୍ତାଟି ଅଧୁନା ପୁରୁଣା ବଜାର ଦେଇ ହରିପୁର ଓ ଧାମନଗର ବାଟେ ସଂଯୁକ୍ତ ହୋଇଥିବାରୁ ସେଠାରୁ ମୁସଲମାନମାନେ ସମ୍ଭବତଃ ପୁରୁଣା ବଜାର ଅଞ୍ଚଳରେ ବସତି ସ୍ଥାପନ କରିଥିଲେ ।

ଏବେ ଯେଉଁ ରାଣୀତଳା ପୋଖରୀ, ବରାଳ ପୋଖରୀ, ବଡ଼ଖୁଆ ପୋଖରୀ, ସାତଭଉଣୀ ପୋଖରୀ ଓ ଧାମନଗର-ଦୋବଲ ରାସ୍ତା ପାଖରେ ରାଣୀ ପୋଖରୀ ଓ ସେନାପତିଆ ପୋଖରୀ ପ୍ରଭୃତି ବୃହଦାୟତନ ପୁଷ୍କରିଣୀମାନ ଅଛି । ଐତିହାସିକ କିମ୍ବଦନ୍ତୀ ଅନୁଯାୟୀ ଶ୍ରୀକ୍ଷେତ୍ର ଯାତ୍ରୀଙ୍କ ଜଳକଷ୍ଟ ଦୂର କରିବା ପାଇଁ ମୁକୁନ୍ଦ ଦେବଙ୍କ ସୈନିକମାନେ ଏଗୁଡ଼ିକୁ ଖନନ କରିଥିଲେ । ଯେଉଁ ଉନ୍ମୁକ୍ତ ପ୍ରାନ୍ତରରେ ଉତ୍କଳୀୟ ସୈନ୍ୟ ସାମନ୍ତ ଅସ୍ତ୍ରଶସ୍ତ୍ର ପରୀକ୍ଷା ନିରୀକ୍ଷା କରୁଥିଲେ ତାହା 'ଶରବିନ୍ଧା ପଡ଼ିଆ' ଓ ଯେଉଁ ସ୍ଥାନରେ ସେମାନେ ଖାଦ୍ୟପେୟ ରଖୁଥିଲେ ଓ ଖାଉଥିଲେ ତାହା 'ଆହାରପଦା' ଓ ରାଜାଙ୍କ ହାତୀଗୁଡ଼ିକ ଯେଉଁ ସ୍ଥାନରେ ରହୁଥିଲେ ସେହି ସ୍ଥାନଟି 'ହାତୀସାହି' ନାମରେ ଆଜି ବି ପରିଚିତ । ମୁକୁନ୍ଦ ଦେବଙ୍କ ପରେ ଉତ୍କଳର ଶେଷ ସ୍ୱାଧୀନ ରବି ଅସ୍ତମିତ ହେଲା । କିନ୍ତୁ ସେ ସାଥିରେ ଆଣିଥିବା ପାର୍ଶ୍ୱଦେବତା ଜଗନ୍ନାଥ ଏ ଯାବତ୍ ଭଦ୍ରକାଳୀ ପୀଠ ମଧରେ ସଗୌରବେ ଆସୀନ । ନିକଟ ଅତୀତରେ ମନ୍ଦିର ପରିସର ମଧରେ ମହାପ୍ରଭୁଙ୍କ ନୂତନ ମନ୍ଦିର ନିର୍ମାଣ ହୋଇ ଭଦ୍ରକାଳୀ ପୀଠର ସମନ୍ୱୟ ମାହାତ୍ମ୍ୟକୁ ବିଶେଷ ବୃଦ୍ଧି କରିଛି ।

## ଐତିହାସିକ ଅଧ୍ୟୟନ

ଭଦ୍ରକ ଐତିହ୍ୟ ଓ ସଂସ୍କୃତି ବିଷୟକ ସର୍ବପ୍ରଥମ ଐତିହାସିକ ଉପାଦାନ ସ୍ୱରୂପ ବର୍ତ୍ତମାନର ଭଦ୍ରକାଳୀ ମନ୍ଦିର ପରିସର ମଧ୍ୟରୁ ଆବିଷ୍କୃତ ଏକ ଆଂଶିକ ଶିଳାଲେଖ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ହୋଇରହିଛି । ସମୟାନୁକ୍ରମିକତା ଦୃଷ୍ଟିକୋଣରୁ ଭୁବନେଶ୍ୱରର ହାତୀଗୁମ୍ଫା ଅନୁଶାସନ ପରେ ଏହାର ସ୍ଥାନ ଦ୍ୱିତୀୟ । ଶିଳାଲେଖଟି ବ୍ରାହ୍ମୀ ଅକ୍ଷର ଓ ପାଲିଭାଷାରେ ଲିଖିତ ।

### ଭଦ୍ରକାଳୀ ପୀଠ ଅଭିଲେଖ (ଭଦ୍ରକ)

(ସିଦ୍ଧମ୍) 'ମହାରାଜ ଶ୍ରୀଗଣେଶ ସମ୍ବତ (୮)
ମୂଳଜପେନ ଦେବା (୩) ଦତ ।
(ଆଢ଼ ?) ବପ ୮୦ ମହାକୁଳପତି
ଆୟ ଅଗ୍ନି ସମେନଂ
ପାନି - ଦେବ ଡିଙ୍ଗି ପତିଛିଦଂ
ଅଧିବାସ କ ଭଦ ଅପବସର ଘାଳି ଅଡ଼ସମ୍'

ନିର୍ମାଣ ଓ ଭାଷା ଶୈଳୀ ଦୃଷ୍ଟିରୁ ଶିଳା ଲେଖଟି ଖ୍ରୀଷ୍ଟିୟ ତୃତୀୟ ଶତାବ୍ଦୀର ବୋଲି ପ୍ରତ୍ନତତ୍ତ୍ୱବିତମାନେ ମତପୋଷଣ କରନ୍ତି । ଏଥିରୁ ଜଣାପଡ଼େ ତୃତୀୟ ଶତାବ୍ଦୀରେ ଭଦ୍ରକରେ 'ଶ୍ରୀଗଣ' ନାମରେ ଜଣେ ରାଜା ରାଜତ୍ୱ କରୁଥିଲେ । ଶିଳାଲେଖଟି ଆଂଶିକ ହୋଇଥିବାରୁ ଆମେ ଅନ୍ୟାନ୍ୟ ସଂଗୃହୀତ ଉପାଦାନ ସହ ତୁଳନା କରି ଯତ୍ କିଞ୍ଚିତ୍ ଐତିହାସିକ ତଥ୍ୟ ଲାଭ କରୁଁ ।

ଶିଶୁପାଳଗଡ଼ ଖନନ ସମୟରେ ପ୍ରତ୍ନତତ୍ତ୍ୱବିତ୍‌ମାନେ ଗୋଟିଏ ସ୍ୱର୍ଣ୍ଣମୁଦ୍ରା ଉଦ୍ଧାର କରିଥିଲେ । ଏହା ଉପରେ ପାଲି ଭାଷାରେ 'ମହାରାଜାଧସ ଧର୍ମଦାମଧାରସା' ବୋଲି ଗୋଟିଏ ନାମ ଲିପିବଦ୍ଧ ହୋଇଛି । ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିକୋଣରୁ ଉକ୍ତ ମୁଦ୍ରା ଖ୍ରୀଷ୍ଟାବ୍ଦ ଦ୍ୱିତୀୟ ବା ତୃତୀୟ ଶତାବ୍ଦୀର ବୋଲି ଗ୍ରହଣ କରାଯାଏ । ଏହା 'ମହାରାଜା ଧର୍ମଦନାଧର'ଙ୍କର ବୋଲି ପ୍ରମାଣିତ । ସେହି ସ୍ଥାନର ପ୍ରାପ୍ତ ଅନ୍ୟ ଏକ ଟେରାକୋଟା ସିଲମୋହର ଉପରେ 'ଅମଛଶାସ ପଶାଙ୍କସ' ଅର୍ଥାତ୍ 'ଅମାତ୍ୟସ୍ୟ ପ୍ରଶାଙ୍କସ୍ୟ' ବୋଲି ପାଲି ଭାଷାରେ ଲିପିବଦ୍ଧ ହୋଇଛି । ଏହା ମଧ୍ୟ ତୃତୀୟ ଶତାବ୍ଦୀର । ପ୍ରଖ୍ୟାତ ମୁଦ୍ରାବିତ୍ ଡକ୍ଟର ଏ.ଏସ୍. ଆଲଟେକ୍‌ର ଏହି ମୁଦ୍ରା ଦୁଇଟିକୁ ମୁରୁଣ୍ଡ ରାଜାଙ୍କର ବୋଲି ମତବ୍ୟକ୍ତ କରିଛନ୍ତି । ତେଣୁ ଉପରୋକ୍ତ ମୁଦ୍ରା ଦୁଇଟିରୁ ଆମେ ମୁରୁଣ୍ଡରାଜ ଧର୍ମଦନାଧର ଓ ତାଙ୍କ ଅମାତ୍ୟ ପ୍ରଶାଙ୍କଙ୍କ ବିଷୟରେ ଅବଗତ ହେଉ । ଖ୍ରୀଷ୍ଟିୟ ତୃତୀୟ ଶତାବ୍ଦୀରେ ମୁରୁଣ୍ଡରାଜ ତୋଷାଳୀରେ ରାଜତ୍ୱ କରୁଥିଲେ - ଏହା ଉତ୍ତର କଳିଙ୍ଗ ବା ଅମିତ ତୋଷଳର ରାଜଧାନୀ ଥିଲା ବୋଲି ଗଣ୍ଡିଓ୍ୱା ସୂତ୍ରରୁ ଜଣାପଡ଼େ । ଭଦ୍ରକର ମହାରାଜ ଶ୍ରୀଗଣ ମଧ୍ୟ ସେହି ସମୟରେ ରାଜତ୍ୱ କରୁଥିଲେ । ସେ ମୁରୁଣ୍ଡରାଜଙ୍କ ଅଧୀନରେ ସାମନ୍ତରାଜା ଥିଲେ ବୋଲି ଅନୁମାନ କରାଯାଏ ଯଦିଓ ଭଦ୍ରକାଳୀ ଆଂଶିକ ଶିଳାଲେଖରୁ ପୂର୍ଣ୍ଣାଙ୍ଗ ବିବରଣୀ ମିଳେ ନାହିଁ, କିନ୍ତୁ ଶିଳାଲେଖର ଭାଷା ଓ ଶୈଳୀ ଦୃଷ୍ଟିରୁ ଭଦ୍ରକ ତୃତୀୟ ଶତାବ୍ଦୀରେ ବେଶ ସମୃଦ୍ଧ ଥିଲା ବୋଲି ଐତିହାସିକମାନେ ମତ ଦିଅନ୍ତି ।

ଡକ୍ଟର ହରେକୃଷ୍ଣ ମହତାବ କିନ୍ତୁ ଭିନ୍ନ ମତପୋଷଣ କରନ୍ତି । ତାଙ୍କ ମତାନୁସାରେ ଭଦ୍ରକାଳୀ ଶିଳାଲେଖ ଗୁପ୍ତବଂଶର ପ୍ରତିଷ୍ଠାତା ମହାରାଜା ଶ୍ରୀଗୁପ୍ତଙ୍କ ସମୟରେ ଅର୍ଥାତ୍ ଖ୍ରୀଷ୍ଟିୟ ଚତୁର୍ଥ ଶତାବ୍ଦୀରେ ଲେଖା ହୋଇଥିଲା । ଓଡ଼ିଶାର ଉତ୍ତର ଭାଗ ଭଦ୍ରକ ସମେତ ବାଲେଶ୍ୱର ବଙ୍ଗଳାର ଗୋଟିଏ ଅଂଶବିଶେଷ ହୋଇଥିବାରୁ ଏହା ଶ୍ରୀଗୁପ୍ତଙ୍କ ଶାସନାଧୀନ ଥିଲା (Epigraphia Indica, Vol. XXIX) । କିନ୍ତୁ ଭୂୟାଁ ମହଲାରେ ବିରାଜିତ ହେଉଥିବା ଭଦ୍ରକର ଭଦ୍ରକାଳୀ ଏହାର ବହୁଆଗରୁ ପୂଜା ପାଇ ଆସୁଛନ୍ତି । ତାଙ୍କ ପୂର୍ବରୁ ଭଦ୍ରକରେ କୌଣସି ଦେବଦେବୀ ଅଧିଷ୍ଠିତ ହେବାରୁ ସହତାତ୍ତ୍ୱିକ ବା ସାହିତ୍ୟିକ ପ୍ରମାଣ ନାହିଁ । ସପ୍ତମରୁ ଦଶମ ଶତାବ୍ଦୀ ଭିତରେ ଉତ୍କଳରେ ତନ୍ତ୍ରବାଦର ବହୁଳ ପ୍ରସାର ବହୁତ ତନ୍ତ୍ରପୀଠ ମଧ୍ୟରୁ ଭଦ୍ରକାଳୀ ପୀଠ ଏକ ବିଶିଷ୍ଟ ସ୍ଥାନ ଲାଭ କରିଥିବାର ଜଣାଯାଏ ।

କିନ୍ତୁ ଦେବୀ ପ୍ରତିମାଙ୍କ ନିର୍ମାଣ ଶୈଳୀ ଦେଖିଲେ ସେ ଖ୍ରୀଷ୍ଟିୟ ତୃତୀୟ ଶତାବ୍ଦୀର ବୋଲି ଜଣାପଡ଼ନ୍ତି ନାହିଁ । ଦେବୀ ଭାଗବତରେ ଭଦ୍ରକାଳୀଙ୍କ ଧ୍ୟାନ ନିମ୍ନ ପ୍ରକାରର -

'କ୍ଷୁତକ୍ଷାମା କୋଟରାକ୍ଷୀ ମସିମଳିନମୁଖୀ ମୁକ୍ତକେଶୀ ରୁଦନ୍ତୀ
ନାହଂ ତୃପ୍ତା ବଦନ୍ତି ଜଗଦଖିଳମିଦଂ ଗ୍ରାସମେକଂ କରୋମି,
ରକ୍ତାଭ୍ୟାଂ ଧାରୟନ୍ତୀ ଜ୍ୱଳ ଦନଳଶିଖାସନ୍ନିଭଂ ପାଶଯୁଗ୍ମଂ
ଦନ୍ତୈର୍ଜମ୍ବୁଫଳା ଭୈଃ ପରିହରନ୍ତୁ ଭୟଂ ପାତୁ ମାଂ ଭଦ୍ରକାଳୀ ।'

ତନ୍ତ୍ରସାର ଓ ଅନ୍ୟାନ୍ୟ ଗ୍ରନ୍ଥମାନଙ୍କରେ ଏମିତି ଅନେକ ଧ୍ୟାନମନ୍ତ୍ର ଅଛି ଯାହା ଭଦ୍ରକାଳୀଙ୍କ ବର୍ତ୍ତମାନ ମୂର୍ତ୍ତି ସହ ସାମଞ୍ଜସ୍ୟହୀନ । ବର୍ତ୍ତମାନର ମୂର୍ତ୍ତିଙ୍କର ଜୈନଗ୍ରନ୍ଥ ବର୍ଣ୍ଣିତ ଶାସନଦେବୀ ଓ ଆମର ମଙ୍ଗଳା ଦେବୀଙ୍କ ସହ ସାମଞ୍ଜସ୍ୟ ଦେଖିବାକୁ ମିଳେ ।

ଭଦ୍ରକାଳୀ ଶିଳାଲେଖ ଅନୁସାରେ ଦୀପଙ୍କର ପତ୍ନୀ ରଙ୍ଗୋଲି ପର୍ଣ୍ଣଦେବୀଙ୍କ ରତ୍ନବସ୍ତ୍ର ପ୍ରଦାନ କରିଥିଲେ । କିନ୍ତୁ ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଅନ୍ୟଭାବେ ପାଠୋଦ୍ଧାର କରିଛନ୍ତି । ତାଙ୍କ ମତରେ ତୃତୀୟ ଓ ଚତୁର୍ଥ ଶତାବ୍ଦୀରେ ଭଦ୍ରକର ମହାରାଜା ଥିଲେ ସୁରଶର୍ମା ଓ ସେ ତାଙ୍କ ଅଷ୍ଟମ ବର୍ଷରେ ରଙ୍ଗୋଲୀ ନାମ୍ନୀ ଜଣେ ଧର୍ମପ୍ରାଣା ମହିଳା ପର୍ଣ୍ଣଦେବୀଙ୍କ ଉଦ୍ଦେଶ୍ୟରେ କିଛି ଦାନ କରିଥିଲେ । (Indian Historical Quarterly, XXXV, p.327) କିନ୍ତୁ ଦୀନେଶ ସରକାର ମହାରାଜ ସୁରଶର୍ମା ପରିବର୍ତ୍ତେ ମହାରାଜ 'ଗଣ' ବୋଲି ପଢ଼ିଛନ୍ତି (Epigraphia Indica XXIX- p.169H) । ଡକ୍ଟର ନବୀନ ଚନ୍ଦ୍ର ସାହୁଙ୍କ ମତରେ ସେହି ରାଜା 'ଗଣ' ପାଟଳିପୁତ୍ରର

ମୁରୁଣ୍ଡରାଜଙ୍କ ଅଧୀନସ୍ଥ ଥିଲେ, କିନ୍ତୁ ବର୍ତ୍ତମାନ ପ୍ରଶ୍ନ ଉଠେ ଏହି 'ପର୍ଣ୍ଣଦେବୀ' କିଏ ?

କିମ୍ବଦନ୍ତୀରୁ ଆମେ ପର୍ଣ୍ଣକୁଟୀରର ଆଭାସ ପାଉଁ, ପର୍ଣ୍ଣକୁଟୀର କଣ ପର୍ଣ୍ଣଦେବୀଙ୍କ ଅପଭ୍ରଂଶ ? ଏହି ପର୍ଣ୍ଣଶବରୀ ବୈଦିକ ଯୁଗର କିମ୍ବା ଜୈନ ସଂସ୍କୃତିର ଆରାଧ୍ୟା ପର୍ଣ୍ଣ ଶବରୀ ହୋଇପାରନ୍ତି (ହେବା ମଧ୍ୟ ଅସ୍ୱାଭାବିକ ନୁହେଁ) କାରଣ ମଧ୍ୟଯୁଗ ପ୍ରାରମ୍ଭରେ ଭଦ୍ରକ ବା ଚରମ୍ପା (ଚମ୍ପାନଗରୀ) ଜୈନ ଧର୍ମର ଏକ ପ୍ରଧାନ ପୀଠସ୍ଥଳୀ ଥିଲା । ପର୍ଣ୍ଣଦେବୀ ନାମରେ ମଧ୍ୟ ଜଣେ ବୌଦ୍ଧ ଦେବୀ ଅଛନ୍ତି । ତେଣୁ ପର୍ଣ୍ଣଦେବୀଙ୍କ ମୂର୍ତ୍ତି ଅଦ୍ୟାବଧି ଐତିହାସିକ ବିବାଦର ଘେରରେ ।

ଦୁର୍ଭାଗ୍ୟବଶତଃ କୌଣସି ଐତିହାସିକ ଉପାଦାନ ମଧ୍ୟ ଆମକୁ ଏ ବିଷୟରେ ସାହାଯ୍ୟ କରେ ନାହିଁ । କିନ୍ତୁ ମୂର୍ତ୍ତିର କାରୁକାର୍ଯ୍ୟ ଓ ନିର୍ମାଣ ଶୈଳୀରୁ ଏହା ଭୌମ ରାଜତ୍ୱ ସମୟରେ (736 A.D. - 960 A.D.) ନିର୍ମିତ ହୋଇଥିବାର ଅନୁମାନ କରାଯାଏ । ବୋଧହୁଏ ଦେବୀଙ୍କ ଆଦ୍ୟାମୂର୍ତ୍ତି ମୁସଲମାନ ଆକ୍ରମଣ ଦ୍ୱାରା ଧ୍ୱଂସପ୍ରାପ୍ତ ହେବା ପରେ ପରବର୍ତ୍ତୀ ସମୟରେ ତାଙ୍କୁ ବର୍ତ୍ତମାନ ରୂପରେ ଅବସ୍ଥାପିତ କରାଗଲା ।

ଦେବୀଙ୍କୁ କେନ୍ଦ୍ରକରି ଗଢ଼ି ଉଠିଥିବା କିମ୍ବଦନ୍ତୀରୁ ଗୋଟିଏ କଥା ସ୍ପଷ୍ଟ ସୂଚିତ ହୁଏ ଯେ ସେ ପ୍ରଥମେ ଦୁର୍ଗମ ବନାନୀ ମଧ୍ୟରେ ଅବସ୍ଥାନ କରୁଥିଲେ । ସେ ଦୃଷ୍ଟିରୁ ବୋଧହୁଏ ସେ ପ୍ରଥମାବସ୍ଥାରେ ଅନାର୍ଯ୍ୟମାନଙ୍କ ଦେବୀ ଥିଲେ । କିନ୍ତୁ ପାର୍ବତ୍ୟରୁ ସମତଳ ଆଗମନ ପଦ୍ଧତିରେ ସେ କାଳକ୍ରମେ ଅନାର୍ଯ୍ୟ ଦେବୀରୁ ଆର୍ଯ୍ୟ ହିନ୍ଦୁମାନଙ୍କ ଅଧିଷ୍ଠାତ୍ରୀ ଦେବୀରେ ରୂପାନ୍ତରିତ ହୋଇଥିଲେ । ଶାକ୍ତବାଦୀ ଉଡ଼ରଫ୍ ଓ ପ୍ରମଥନାଥଙ୍କ ମତାନୁସାରେ ମୁନିଋଷିମାନଙ୍କ ଦ୍ୱାରା ପ୍ରାକ୍ ବୈଦିକ ଯୁଗରେ ଶାସ୍ତ୍ରଗୁଡ଼ିକ ପ୍ରକାଶ ପାଇଥିଲା । ବେଦ ଓ ଉପନିଷଦ ପରେ ଆସିବାରୁ ସେମାନେ କ୍ରିୟାଯୋଗକୁ ପ୍ରାଧାନ୍ୟ ଦେଇଥିଲେ । କ୍ରିୟାଯୋଗର ମୂଳବୀଜ ଶକ୍ତି, ଶକ୍ତି ମହାକାଳ ରୂପିଣୀ । ସେ ବିଭିନ୍ନ ରୂପରେ ପ୍ରକଟିତା । ବୌଦ୍ଧ ଓ ଜୈନମାନେ ମଧ୍ୟ କ୍ରିୟାଯୋଗକୁ ଆୟତ୍ତ କରି ଶକ୍ତି ମାଧମରେ ପୁରପଲ୍ଲୀରେ ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ସେମାନଙ୍କର ଧର୍ମପ୍ରଚାର କଲେ ଯାହା ଫଳରେ ବୌଦ୍ଧ ଓ ଜୈନଙ୍କ ପର୍ଣ୍ଣଦେବୀ ଶବରୀ ପୁରପଲ୍ଲୀରେ କାଳୀ ବା ଭଦ୍ରକାଳୀ ଭାବରେ ପୂଜା ପାଇଲେ । ପ୍ରତି ଗ୍ରାମର ଶକ୍ତିପୀଠର ଭିନ୍ନ ଭିନ୍ନ ନାମରେ ସେ ପୂଜିତା ହେଲେ । ମାତ୍ର ମୂଳତଃ ସେ ଆଦ୍ୟାଶକ୍ତି ମହାକାଳୀ ।

## ସାଂସ୍କୃତିକ ବୈଶିଷ୍ଟ୍ୟ

ଭଦ୍ରକର ନାମକରଣ ଭଦ୍ରକାଳୀ ଅନୁସାରେ ହୋଇଛି ବୋଲି ଅନେକେ ପ୍ରାମାଣିକ ତଥ୍ୟ ଦିଅନ୍ତି । ବାସେଶ୍ୱରରୁ ବାଲେଶ୍ୱର, ସମଲାଇରୁ ସମ୍ବଲପୁର, ଦେବୀ ଭୁବନେଶ୍ୱରୀରୁ ଭୁବନେଶ୍ୱର ହୋଇଥିବା ଦୃଷ୍ଟିରୁ ଭାଗିରଥୀ ନନ୍ଦଶର୍ମା ମତ ଦିଅନ୍ତି ଯେ ଭଦ୍ରକ ଭଦ୍ରକାଳୀରୁ ଉଦ୍ଭୂତ । ଅନ୍ୟ କେତେକ କହନ୍ତି ଭଦ୍ରକ ନାମଟି ହୁଏତ ପୂରା ଭଦ୍ରକାଳୀ ନାମର ସଂକ୍ଷିପ୍ତ ସଂସ୍କରଣ ହୋଇଥାଇପାରେ ଯେମିତି ପୁରୁଷୋତ୍ତମ ପୁରୀରୁ କାଳକ୍ରମେ ପୁରୀ ନାମ ହିଁ ଲୋକମୁଖରେ ରହିଲା ।

ଭଦ୍ର ଶବ୍ଦର ଅର୍ଥ ସୌଭାଗ୍ୟ, କୁଶଳ, କଲ୍ୟାଣ, ମଙ୍ଗଳ ବା ଶୁଭ (ପୂର୍ଣ୍ଣଚନ୍ଦ୍ର ଭାଷାକୋଷ, ପୃ.୬୦୩୯) ଓ 'କ'ର ଅର୍ଥ ଦୀପ୍ତି ପାଇବା (ପୂର୍ଣ୍ଣଚନ୍ଦ୍ର ଭାଷାକୋଷ, ପୃ.୧୧୯୫) ଭଦ୍ରକର ଅର୍ଥ - କଲ୍ୟାଣର ଦୀପ୍ତି ପ୍ରାପ୍ତି । ସ୍ୱାଭାବିକ ଭାବେ ଭଦ୍ରକାଳୀଙ୍କ କଲ୍ୟାଣ ଦୀପ୍ତିରେ ଉଦ୍‌ଭାସିତ ସ୍ଥାନ ହେଉଛି ଭଦ୍ରକ ।

'ଓଁ 'କ' ବ୍ରହ୍ମଂ 'କ' ବିଷ୍ଣୁଃ 'କ' ଦେବୀ ମାହେଶ୍ୱରୀ
'କ' ଭଦ୍ର 'କ' କାଳ ସୈକଷା ଭଦ୍ରକେଶ୍ୱରୀ

'କ' ରୂପୀ ଶବ୍ଦ ବ୍ରହ୍ମରୁ, 'କ' ରୂପୀ ବ୍ରହ୍ମାଙ୍କ କଳ୍ପନାରୁ ଏ ଜଗତ ଚରାଚର ସୃଷ୍ଟି । 'କ' ରୂପୀ ପାଳନକର୍ତ୍ତା କେଶବଙ୍କ ଦ୍ୱାରା ପରିଚାଳିତ, 'କ' ରୂପୀ ମହାମୃତ୍ୟୁଞ୍ଜୟ ସଂହାରକ ଅଟନ୍ତି । 'କ' ମଙ୍ଗଳ (ଭଦ୍ର) ଯେ ଏହି ତ୍ରିଶକ୍ତିର ଉପନ୍ତା, ପାଳନା ଓ 'କ' ଭଦ୍ର ରୂପରେ କାଳକୁ ଯେ କଳ୍ପନା କରନ୍ତି ସେ ଆମର ଭଦ୍ରକେଶ୍ୱରୀ ଭଦ୍ରକାଳୀ ।

କୌଣସି ଜାତି, ସମାଜ ବା ସାଂସ୍କୃତିକ କ୍ଷେତ୍ରର ସଂସ୍କୃତି, ଐତିହ୍ୟ ତଥା ଧର୍ମଧାରାର ଅବିଚ୍ଛିନ୍ନ ଅଂଶରୂପେ ସେଠାରେ ପ୍ରଚଳିତ ପର୍ବପର୍ବାଣିର ଭୂମିକା ଅନସ୍ୱୀକାର୍ଯ୍ୟ । ପର୍ବପର୍ବାଣି, ଓଷାବ୍ରତ ଓ ଯାନିଯାତ୍ରା ସାଂସ୍କୃତିକ ଜୀବନ ପ୍ରବାହର ସୂଚକ ଓ ଧର୍ମଜୀବନର ବାହ୍ୟରୂପ । ଏହି ଦୃଷ୍ଟିକୋଣରୁ ଭଦ୍ରକର ସାଂସ୍କୃତିକ ଜୀବନରେ ଭଦ୍ରକାଳୀଙ୍କ ପ୍ରବାହ ଅତିମାତ୍ରାରେ ପରିଲକ୍ଷିତ ହୁଏ । ରଜୋତ୍ସବ, ଦୁର୍ଗାପୂଜା, କାଳୀପୂଜା, ଚୈତ୍ର ପୂର୍ଣ୍ଣିମା ଓ ମହାବିଷୁବ ସଂକ୍ରାନ୍ତି ଭଦ୍ରକାଳୀଙ୍କର ପାଞ୍ଚଗୋଟି ପ୍ରଧାନ ପର୍ବ ଅଟେ । ରଜୋତ୍ସବର ପହିଲି ରଜଠାରୁ ଭୂଇଁ ଦହଣ ପରଦିନ ପର୍ଯ୍ୟନ୍ତ ଚାରିଦିନ ବ୍ୟାପୀ ମେଳା ଓ ଯାତ୍ରାଗହଳି ଲାଗି ରହିଥାଏ ।

ଅମାବାସ୍ୟା, ସଂକ୍ରାନ୍ତି, ପୂର୍ଣ୍ଣିମା, ଦୁର୍ଗାପୂଜା ପ୍ରଭୃତି ଦିନରେ ଅଧିକ ପୂଜାପାଠ ସାଥିରେ ବେଶୀ ଯାତ୍ରୀ ସମାଗମ ହୁଏ । ମହାଳୟା ଦିନ ଦେବୀଙ୍କର ଶୁଭାଙ୍ଗୀ ବେଶ ହିଁ ଗଙ୍ଗା ଦର୍ଶନ । ପ୍ରତିପଦରୁ କଳମ ସ୍ଥାପନ କରାଯାଏ ଏବଂ ସପ୍ତମୀ, ଅଷ୍ଟମୀ, ନବମୀରେ ଯଜ୍ଞ ହୋଇ ବିଜୟାଦଶମୀ ଦିନ ପୂର୍ଣ୍ଣାହୂତି ଦିଆଯାଏ । ଏହି ତିଥିଗୁଡ଼ିକରେ ଚଣ୍ଡୀପୁରାଣ ମତେ ଦେବୀ ବିଭିନ୍ନ ବେଶରେ ଉଭାସିତା ହୁଅନ୍ତି । ତାଙ୍କ ସମ୍ମୁଖରେ କୁଷ୍ମାଣ୍ଡ ବଳି ପ୍ରଦାନ କରାଯାଏ । ଲୋକେ ମାନସିକ ପୂରଣ କରିବା ପାଇଁ ମାଟିର ପୋଡ଼ା କୁକୁଡ଼ା ଓ ଛାଗ ଆଣି ଦେବୀପୀଠରେ ଛାଡ଼ି ଦେଇଯାନ୍ତି । ଏହି ସବୁ ପୂଜାରେ କୁବେରାର

ଭୂୟାଁ ବଂଶ, ତାଳପଦାର ସାମନ୍ତରାୟ ବଂଶରୁ ପାରମ୍ପରିକ ମତେ ବସ୍ତ୍ର ଓ ଭୋଗ ସରଞ୍ଜାମ ଆସିଥାଏ ।

କୁମାରପୂର୍ଣ୍ଣିମା ଦିନ ଦେବୀଙ୍କୁ ରାଜ ରାଜେଶ୍ୱରୀ (ଲକ୍ଷ୍ମୀ) ବେଶ ଓ ଦୀପାବଳୀ ଅମାବାସ୍ୟା ଦିନ ଶ୍ୟାମାବେଶରେ ପୂଜାରାଧନା କରାଯାଏ । ଦୁଇ ମନ୍ଦିରକୁ ଆଲୋକମାଳାରେ ସୁସଜ୍ଜିତ କରାଯାଏ । ପ୍ରତିବର୍ଷ କାଳୀପୂଜାରେ କାଳୀମେଘା ଚୌଧୁରୀ ବଂଶଧରଗଣ ହୋମ ଓ ଭୋଗ ସାମଗ୍ରୀ ପଠାଇଥାନ୍ତି । ଅମାବାସ୍ୟା ଦିନ ଯଜ୍ଞ ହୁଏ । ଭଦ୍ରକାଳୀଙ୍କର ଏସବୁ ସ୍ୱତନ୍ତ୍ର ପୂଜା ମଉଦା ଗ୍ରାମର ପଣ୍ଡାବଂଶୀୟ ବ୍ରାହ୍ମଣମାନେ କରିଥାନ୍ତି ।

ଚୈତ୍ର କୃଷ୍ଣ ଦଶମୀଠାରୁ ବୈଶାଖ କୃଷ୍ଣ ଅଷ୍ଟମୀ ପର୍ଯ୍ୟନ୍ତ ଦ୍ୱାଦଶ ଦିନ ବ୍ୟାପି ପାରମ୍ପରିକ ଭଦ୍ରକାଳୀ ପର୍ବ ବିଶେଷ ସମାରୋହରେ ଅନୁଷ୍ଠିତ ହୋଇଥାଏ । ଚୈତ୍ର ଦ୍ୱିତୀୟା ତିଥି ରାତିରେ ବିଭିନ୍ନ ଗ୍ରାମର କୈବର୍ତ୍ତମାନେ ଘୋଡ଼ାଘେନି ନାନାପ୍ରକାରର ବାଦ୍ୟ ବାଦନ କରି ଆତସବାଜି ପ୍ରଦର୍ଶନ ସହ ମେଳନପଦାରେ ଉପସ୍ଥିତ ହୁଅନ୍ତି । ଏହି ଘୋଡ଼ାନାଟ (ଚଇତିଘୋଡ଼ା) ଓ ଶୋଭାଯାତ୍ରା ପାଇଁ ଶହ ଶହ ଦର୍ଶକମାନଙ୍କ ସମାଗମ ହୁଏ ।

ବିଷୁବ ସଂକ୍ରାନ୍ତିର ଝାମୁଯାତ୍ରା (ପାଟୁଆ ନୃତ୍ୟ) ମଧ୍ୟ ଦେବୀପୀଠର ଅନ୍ୟ ଏକ ପାରମ୍ପରିକ ଅଙ୍ଗ । ବିଭିନ୍ନ ଗ୍ରାମରୁ ପାଟୁଆମାନେ ଦଳ ଦଳ ହୋଇ ଆସି ଦେବୀପୀଠର ପୁଷ୍କରିଣୀରେ ସ୍ନାନ କରି ଠାକୁରାଣୀଙ୍କ ଉପରେ ଫୁଲ ଚଢ଼ାନ୍ତି । ଫୁଲ ନପଡ଼ିବା ପର୍ଯ୍ୟନ୍ତ ଢୋଲ ଓ ମହୁରୀ ବାଜୁଥାଏ ଏବଂ ସେମାନେ ଉଚ୍ଚସ୍ୱରରେ ମା'ଙ୍କୁ ଡାକି ଚାଲିଥାନ୍ତି । ଫୁଲ ପଡ଼ିଲେ ନୃତ୍ୟ ଓ ସଙ୍ଗୀତ ଗାନ କରନ୍ତି । ଏହି ପାଟୁଆ ମେଳନ ମଧ୍ୟ ଦେବୀପୀଠର ଅନ୍ୟ ଏକ ବିଶେଷ ଆକର୍ଷଣ ।

ଭଦ୍ରକାଳୀ ପୀଠର କାଳୀପୂଜା ବ୍ୟତୀତ ଭଦ୍ରକର ଚରମ୍ପା ବଜାର ଓ ରାଜଘାଟ ଛକରେ ସାତଦିନବ୍ୟାପି ବହୁ ସାଜସଜ୍ଜା, ଆନନ୍ଦ, ସମାରୋହ ମଧ୍ୟରେ କାଳିପୂଜା ପାଳନ କରାଯାଏ । ଏହି ଅଞ୍ଚଳର କାଳୀପୂଜା ଜନଜୀବନକୁ ସର୍ବାଧିକ ଆକୃଷ୍ଟ କରିଛି । ଭଦ୍ରକ ସହରରେ କେବଳ ନୁହଁ ଜିଲ୍ଲାର ପ୍ରାୟ ସମସ୍ତ ଗାଁଗଣ୍ଡା ଓ ହାଟବଜାରରେ ପର୍ବପର୍ବାଣି ପୂର୍ଣ୍ଣ ପବିତ୍ର କାର୍ତ୍ତିକ ମାସରେ ମୃଣ୍ମୟୀ ଶ୍ୟାମାକାଳୀ ମୂର୍ତ୍ତିପୂଜା ସହିତ ଅସୁରାଳିଠାରେ ଶ୍ରୀବୈରାଗୀଙ୍କ ଦ୍ୱାରା ପ୍ରତିଷ୍ଠିତ ରଟନ୍ତୀ କାଳୀପୂଜା ମଧ୍ୟ ଅନ୍ୟ ଏକ ଆକର୍ଷଣୀୟ ଅନୁଷ୍ଠାନ । ଭଦ୍ରକ ଜିଲ୍ଲାରେ କାଳୀପୂଜା ଉତ୍ସବର ବହୁଳ ପ୍ରସାର ଯେ ଆଦିମାତା ଭଦ୍ରକାଳୀଙ୍କ ପ୍ରଭାବରୁ ହୋଇଛି ଏଥିରେ ତିଳେ ମାତ୍ର ସନ୍ଦେହର ଅବକାଶ ନାହିଁ ।

ଓଡ଼ିଶାରେ ମାତୃପୂଜା ବା ଆଦିଶକ୍ତିଙ୍କ ପୂଜା ଅତ୍ୟନ୍ତ ବ୍ୟାପକ । ଏପରି କୌଣସି ଗ୍ରାମ ନାହିଁ ଯେଉଁଠି ଗ୍ରାମଦେବତୀଙ୍କ ଅଧିଷ୍ଠାନସ୍ଥଳ ପରିଲକ୍ଷିତ ହୁଏ ନାହିଁ । ନିଜର ମାତୃକଳ୍ପନାର ପ୍ରତୀକ ଆଦିଶକ୍ତିଙ୍କ ନିକଟରେ ଗ୍ରାମବାସୀମାନେ ନିଜର ଶ୍ରଦ୍ଧାର ନୈବେଦ୍ୟ ନିବେଦନ କରି ସଙ୍କଟରୁ ପରିତ୍ରାଣ ପାଇବା ପାଇଁ ପ୍ରାର୍ଥନା କରିଥାନ୍ତି । କେଉଁଠି ସାରଳା ତ କେଉଁଠି ପାଟଣେଶ୍ୱରୀ, କେଉଁଠି ମହାମାଇ ତ କେଉଁଠି ଜାଗୁଲାଇ, କେଉଁଠି ବାଟମଙ୍ଗଳା ତ କେଉଁଠି ବାସୁଳେଇ, କେଉଁଠି ସୁରେଶ୍ୱରୀ ତ କେଉଁଠି ମାଣିକେଶ୍ୱରୀ, କେଉଁଠି ବିରଜା ତ କେଉଁଠି ଭଦ୍ରକାଳୀ - ମାତୃଶକ୍ତିର ବିଭିନ୍ନ ପ୍ରକାଶ ମାତ୍ର - ବିଭିନ୍ନ ରୂପରେ ବିଭିନ୍ନ ଭାବରେ ।

ମା' ପାଖରେ ସବୁ ସନ୍ତାନଙ୍କର ସମାନ ଅଧିକାର । ମା' ଆଖିରେ ତା'ର ସମସ୍ତ ସନ୍ତାନ ସ୍ନେହ ଓ ମମତାର ପାତ୍ର, ଏଠି ଭେଦଭାବ ଉଚ୍ଚନୀଚ, ଧନୀଗରିବର ପ୍ରଶ୍ନ ନାହିଁ । ସେ ଆଦ୍ୟାଶକ୍ତି ଚଣ୍ଡୀ । ଅଖିଳ ଜଗତ ପାଳନକାରିଣୀ ଅଶୁଭଅରାତିଧ୍ୱଂସିନୀ । ତାଙ୍କର ପୀଠସ୍ଥଳୀ ସର୍ବଧର୍ମ ସର୍ବବର୍ଣ୍ଣର ସମନ୍ୱୟସ୍ଥଳୀ । ମାତୃପୂଜାର ଉଦ୍ଦିଷ୍ଟ ଆଦର୍ଶ, ବ୍ୟାପକତା ଓ ସାର୍ବଜନୀନତା ମାଧ୍ୟମରେ ସେ ପ୍ରାଣୀଙ୍କର ମଙ୍ଗଳ କରନ୍ତି ।

'ରାଜନ୍ୟାନାଂ ବ୍ରାହ୍ମଣାନାଂ କଞ୍ଚାଞ୍ଚ
ଶୂଦ୍ରାଣାଂ ବା ସର୍ବବର୍ଣ୍ଣାଙ୍ଗନାନାମ୍
ମ୍ଲେଚ୍ଛାନାଂ ବା ଭକ୍ତିର୍ଯ୍ୟୋ ବିଶେଷୈଃ
କର୍ମଣ୍ୟସ୍ମିନ୍ ନିର୍ବିବାଦୋଧିକାରଃ ।'

**ସହାୟକ ଗ୍ରନ୍ଥସୂଚୀ**

୧. ଶ୍ରୀ ଶ୍ରୀ ଭଦ୍ରକାଳୀ - ବାବାଜୀ ନାୟକ ।
୨. ଭଦ୍ରକାଳୀ ନମୋସ୍ତୁତେ - ବନମାଳୀ ଦୀକ୍ଷିତ ।
୩. Indian Historical Quarterly, Vol. XXXV.
୪. Epigraphia Indica, Vol. XXIX.
୫. S.C. Dey - Salandi Valey Culture at Bhadrak. (Bhadrak High School Centenary Souvenir).
୬. ହରେକୃଷ୍ଣ ମହତାବ - History of Orissa, Vol. I.
୭. H.C. Das - Bhadrakali (Souvenir, Orissa History Congress, 1997).
୮. ପ୍ରଜାତନ୍ତ୍ର - ୧୯.୧୦.୯୮ ।
୯. ସକାଳ - ୨୮.୯.୯୭ ।

ପ୍ରାଧ୍ୟାପିକା
ଇତିହାସ ବିଭାଗ
ରେଭେନ୍ସା କଲେଜ, କଟକ

---

# ସଂସ୍କୃତି ଓ ସାଂସ୍କୃତିକ ପ୍ରଦୂଷଣ ଓ ଦୀପାବଳୀ

ଡକ୍ଟର ପ୍ରଫୁଲ୍ଲ କୁମାର ମହାନ୍ତି

**ଦୀପାବଳୀର ଇତିହାସ (History of Diwali)**

ଭାରତବର୍ଷରେ ବିଶେଷ କରି ଓଡ଼ିଶାରେ ପର୍ବପର୍ବାଣି କଥା କହିଲେ ନସରେ । କଥାରେ କୁହାଯାଏ, 'ବାର ମାସରେ ତେର ପର୍ବ' । ଯେତେ ପର୍ବପର୍ବାଣି ଅଛି ସେ ମଧ୍ୟରେ ଦୀପାବଳୀ ପର୍ବର ବିଶେଷତ୍ୱ ବେଶ ଭିନ୍ନ । ଏହା ଭାରତର ଏକ ଲୋକପ୍ରିୟ ପର୍ବ । ଏହାକୁ ହିନ୍ଦୀରେ ଦିଓ୍ୱାଲୀ (Diwali) ବୋଲି କୁହାଯାଏ । ହିନ୍ଦୁମାନଙ୍କର ପର୍ବ ଭାବରେ ଏହା ଅତି ଜଣାଶୁଣା । ଏ ପର୍ବଟି ଦୁର୍ଗାପୂଜା ବା ଦଶହରାର କୋଡ଼ିଏ ଦିନ ପରେ ପଡ଼ିଥାଏ । ଦୀପାବଳୀର ଇତିହାସ ବେଶ୍ ପୁରୁଣା ପୁରାଣରୁ ଜଣାଯାଏ ଯେ ପ୍ରଭୁ ରାମଚନ୍ଦ୍ର ରାବଣକୁ ଜୟ କରି ଏହି ଦିନ ଅଯୋଧ୍ୟାକୁ ଫେରି ଆସିଥିଲେ । ତେଣୁ ରାମଚନ୍ଦ୍ର ଫେରିବା କଥା ଶୁଣି ଅଯୋଧ୍ୟାବାସୀ ରାତିରେ ଆଲୋକ ବା ଦୀପଜାଳି ଅନ୍ଧକାର ରାତ୍ରିକୁ ଆଲୋକିତ କରି ରାମଚନ୍ଦ୍ରଙ୍କୁ ସ୍ୱାଗତ କରିଥିଲେ । ସେହିଦିନଠାରୁ ଆମ ଦେଶରେ ଦୀପାବଳୀ ଉତ୍ସବ ବଡ଼ ଆନନ୍ଦ ଉଲ୍ଲାସରେ ପାଳିତ ହୋଇଆସୁଛି । ଲୋକମାନେ ଏହିଦିନ ଘର ଦ୍ୱାର ସଫା କରିବା ସହ ନୂଆ ପୋଷାକପତ୍ର ପରିଧାନ କରନ୍ତି । ସହରଗୁଡ଼ିକୁ ଆଲୋକମାଳାରେ ସଜାନ୍ତି, କେତେକଙ୍କର ବିଶ୍ୱାସ ଯେ ଏହିଦିନ ରାତ୍ରିରେ ଲକ୍ଷ୍ମୀ ସେମାନଙ୍କ ଘର ବୁଲନ୍ତି । ତେଣୁ ଲୋକମାନେ ଆଲୋକ ବା ଦୀପଜାଳି ରାତିସାରା ଚେଇଁ ରୁହନ୍ତି । ଆଉ କେତେକ ଲୋକ ଲକ୍ଷ୍ମୀଙ୍କୁ ସ୍ୱାଗତ କରିବା ନିମିତ୍ତ ଘରର ଦ୍ୱାର ଓ ଝରକା ସବୁ ସେଦିନ ଖୋଲା ରଖନ୍ତି । ମୋଟାମୋଟି ରାତିସାରା ଅନ୍ଧକାରକୁ ଆଲୋକିତ କରିବା ପାଇଁ ଦୀପ ବା ମହମବତୀ ଜାଳି ଉପଭୋଗ କରନ୍ତି । କ୍ରମେ ଏହି ଦିନକୁ ଅଧିକ ଉପଭୋଗ କରିବା ଲାଗି ବାଣ ଆଦି ଫୁଟାଇ ମଉଜ ମଜଲିସରେ ସେଦିନ କଟାଇଥାନ୍ତି ।

**ପ୍ରଦୂଷଣର କ୍ରମବିକାଶ (Evolution of Pollution)**

ବର୍ତ୍ତମାନ ଚାରିଆଡ଼େ ପ୍ରଦୂଷଣ (Pollution)ର ହୋହଲ୍ଲା । ଭୌତିକ, ରାସାୟନିକ ଓ ଜୈବିକ କାରକଗୁଡ଼ିକ ଦ୍ୱାରା ପରିପାର୍ଶ୍ୱର ଯେକୌଣସି ଅପ୍ରାକୃତିକ ଓ ଅନିଚ୍ଛାକୃତ ପରିବର୍ତ୍ତନ ହିଁ ପ୍ରଦୂଷଣ (Pollution is an undesirable change in





the physical, chemical or biological characteristics of air, water and land that may harmfully affect human life, industrial progress,living conditions and cultural assets.), ବିଜ୍ଞାନ ଓ କାରିଗରୀ ବିଦ୍ୟାର ଉନ୍ନତି ଫଳରେ ମନୁଷ୍ୟ ପ୍ରକୃତିକୁ ଜାଣିବାକୁ ଚେଷ୍ଟା କଲା । ତା'ର ନିଜର ଉପକାର ପାଇଁ ଚାରିପଟେ ଥିବା ପ୍ରାକୃତିକ ସମ୍ବଳଗୁଡ଼ିକୁ ଦରକାରଠାରୁ ଅଧିକ ଉପଯୋଗ କରିବାକୁ ଚେଷ୍ଟା କଲା । କ୍ରମେ ସହରାଞ୍ଚଳ ଗଢ଼ି ଉଠିବା ସହ ଶିଳ୍ପକରଣ ହେବା ଯୋଗୁଁ ମଣିଷ ତା' ଜୀବନକୁ ସରସ ସୁନ୍ଦର କରିବା ସହ ବେଶ୍ ଉପଭୋଗ କରିପାରିଲା । ଶେଷରେ ଜୀବମଣ୍ଡଳକୁ ସେ ଅକ୍ତିଆରକୁ ନେଇ ଆସିଲା । ସମସ୍ତ ଜିନିଷକୁ ଜଳାଞ୍ଜଳି ଦେଇ ନିଜ କଥା ଚିନ୍ତାକରି ପୃଥିବୀ ଉପରେ ଆଧିପତ୍ୟ ବିସ୍ତାର କଲା । ଜନସଂଖ୍ୟା ବୃଦ୍ଧି ପାଇଲା । ସେହିଠାରୁ ଆରମ୍ଭ ହେଲା ପ୍ରଦୂଷଣ (Population is the cause of pollution) ।

ପୃଥିବୀ ଉପରେ ଯେତେବେଳେ ଅନ୍ୟାନ୍ୟ ପ୍ରାଣୀ ଓ ମନୁଷ୍ୟ ତା'ର ଜୀବନ ଆରମ୍ଭ କଲେ, ସେତେବେଳେ ପ୍ରଦୂଷଣର ସୂଚନା ନଥିଲା । ବିଭିନ୍ନ ପ୍ରାକୃତିକ ପ୍ରକ୍ରିୟାରେ ଭାରସାମ୍ୟ ରକ୍ଷା ହୋଇପାରିଥିଲା । ବାୟୁ ଓ ଜଳର ଅବସ୍ଥା ଠିକ୍ ରହିଥିବା ସହ ମୃତ୍ତିକା ମଧ୍ୟ ଉର୍ବର ଥିଲା । ମଣିଷ ସଭ୍ୟତା ଆରମ୍ଭ ହେବା ଦିନଠାରୁ ପ୍ରଦୂଷଣର ସୂତ୍ରପାତ ହୋଇଛି । ମଣିଷ ନିଆଁର ବ୍ୟବହାର ଶିଖି ପ୍ରୟୋଗ କରିବା

ଦିନଠାରୁ ପ୍ରଦୂଷଣର ଆବିର୍ଭାବ ବୋଲି ଅନୁମାନ । ଜନସଂଖ୍ୟା ବୃଦ୍ଧି, ଅଧିକ ସ୍ଥାନର ଆବଶ୍ୟକତା, ଜଙ୍ଗଲ ସଫା, ଶିଳ୍ପ କାରଖାନା ଆଦିର ପ୍ରତିଷ୍ଠା ହିଁ ପ୍ରାକୃତିକ ସମ୍ବଳ ଉପରେ ଚାପ ପକାଇଲା । ହ୍ରାସ ପାଇବାକୁ ଲାଗିଲା ପ୍ରାକୃତିକ ସମ୍ପଦ ଅର୍ଥାତ୍ କାଠ, କୋଇଲା, ପେଟ୍ରୋଲ, କିରୋସିନି, ଜଙ୍ଗଲଜାତ ଦ୍ରବ୍ୟ, ପାଣି ଓ ଆହୁରି ଅନେକ ସମ୍ପଦ । ଗାଡ଼ି ଓ ମଟର ଆଦିର ବ୍ୟବହାର ବାୟୁମଣ୍ଡଳକୁ ଦୂଷିତ କରିବା ସହ ରାସାୟନିକ ଦ୍ରବ୍ୟର ବ୍ୟବହାର ପାଣିକୁ କରିଦେଲା ଦୂଷିତ । ତେଣୁ ବର୍ତ୍ତମାନ ମଣିଷ ଏପରି ଏକ ସଙ୍କଟର ସମ୍ମୁଖୀନ ହୋଇଛି ଯେ ସେ ଚିନ୍ତାଶୀଳ କେମିତି ଭଲରେ ସମୟ କାଟିବ ।

**ସାଂସ୍କୃତିକ ପ୍ରଦୂଷଣ** (Cultural Pollution)

ଜନସଂଖ୍ୟା ବୃଦ୍ଧି ଓ ପ୍ରାକୃତିକ ସମ୍ପଦଗୁଡ଼ିକର ଅଧିକ ବ୍ୟବହାର ଯୋଗୁଁ ପ୍ରଦୂଷଣର ସୃଷ୍ଟି । ସଭ୍ୟ ମଣିଷ ସଭ୍ୟତାର ପ୍ରସାର କ୍ରମରେ ଜୀବନକୁ ଉପଭୋଗ କରିବା ଲାଗି ପୁରୁଣା ଚିରାଚରିତ ପ୍ରଥାଗୁଡ଼ିକୁ ଭୁଲିଯାଇ ଆଧୁନିକ ସଭ୍ୟତା ଆଡ଼କୁ ମୁହାଁଇଲା । ପୂଜା, ପର୍ବପର୍ବାଣି ଓ ଓଷାବ୍ରତ ଆଦିର ମୁଖ୍ୟ ଉଦ୍ଦେଶ୍ୟ ଥିଲା ଜୀବନକୁ କେମିତି ନିୟନ୍ତ୍ରିତ ଅବସ୍ଥାରେ ଭଲରେ ରହିବା ପାଇଁ କଟାଇବା । ପର୍ବପର୍ବାଣିରେ ସୁସ୍ୱାଦୁ ଖାଦ୍ୟ ଖାଇ ମନୋରଞ୍ଜନ କରିବା । କର୍ମମୟ ଜୀବନରୁ ଓହରି ଯାଇ କିଛି ସମୟ ହାଲୁକାରେ ବିତାଇବା । ଆଜି ତାହା ଅବଶ୍ୟ ପରିଣତ ହୋଇଯାଇଛି ବିଷମୟ ପରିସ୍ଥିତିରେ । ମଣିଷ ଭୁଲିଯାଇଛି ସେକାଳର ଆଚାର ବ୍ୟବହାର, ଲୋକଚଳଣି, ପର୍ବପର୍ବାଣି, ଲୋକବିଶ୍ୱାସ, ନୃତ୍ୟ ସଂଗୀତ ତଥା ସାମଗ୍ରିକ ଜୀବନଧାରାର ରୀତିନୀତି, ସଂସ୍କୃତିର ବିରାଟ ସ୍ରୋତରେ ବହୁ ପ୍ରାଚୀନତା, ବହୁ ପ୍ରତିଷ୍ଠିତ ବିଶ୍ୱାସ, ଲୋକକଥା ଲୋକାଚାର ପରମ୍ପରାର ସ୍ରୋତ ସହିତ ଏକତ୍ରିତ ହୋଇଥାଆନ୍ତି । ବହୁ ନୂତନ ଚିନ୍ତା ଓ ଚେତନା ମଧ୍ୟ ଏହି ସ୍ରୋତ ଧାରାକୁ ଅଧିକ ପ୍ରସାରିତ, ପ୍ରାଣମୟ, ବୁଦ୍ଧିମନ୍ତ ଓ ଶ୍ରୀମନ୍ତ କରିଥାଏ । ଅନେକ କାଳର ଜୀବନବୋଧରେ ଯେଉଁ ବିଶ୍ୱାସ ଓ ଆଦର୍ଶ ପରୀକ୍ଷିତ ହୋଇ ପ୍ରତିଷ୍ଠା ଲାଭ କରିଥାନ୍ତି, ତାହା ସଂସ୍କୃତି ଓ ପରମ୍ପରା ରୂପେ ପରପିଢ଼ିର ପ୍ରାଣ ପ୍ରବାହରେ ପ୍ରକଟିତ ହୁଏ । ଏହି ସଂସ୍କାର ସୁତରାଂ ସମାଜର ଯୁଗ ଯୁଗାନ୍ତରର ସାଧନା ତଥା ଅନୁଭୂତିର ଫଳ ।

ପ୍ରାଚୀନ ସଂସ୍କୃତି ଗରିମାମୟ ଐତିହ୍ୟକୁ ଧାରଣ କରି ବିଶ୍ୱସନୀୟତା ପ୍ରକଟ କରୁଥିବାବେଳେ ନୂତନ ସଂସ୍କୃତି ନିଜସ୍ୱ ରୂପାନ୍ତରିତ ମହିମାରେ ଭାସ୍ୱର ହୋଇ ଉଭା ହେଉଛନ୍ତି । ଏ ଅବସ୍ଥାରେ ମଣିଷ ଅସଭ୍ୟ ହୋଇ ଅଖାଦ୍ୟ ଖାଦ୍ୟ ଖାଇ, ଅଶ୍ରାବ୍ୟ ଶବ୍ଦ ଶୁଣି, ଦୃଷ୍ଟିକଟୁ ଜିନିଷ ଦେଖି ଦୂଷିତ ବାୟୁ, ଜଳ ଓ ମୃତ୍ତିକା ସହ ମିଶି ଏବଂ ବ୍ୟବହାର କରି ହୋଇଯାଇଛି ଅମଣିଷ । ଭୁଲି ଯାଇଛି ଯେ ସଭ୍ୟତା, ସଂସ୍କୃତି, ଐତିହ୍ୟ ଓ ପରମ୍ପରାଗୁଡ଼ିକ ପରସ୍ପରର ପରିପୂରକ । ସଭ୍ୟତା ଏକ ଶକ୍ତ ବୃକ୍ଷ ହେଲେ ସଂସ୍କୃତି ଏହାର ମୂଳ ଓ ପରମ୍ପରା ହେଉଛି ଡାଳ । ଭାରତୀୟ ବୈଦିକ ସଂସ୍କୃତି ହଜାର ହଜାର ବର୍ଷ ତଳର ଯାହାର ନାଭି ହେଉଛି ଆଧ୍ୟାତ୍ମିକତା । ସେଥିପାଇଁ ପ୍ରକୃତିର ସବୁ ସେ ଭଲପାଇ ପୂଜା କରୁଥିଲା । ଆଜି ସେ ସଂସ୍କୃତି ନଷ୍ଟଭ୍ରଷ୍ଟ । ତେଣୁ ମଣିଷ ଠେଲି ହୋଇଛି ଏକ ବିରାଟ ବିପଦର ଗର୍ତ୍ତ ମଧ୍ୟକୁ ।

**ଦୀପାବଳୀର ପ୍ରଦୂଷଣ** (Pollution in Diwali)

ସାଂସ୍କୃତିକ ପରମ୍ପରାନୁଯାୟୀ ଦୀପାବଳୀ ଉତ୍ସବରେ ଦୀପଜାଳି ମନ ଖୁସି କରିବା ଲାଗି ଏ ପର୍ବର ମୁଖ୍ୟ ଆକର୍ଷଣ । ଆଜି କିନ୍ତୁ ଦୀପ ସ୍ଥାନରେ ସ୍ଥାନ ପାଇଛି ମହମବତୀ ବା ସେପରି ଅନ୍ୟ କିଛି ଆଲୋକମାଳା । ତା'ସାଙ୍ଗକୁ ଆମ ପିଲା ଓ ଲୋକମାନେ ବ୍ୟବହାର କରୁଛନ୍ତି ବିଭିନ୍ନ ପ୍ରକାର ବାଣ ବା ଆତସବାଜୀ (Crackers) । ଆଖି ଜଳକା ବାଣର ଆଲୁଅ ସାଙ୍ଗକୁ ବିଭିନ୍ନ ଶବ୍ଦ କାନ ଓ ମନକୁ କରିଦିଏ ଖରାପ । ତା'ପରଦିନ ଖବରକାଗଜରେ ପ୍ରକାଶ ପାଏ ବିଭିନ୍ନ ଲୋକଙ୍କର ନୟନ, କର୍ଣ୍ଣ ଓ ମନର ଆଘାତକୁ ନେଇ ଅନେକ ପ୍ରଶ୍ନ । ଏ ପ୍ରକାର ଯନ୍ତ୍ରଣାଗୁଡ଼ିକୁ କିଏବା ସମାଧାନ କରିବ ? ମୋଟାମୋଟି ଦେଖିବାକୁ ଗଲେ ଦୀପାବଳୀର ଆଲୋକମାଳା ସହ ବାଣଗୁଡ଼ିକ ଆମ ପରିବେଶର ଦୁଇଟି କ୍ଷତି କରିଥାଆନ୍ତି । ତାହା ହେଉଛି - ବାୟୁ ପ୍ରଦୂଷଣ (Air Pollution) ଓ ଶବ୍ଦ ପ୍ରଦୂଷଣ (Noise Pollution) ।

ବିଭିନ୍ନ ପ୍ରକାର ରାସାୟନିକ ଦ୍ରବ୍ୟ ବ୍ୟବହାର କରି ପ୍ରସ୍ତୁତ କରିଥାଏ ବାଣଗୁଡ଼ିକ । କେଉଁ ବାଣ ବିଭିନ୍ନ ପ୍ରକାରର ଆଲୋକ ବାହାର କରିଥାଏ ତ ଆଉ କେଉଁଗୁଡ଼ିକ ସୃଷ୍ଟି କରିଥାନ୍ତି ବିଭିନ୍ନ ପ୍ରକାରର ଶବ୍ଦ । ଏ ରାସାୟନିକ ଦ୍ରବ୍ୟପୂର୍ଣ୍ଣ ବାଣଗୁଡ଼ିକ ଫୁଟିବା ପରେ ସେ ରାସାୟନିକ ଦ୍ରବ୍ୟଗୁଡ଼ିକ ବାୟୁମଣ୍ଡଳରେ ମିଶି ଯାଇଥାଏ । ଆମେ ପ୍ରଶ୍ୱାସରେ ତାହା ଗ୍ରହଣ କରିବାକୁ ବାଧ ହେଉ । ସବୁଠାରୁ ଦୁଃଖ ଓ ପରିତାପର ବିଷୟ ଯେ ଦୀପାବଳୀ ରାତ୍ରିରେ ବାଣ ଫୁଟି ସାରିବା ପରେ ଅନ୍ଧକାର ଆକାଶକୁ ଅନାଇ ଦେଖିଲେ ଆଖିକୁ ଦେଖାଯାଏ ଧୂଆଁପୂର୍ଣ୍ଣ ଆକାଶ । ସେଥିରୁ ଜଣାପଡ଼େ ଯେ କେତେ ପରିମାଣର ବାଣ ଆମେମାନେ ବ୍ୟବହାର କରୁଛେ ! ଆଉ କେତେ ପରିମାଣର ଧୂଆଁ ଆମ ଚାରିପଟେ ଘେରି ରହିଛି ! ଟିକିଏ ଚିନ୍ତା କଲେ ନିଶ୍ଚୟ ମନକୁ ଆସିବ ଯେ ଆମେ ବାୟୁମଣ୍ଡଳକୁ କିପରି ଗୋଟିଏ ଦିନରେ କେତେ ଘଣ୍ଟାରେ କେତେ ଦୂଷିତ କରି ଦେଉଛେ !

ବାୟୁ ପ୍ରଦୂଷଣ ସାଙ୍ଗକୁ ଶବ୍ଦ ପ୍ରଦୂଷଣ । ଦୀପାବଳୀ ଏମିତି ଏକ ଉତ୍ସବରେ ପରିଣତ ହୋଇଛି ଯେ ଏହି ଦିନ ବାୟୁ ପ୍ରଦୂଷଣ ସହ ଶବ୍ଦ ପ୍ରଦୂଷଣ ଏକାଠି ମିଳିମିଶି ଘଟାଇଥାଆନ୍ତି ଧୂମ-କୋଳାହଳମୟ ବାତାବରଣ । ମଣିଷ ପର୍ବପର୍ବାଣିକୁ ଖୁସିରେ କାଟିବ କଅଣ ପ୍ରଦୂଷଣର ଶିକାର କେମିତି ହେଉଛି ତାହା ହିଁ ଅଙ୍ଗେ ଲିଭାଇବା କଥା । ହିସାବ କରି ଦେଖାଯାଇଛି ଯେ ଶବ୍ଦର ମାତ୍ରା ୮୦ ଡେସିବଲ୍ (Decibel)ରୁ

ଅଧିକ ହେଲେ ମଣିଷ ପାଇଁ ହାନିକାରକ । ଶବ୍ଦର ମାପ ସାଧାରଣତଃ ଡେସିବଲ୍ (Decibel)ରେ ପ୍ରକାଶ କରାଯାଏ, ବିଭିନ୍ନ ପ୍ରକାର ଶବ୍ଦର ମାତ୍ରା ଭିନ୍ନ ଭିନ୍ନ (ସାରଣୀ-୧) ।

**ସାରଣୀ ୧**

**ବିଭିନ୍ନ ପ୍ରକାର ଶବ୍ଦର ମାତ୍ରା (ଡେସିବଲ୍ ଏକକରେ)**

| କ୍ରମିକ ନମ୍ବର | ଶବ୍ଦର ପ୍ରକାର | ଶବ୍ଦର ମାତ୍ରା (ଡେସିବଲ୍‌ରେ) |
|---|---|---|
| ୧. | ଶୁଣିବା ମାତ୍ରା | ୧ |
| ୨. | ସାଧାରଣ ପ୍ରଶ୍ୱାସ ବା ନିଃଶ୍ୱାସ | ୧୦ |
| ୩. | ପତ୍ରପବନରେ ହଲିବା | ୨୦ (ସାଧାରଣ) |
| ୪. | ମଣିଷର ଫୁସ୍‌ଫୁସ୍ ଶବ୍ଦ | ୨୫-୩୦ (ସାଧାରଣ) |
| ୫. | ଘରେ କଥାବାର୍ତ୍ତା | ୪୫ (ସାଧାରଣ) |
| ୬. | ହୋଟେଲରେ କଥାବାର୍ତ୍ତା | ୫୦ (ସାଧାରଣ) |
| ୭. | ସାଙ୍ଗମାନଙ୍କ ସହ କଥାବାର୍ତ୍ତା | ୬୦ (ଅଳ୍ପ ଶବ୍ଦ) |
| ୮. | ଗାଡ଼ି-ମୋଟର (Automobile) | ୭୦ (ଅଳ୍ପ ଶବ୍ଦ) |
| ୯. | ଖାଦ୍ୟ ବିକାଳୀ | ୮୦ (ସହ୍ୟ ଶବ୍ଦ) |
| ୧୦. | ନାଏଗ୍ରା ଜଳପ୍ରପାତ (ଭୂମି ପାଖରେ) | ୯୦ (ତୀବ୍ର ଶବ୍ଦ) |
| ୧୧. | ଓଜନିଆ ଗାଡ଼ି-ମୋଟର | ୧୦୦ (ଅସହ୍ୟ ଶବ୍ଦ) |
| ୧୨. | ଜେଟ୍ ବିମାନ | ୧୫୦ (ଅସହ୍ୟ ଶବ୍ଦ) |
| ୧୩. | ଘଡ଼ଘଡ଼ି (Thunder-clap) | ୧୨୦ (ଅସହ୍ୟ ଶବ୍ଦ) |
| ୧୪. | ରେଳଗାଡ଼ି (ଚାଲୁଥିବା ଅବସ୍ଥାରେ) | ୧୩୦ (ଯନ୍ତ୍ରଣାଦାୟକ ଶବ୍ଦ) |
| ୧୫. | ରକେଟ୍ | ୧୮୦ (ଯନ୍ତ୍ରଣାଦାୟକ ଶବ୍ଦ) |

ଆତସବାଜିଗୁଡ଼ିକର ଶବ୍ଦ ମାତ୍ରା ପ୍ରାୟ ୧୨୫ ଡେସିବଲ୍‌ରୁ ଅଧିକ । ତେଣୁ କାନ ଖରାପ ହେବା, ଚିଡ଼ିଚିଡ଼ି ହେବା, ମୁଣ୍ଡ ବିନ୍ଧିବା, ରକ୍ତଚାପ ବୃଦ୍ଧି ହେବା ଓ ମାଆ ପେଟରେ ଛୁଆ ଥିବା ଅବସ୍ଥାରେ ଭ୍ରୂଣର ଗଠନ ଠିକ୍ ନ ରହିବା ଆଦି ସମସ୍ୟା ଶବ୍ଦ ଯୋଗୁଁ ଘଟିଥାଏ । ମୋଟାମୋଟି ବିଭିନ୍ନ ପ୍ରକାର ଅସନ୍ତୁଳିତ ମାନସିକ ସମସ୍ୟା ସହ କେତେକ ଶାରୀରିକ ସମସ୍ୟା ମଧ୍ୟ ପରିଲକ୍ଷିତ ହୋଇଥାଏ । ଆଉ ବାୟୁ ପ୍ରଦୂଷଣ ଯୋଗୁଁ ଆମ ଶ୍ୱାସପ୍ରକ୍ରିୟାରେ ବାଧା ଉପୁଜି ଥାଏ । ବିଶେଷ କରି ଆଜ୍‌ମା ରୋଗୀମାନେ ଶ୍ୱାସ କ୍ରିୟାରେ ବହୁ ଅସୁବିଧା ଭୋଗ କରିଥାଆନ୍ତି, ଅର୍ଥାତ୍- ଦୀପାବଳୀର ବାଣ ବିଭିନ୍ନ ପ୍ରକାର ଶାରୀରିକ ଓ ମାନସିକ ବ୍ୟାଧିର କାରଣ ।

**ବାଣ ଫୁଟାଇବା ଦିଗରେ ସରକାରଙ୍କ ସାବଧାନତା**

(Precautionary Measures of the Government Against Crackers)

ଆମେ ସମସ୍ତେ ଅନୁଧ୍ୟାନ କରିପାରୁଛେ ଯେ ବାଣଗୁଡ଼ିକ ଆମ ଶରୀର ଓ ମନ ପାଇଁ ଖରାପ । ତଥାପି ସେଗୁଡ଼ିକୁ ଫୁଟାଇବା ପାଇଁ ଆମେ ପଛାଉ ନାହୁଁ । ତେବେ କେନ୍ଦ୍ର ସରକାର ସେ ଦିଗରେ କେତେକ ସତର୍କତା ପଦକ୍ଷେପ ନେବାକୁ ଚେଷ୍ଟା କରିଛନ୍ତି । (୧) ପର୍ଯ୍ୟାବରଣ ମନ୍ତ୍ରଣାଳୟ (Ministry of Environment) ବାଣ ପ୍ରସ୍ତୁତକାରୀ କମ୍ପାନୀମାନଙ୍କୁ ପ୍ରତ୍ୟେକ ବାଣରେ କେତେକ ଶବ୍ଦ ସୃଷ୍ଟି କରିପାରୁଛି, ତାହା ଲେଖିବା ପାଇଁ ନିର୍ଦ୍ଦେଶ ଦେଇଛନ୍ତି । (୨) ଦିଲ୍ଲୀରେ ନିର୍ଦ୍ଦେଶ ଦିଆଯାଇଛି ଯେ ରାତି ୧୦ଟା ପରେ ଯେଉଁମାନେ ବାଣ ଆଦି ଫୁଟାଇବେ ପଡ଼ୋଶୀମାନେ ପୋଲିସ୍‌କୁ ସେ ସମ୍ବନ୍ଧରେ ଜଣାଇପାରିବେ । (୩) ଦିଲ୍ଲୀରେ ରହୁଥିବା ଅଧିବାସୀ (Resident Welfare Association ବା RWAs) ବାଣ ନ ଫୁଟାଇବା ଦିଗରେ ପ୍ରଚାର ଅଭିଯାନ ଚଳାଇବା ପାଇଁ ଉଦ୍ୟତା, (୪) ଦିଲ୍ଲୀ ପ୍ରଦୂଷଣ ନିୟନ୍ତ୍ରଣ କମିଟି (Delhi Pollution Control Committee ବା DPCC) ପ୍ରାୟ ୧୨୦୦ ଦିଲ୍ଲୀ ଅଧିବାସୀ ସଂଘକୁ ନିୟୋଜିତ କରି ଦୀପାବଳୀ ରାତିର ନିୟମ ପାଳନ ଦିଗରେ ସଜାଗ ରହିବା ପାଇଁ ସାହାଯ୍ୟ ସହଯୋଗ ଲୋଡ଼ିଛନ୍ତି । (୫) ବାଣଗୁଡ଼ିକର ସର୍ବାଧିକ ଶବ୍ଦ ମାତ୍ରା ୧୨୫ ଡେସିବଲ୍‌ରୁ ଅଧିକ ନହେବା ପାଇଁ ବାଣ ପ୍ରସ୍ତୁତ କମ୍ପାନୀମାନଙ୍କୁ କଡ଼ା ନିର୍ଦ୍ଦେଶ ଦିଆଯାଇଛି । ଏ ନିୟମ ଲଙ୍ଘନ କଲେ ପ୍ରସ୍ତୁତକର୍ତ୍ତାଙ୍କ ବିପକ୍ଷରେ ପୋଲିସ୍‌କୁ ଜଣାଇବା ପାଇଁ ନିର୍ଦ୍ଦେଶ ଦିଆଯାଇଛି । (୬) ପର୍ଯ୍ୟାବରଣ ମନ୍ତ୍ରଣାଳୟ ବାୟୁ ଓ ଶବ୍ଦ ପ୍ରଦୂଷଣ ରୋକିବା ପାଇଁ ଦିଲ୍ଲୀରେ ଦୀପାବଳୀ ପ୍ରଥମେ ଏକ ଶହ ବିଦ୍ୟାଳୟର ଛାତ୍ରଛାତ୍ରୀଙ୍କୁ ନେଇ ପ୍ରଚାର ଅଭିଯାନ ଯୋଜନା ଆରମ୍ଭ କରିଥିଲେ । କିନ୍ତୁ ବର୍ତ୍ତମାନ ତାହା ୧୫୦୦ ପିଲାଙ୍କୁ ନେଇ ଆରମ୍ଭ ହୋଇଛି । (୭) ଦୀପାବଳୀ ପୂର୍ବରୁ ଏବର୍ଷ ପରିବେଶ କ୍ଲବ୍ (Eco Club) ଶିକ୍ଷକମାନଙ୍କୁ ଓ ବିଦ୍ୟାଳୟର ପିଲାମାନଙ୍କୁ ନେଇ ଏକ ସଚେତନାମୂଳକ ଯାତ୍ରା (Rally)ର ପ୍ରଚେଷ୍ଟା କରାଯାଉଛି ।

ଆଶା କରାଯାଉଛି ଦିଲ୍ଲୀର ଏ ଅଭିଯାନ ଆମ ଦେଶର ଅନ୍ୟାନ୍ୟ ରାଜ୍ୟର ଜନସାଧାରଣ ଓ ପିଲାମାନଙ୍କ ଉପରେ ଯଥେଷ୍ଟ ପ୍ରଭାବ ପକାଇବ ବୋଲି । ଏ ସଚେତନତା ଆମକୁ ବାଣଗୁଡ଼ିକଠାରୁ ଦୂରେଇ ନେବ ବୋଲି ବିଶ୍ୱାସ ।

**ଜନସାଧାରଣଙ୍କ ସଚେତନତା ଓ ଭବିଷ୍ୟତ**

(Consciousness of Public and Future)

ସବୁର ମୂଳରେ ସଚେତନତା ଆବଶ୍ୟକ । ସଦ୍‌ଭାବ, ସହଯୋଗ ଓ ସହମତି ହିଁ ଆମକୁ ଆଗେଇ ନେବ । ସେ ନିଜେ ଯେତେବେଳେ ସ୍ୱଇଚ୍ଛାରେ ବିବେକ ଚାଳିତ ହୋଇ ପ୍ରକୃତ ସତ୍ୟ, ଶାନ୍ତି ଓ ଆନନ୍ଦର ଉତ୍ସ ସନ୍ଧାନରେ ବ୍ରତୀ ହେବ ସେତେବେଳେ ଆମ ସମାଜ ସାଂସ୍କୃତିକ ପ୍ରଦୂଷଣ ମୁକ୍ତ ହେବ । ସାମାଜିକ ଚଳଣୀରେ ଭଲମନ୍ଦ, ରୁଚି ଅରୁଚି, ଶାଳୀନ ଅଶାଳୀନ, ସଂସ୍କୃତି ଆହରଣ କଲେ ସଂସ୍କୃତିରେ ପରିବର୍ତ୍ତନ ଅବଶ୍ୟମ୍ଭାବୀ । ତେବେ ସଂସ୍କୃତି କ୍ଷେତ୍ରରେ ଅପମିଶ୍ରଣ ହିଁ ସାଂସ୍କୃତିକ ପ୍ରଦୂଷଣକୁ ତ୍ୱରାନ୍ୱିତ କରୁଛି । ମନୁଷ୍ୟ ସେଥିପାଇଁ ହିଂସା, ନଗ୍ନତା, ଅହମିକା, ଅଶ୍ଳୀଳତା, ପାଶବିକତା, ସ୍ୱାର୍ଥଲିପ୍‌ସା, ଭୋଗଲାଳସା, ଅର୍ଥ ଓ କ୍ଷମତା ଲୋଭ ଆଦି ଆସୁରିକ ପ୍ରକୃତିରେ ଜଡ଼ିତ । ଉଭେଇ ଯାଇଛି ତା' ମନରୁ ମାନବିକତା ଶାଳୀନତା ସ୍ୱାଭାବିକତା ତଥା ମନୁଷ୍ୟୋଚିତ ମନୋଭାବ ।

ସଂସ୍କୃତିର ବୈଜ୍ଞାନିକ ଦୃଷ୍ଟିକୋଣକୁ ହୃଦୟଙ୍ଗମ କରି ପୁନର୍ବାର ପୁରୁଣା ସହ ନୂତନତା ମିଶାଇ ଭଲ ଜିନିଷକୁ ଭଲରେ ଗ୍ରହଣ କରି ପ୍ରୟୋଗ କରିପାରିଲେ ଆମେ ସମସ୍ତେ ହୁଏତ ଭଲରେ ବଞ୍ଚି ପାରିବାର ଆଲୋକ ଦେଖିପାରିବା, ନଚେତ୍ ଏ ଧରାପୃଷ୍ଠରୁ ଡାଇନୋସର୍ ପରି ବଳିଷ୍ଠକାୟ ପ୍ରାଣୀ ଛିନ୍‌ଭିନ୍ନ ଭାବରେ ଲୋପ ପାଇବା ପରି ଆମେ ସମସ୍ତେ ଉଭାନ୍ ହୋଇଯିବା । ତେଣୁ ଆମ ପାଖରେ ଯଥେଷ୍ଟ ସମୟ ଅଛି । ସଂସ୍କୃତିକୁ ମନେ ପକାଇ ଠିକ୍ ଜିନିଷକୁ ଠିକ୍ ଭାବରେ ଅବଲମ୍ବନ କଲେ ଶ୍ରେଷ୍ଠ ପ୍ରାଣୀ ଭାବରେ ଏ ପରିବେଶରେ ବଞ୍ଚିପାରିବା ନାହିଁ କାହିଁକି ?

ସ୍ନାତକୋତ୍ତର ପ୍ରାଣୀ ବିଜ୍ଞାନ ବିଭାଗ
ଉତ୍କଳ ବିଶ୍ୱବିଦ୍ୟାଳୟ, ବାଣୀ ବିହାର
ଭୁବନେଶ୍ୱର - ୭୫୧୦୦୪

---

# ଶିଶୁ

ଓମ୍ ପ୍ରକାଶ ମହାପାତ୍ର

ଶିଶୁ ନୁହେଁ ଦୁର୍ବଳ ନାଚାର ନିଶ୍ଚଳ ବୁଦ୍ଧି ଶୃଗାଳର,
ମାନବର ଅୟମାରମ୍ଭ ଭବିଷ୍ୟ ଶକ୍ତି ଆଧାର ସକଳର ।
କ୍ଷୁଦ୍ର ମଧ୍ୟେ ଆସିଥାଏ ବଟବୃକ୍ଷ ପତ୍ର କାଣ୍ଡ ଧରି ଛାୟା ଜଳ,
ଛୋଟ ସାପେ ବିଷଥାଳ ତକ୍ଷକ ମାଳମାଳ ଦୁକୁଦୁକୀ ଜାଆଁବାଳ ।
ରୂପେ ଥାଏ ବିଶ୍ୱରୂପ ଧମକ ଚମକ ଥାକଥାକ ରାବେ କାକ,
ଗିଳି ଥୋପ ମାତା ଯଶୋଦା ଗୋପ ସ୍ଥିର ବକ ହୋଇଛି ଅବାକ ।
ଭାଷା ତାର ହସକାନ୍ଦ ମନଛୁଆଁ ଖେଳ ନୁହେଁ ମଂଦ ଯୁଦ୍ଧ ଦ୍ୱନ୍ଦ,
ଜାତି ଧର୍ମ ଲିଙ୍ଗ ଭେଦ ଶିଶୁରେ ପ୍ରଭେଦ ବାଦ ଛେଦ ଗଦଗଦ ।
ସଂସାର ଦୁଆରେ ଘରେ ଘରେ ଖେଳାଉଛି ଆନନ୍ଦ ସଂପଦର,
ମା' କ୍ଷୀରେ ଅଧିକାର ତାର ମୁଖେ ଦେଇ କର ସୁରକ୍ଷା ସାକାର ।
ଲୋଡ଼ୁ ନାହିଁ ଟିଣଡବା ପାଉଡ଼ର ବୋତଲରେ ଉପହାର ବଜାରର,
ମରୁଛି ମରିବ ଖାଇ ବିଷ ଉଠି ଧଇଁ ସଇଁ କାଶ ଝାଡ଼ା ବାନ୍ତି ଜର ।
ହଜମ କରୁଛି କରିବ ମା' କ୍ଷୀରେ ଆଶକ୍ତ ଥାଇ ଖାଇ ବିଷ ପୁତନା ସ୍ତନର,
ବିକାଶ ଦାଣ୍ଡେ ମାପଚୁପ ଗପସପ ମାନବ ଶାସକର ଶିଶୁ ଜନ୍ମ ମୃତ୍ୟୁହାର ।
ଲିଙ୍ଗ ଭେଦ କରୁଛି କନ୍ୟା ସନ୍ତାନ ବଧ କାଗଜ କଲମେ ହୋଇ ଅବୈଧ,
ହିଂସ୍ର ପ୍ରବୃତ୍ତି କରୁଛି କ୍ଷତି ରାଗେ ଯୌତୁକ ବ୍ୟାଧି ଦାଉ ସାଧି ।
କନ୍ୟା ନୁହେଁ ଅଲୋଡ଼ା ହେବାକୁ ଦିଫଡ଼ା ଖରଡ଼ା, ମଡ଼ା,
ଜନନୀ ଜାୟା ଦୁହିତା ଓଲଟ ବିଚାରେ ଚାଣକ୍ୟ ମନୁ ସଂହିତା ଲଗାଏ ପୁରୁଷ ଆଖଡ଼ା ।
ଶିକ୍ଷା ସ୍ୱାସ୍ଥ୍ୟ ସ୍ୱାଧୀନ ବିକାଶ ଧାରା ହୃଷ୍ଟପୁଷ୍ଟ ପରିପୃଷ୍ଟ ଶିଶୁ ଚାରା,
ମାନବ ସଂବଳ ଶୃଙ୍ଖଳ ସଂଖୁଳେ ସକଳ ଭବିଷ୍ୟ ସକାଳ ସଂଧ୍ୟା ତାରା ।
ସ୍ୱାଧୀନ ସେ ଆସିଥାଏ ଅମୃତ ବେଳ ବର୍ଷ ମାସ ଦିନ ଦଣ୍ଡ ଘଡ଼ି
ଦାରିଦ୍ର୍ୟ ରୋଗେ ଶିଶୁ ସଂପଦ ବିପଦେ ପଡ଼ି ଖୋଜେ ସୁରକ୍ଷା ଦଉଡ଼ି

କିଶାବିକା ଦାଣ୍ଡେ ଖେଳୁଛି ଶିଶୁ କେରାଣ୍ଡି ଛାଡୁଛି ମା' କୋଳ ଏରୁଣ୍ଡି,
ଏଡ୍‌ସ ରୋଗେ ଶିଶୁ ଦଣ୍ଡି ପରକୀୟା ପ୍ରୀତି କରେ ଯୁବ ଯିବା ବେଳକାଳ ଉଣ୍ଡି ।
ଅନାଥ ବିକଳାଙ୍ଗ ଅବୈଧ ରଙ୍ଗେ ଖେଳେ ଶିଶୁ ମକରନ୍ଦ ଦ୍ୱନ୍ଦେ ଶିକ୍ଷା ଦୀକ୍ଷା ଦାଣ୍ଡେ ଦାଣ୍ଡେ
ଲାଲମହଲେ ଚେଙ୍କା ପଡୁଛି ଛାଲେ ଶିଶୁ ଶ୍ରମେ ଆଇନ ଖିଲାପ ଦୃଶ୍ୟ ପାହୁଣ୍ଡେ ପାହୁଣ୍ଡେ ।
ଟିଲେଇବଣୀ ଶିଶୁ ହତ୍ୟା କାହାଣୀ ହୃଦୟ ହେଉଛି ହାଣି,
ବିଚାର ବଂଧରେ ପାଷାଣ୍ଡ ଚୁଡ଼ାମଣି ଖଲାସେ ପେଶିବେ ପୁଣି ।
ମଣିନାଗ ପର୍ବତ ହୁଡ଼ାରେ ଖେଳୁଛି ନାଚୁଛି ଶିଶୁ ପ୍ରେତ ଆଖଡ଼ା
ନପାଇଲା ଦଣ୍ଡ ନଲିଭିଲା ଦୁଃଖ ମନୁ ପିଲା ଛେଉଣ୍ଡ ରାତି ପାହେ ଖାଡ଼ା ଖାଡ଼ା ।
ସଂସାରୁ ଅନ୍ୟାୟ ଅତ୍ୟାଚାର ହିଂସା ବିଦ୍ୱେଶ ନାନା ପ୍ରକାରର କୁକୁର ଲାଞ୍ଜର
ଶିଶୁ ହିଁ କରିପାରେ ନିସ୍ତାର ଦୁର୍ନୀତି ଅସହାୟ ଜରା ବ୍ୟାଧି ଯୌତୁକର ।
ଉଦୟ ବାସୁଦେବ କୁଟୁମ୍ବର ହୋଇଲେ ଶିଶୁ ବିକାଶେ ଆଦର ନିରନ୍ତର
ରଖି ନିରିମଳ ପରିବେଶ କରିଲେ ସୁସ୍ଥ ଶିଶୁ ଭବିଷ୍ୟବାସ ଉଦୟ ବିଶ୍ୱ ଐକ୍ୟର ।
ଆସ ଶିଶୁ ବସ ହସିଖେଳି ଦେଖ ଦୁନିଆଁ ଶନି ରାହୁ ଗ୍ରାସେ ଚାନ୍ଦ
ପ୍ରେମ ରଜକୁ ବାନ୍ଧ ମିଶାଇ କାନ୍ଧକୁ କାନ୍ଧ ମନୁ ପୋଛି ମଂଦ ।
ପାଇବ ଆନନ୍ଦ ଛିଡ଼ାଇ ଲନ୍ଦଫନ୍ଦ ଧର୍ମାନ୍ଧ ସ୍ୱାର୍ଥାନ୍ଧ
କର ଏକ ନୂଆ ସଂବନ୍ଧ ବିବାହ ନିର୍ବନ୍ଧ ପରମାନନ୍ଦ ।
ଶିଶୁ ଶିକ୍ଷା ଦୀକ୍ଷା ନହେଉ ଏ ଦେଶ ଜାତି ଭିକ୍ଷା
ତେବେ ହେବ ଭବିଷ୍ୟ ସୁରକ୍ଷା ।

ଉପଶାସନ ସଚିବ
ସୂଚନା ଓ ଲୋକ ସଂପର୍କ ବିଭାଗ
ଭୁବନେଶ୍ୱର

 

# ଓଡ଼ିଶାର ପର୍ଯ୍ୟଟନ ମାନଚିତ୍ରରେ ଧଉଳି ପାହାଡ଼

ପଙ୍କଜ ସାହୁ

ଓଡ଼ିଶା ତଥା ସର୍ବଭାରତୀୟ ପର୍ଯ୍ୟଟନ ମାନଚିତ୍ରରେ ଐତିହ୍ୟ ସାଂସ୍କୃତିକ ପୀଠ ଧଉଳି ପାହାଡ଼ ଏକ ପ୍ରମୁଖ ସ୍ଥାନ ଅଧିକାର କରିଅଛି । ଏକାମ୍ରେଶ୍ୱର ଶ୍ରୀଲିଙ୍ଗରାଜ ମହାଦେବଙ୍କଠାରୁ ଦକ୍ଷିଣରେ ଅନତିଦୂରରେ ଚକ୍ରବାଳ ଭେଦି ବହୁ କୀର୍ତ୍ତି ସ୍ମୃତିପୂତ ଶିଳାସ୍ତୂପ ଧଉଳି ପାହାଡ଼ ପରିଦୃଷ୍ଟ ହୋଇଥାଏ । ଏକାମ୍ରକ୍ଷେତ୍ର ଭୁବନେଶ୍ୱରଠାରୁ ଶ୍ରୀକ୍ଷେତ୍ର ପୁରୀ ଅଭିମୁଖେ ପ୍ରଲମ୍ବିତ ଜଗନ୍ନାଥ ସଡ଼କରେ ଚାରି କି.ମି. ଯାଇ ଦୟାସେତୁ ଅତିକ୍ରମ କରିବା ପରେ ସେଠାରୁ ଦକ୍ଷିଣ-ପଶ୍ଚିମକୁ ଚାରି କି.ମି. ଦୂରରେ ଅବସ୍ଥିତ ପ୍ରଥିତଯଶା ଧଉଳିପାହାଡ଼ - ପକ୍କା ରାସ୍ତାଦ୍ୱାରା ସଂଯୁକ୍ତ ହୋଇଅଛି । ଓଡ଼ିଶାର ରାଜଧାନୀ ଭୁବନେଶ୍ୱରଠାରୁ ଉଭବ ୨୦୩ ନମ୍ବର ଜାତୀୟ ରାଜପଥ ପାର୍ଶ୍ୱରେ ପୁଣ୍ୟତୋୟା ଦୟାନଦୀ ବିଧୌତ ଏହି ଧଉଳି ପାହାଡ଼ ସମୃଦ୍ଧ ଓଡ଼ିଶାର ଅତୀତ ଇତିହାସର ବହୁ ଗୌରବୋଜ୍ଜ୍ୱଳ ସ୍ମୃତିର ମୂକସାକ୍ଷୀ ରୂପେ ଦଣ୍ଡାୟମାନ । ଐତିହ୍ୟପୀଠ ଏହି ଧଉଳି ଏକାଦିକ୍ରମେ ବହୁ ନରପତି ଓ ବହୁ ରାଜବଂଶର ଉତ୍ଥାନ, ପତନ ତଥା ବିଲୟର ନୀରବଦ୍ରଷ୍ଟା ଅଟେ ।



ଅତୀତରେ କଳିଙ୍ଗ ସାଗର (ସାମ୍ପ୍ରତିକ ବଙ୍ଗୋପସାଗର)ର କୂଳେ କୂଳେ ଉତ୍ତରରେ ମହାନଦୀଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ପରିବ୍ୟାପ୍ତ ସୁବିଶାଳ ସ୍ୱାଧୀନ କଳିଙ୍ଗ ସାମ୍ରାଜ୍ୟ ପ୍ରତିଷ୍ଠିତ ଥିଲା । ସୁବିସ୍ତୃତ ସମୁଦ୍ର ବେଳା ପ୍ଳାବିତ ଏହି କଳିଙ୍ଗର ସାଧବଗଣ ସାମୁଦ୍ରିକ ବାଣିଜ୍ୟ ଦ୍ୱାରା କଳିଙ୍ଗକୁ ବେଶ ବିଭବଶାଳୀ ତଥା ଅପରାଜେୟ ସାମ୍ରାଜ୍ୟରେ ପରିଣତ କରିବାରେ ସହାୟକ ହୋଇଥିଲା । ଖ୍ରୀଷ୍ଟିୟ ତୃତୀୟ ଶତକରେ ରଚିତ ବୌଦ୍ଧଗ୍ରନ୍ଥ 'ଗଣ୍ଡବ୍ୟୂହ ଅବତଂସକ ସୂତ୍ର' ପ୍ରଦତ୍ତ ପ୍ରାମାଣିକ ତଥ୍ୟାନୁଯାୟୀ ଉକ୍ତ ସମୃଦ୍ଧିଶାଳୀ କଳିଙ୍ଗର ରାଜଧାନୀ 'ତୋଷାଳି' ଆଲୋଚ୍ୟ ଧଉଳିଗିରି ସନ୍ନିକଟରେ ଅବସ୍ଥିତ ଥିଲା । କଳିଙ୍ଗ ସାମ୍ରାଜ୍ୟର ଉତ୍ତର ସୀମାବସ୍ଥିତ ମଗଧ ରାଜ୍ୟର ସାମୁଦ୍ରିକ ବାଣିଜ୍ୟ ପାଇଁ ନିଜସ୍ୱ ସୁଯୋଗ କିଛି ନଥିଲା । ମଗଧ ବଣିକର ବହିର୍ବାଣିଜ୍ୟ ସାଧାରଣତଃ କଳିଙ୍ଗ ବନ୍ଦର/ସାଧବମାନଙ୍କ ଦ୍ୱାରା ନିୟନ୍ତ୍ରିତ ହେଉଥିଲା । ତେଣୁ ମଗଧର ଅର୍ଥନୀତିକୁ ସୁଦୃଢ଼ କରିବା ଅଭୀପ୍ସାରେ ସାମୁଦ୍ରିକ ବାଣିଜ୍ୟର ପ୍ରତ୍ୟକ୍ଷ ସୁବିଧା ହାସଲ ନିମିତ୍ତ ଐଶ୍ୱର୍ଯ୍ୟଶାଳୀ କଳିଙ୍ଗକୁ ମୟୂର୍ୟ ସାମ୍ରାଜ୍ୟଭୁକ୍ତ କରିବା ଅଭିପ୍ରାୟରେ ସାମ୍ରାଜ୍ୟବାଦୀ ଅଶୋକ କଳିଙ୍ଗ ଆକ୍ରମଣ କରିଥିଲେ । ଏହି କଳିଙ୍ଗ ଯୁଦ୍ଧ ଥିଲା ସମଗ୍ର ବିଶ୍ୱ ଇତିହାସରେ ଏକ କ୍ରାନ୍ତିକାରୀ ଘଟଣା । ଖ୍ରୀ:ପୂ: ୨୬୧ରେ ଏହି ଧଉଳିଠାରେ ସଂଘଟିତ ଲୋମହର୍ଷଣକାରୀ କଳିଙ୍ଗ ଯୁଦ୍ଧରେ ମାତୃଭୂମିର ସମ୍ମାନ ତଥା ସ୍ୱାଧୀନତା ରକ୍ଷା ପରିପ୍ରେକ୍ଷୀରେ ପ୍ରତିଜ୍ଞାବଦ୍ଧ ହୋଇ, ଅଶୋକଙ୍କର ବିଶାଳ ସୈନ୍ୟବାହିନୀର ପ୍ରତିରୋଧ କରି ଲକ୍ଷାଧିକ ପରାକ୍ରମଶାଳୀ ଯୋଦ୍ଧା ଆତ୍ମୋତ୍ସର୍ଗ କରିଥିଲେ । ଏହି ରକ୍ତାକ୍ତ ସଂଘର୍ଷରେ ପ୍ରାୟ ଦେଢ଼ ଲକ୍ଷ ସୈନ୍ୟ ଆହତ/ ବିକଳାଙ୍ଗ ହେବା ସହିତ ସେହି ଅନୁପାତରେ ଅଗଣିତ ନିରୀହ ଦେଶପ୍ରେମୀ ଜନତା ବନ୍ଦୀ ହୋଇଥିଲେ । ଧଉଳି ଶୀର୍ଷରୁ ବୀର ରକ୍ତରେ କର୍ଦ୍ଦମାକ୍ତ ଯୁଦ୍ଧଭୂମିରେ କୁଢ଼ କୁଢ଼ ଶବ, ବୀରଗତିପ୍ରାପ୍ତ ଯୋଦ୍ଧାଙ୍କର ଆତ୍ମୀୟସ୍ୱଜନମାନଙ୍କର କରୁଣ କ୍ରନ୍ଦନ ଧ୍ୱନି, ଆହତମାନଙ୍କର ଯନ୍ତ୍ରଣାର୍ତ୍ତ ଚିତ୍କାରର ଇନ୍ଦ୍ରିୟାନୁଭୂତି ଅଶୋକଙ୍କ ହୃଦୟରେ ଗଭୀର ରେଖାପାତ କରିଥିଲା ।

ଅସ୍ତ୍ରବଳରେ ଅଶୋକ ଜୟଲାଭ କଲେ ସତ, ହେଲେ କଳିଙ୍ଗମାନଙ୍କର ମୃତ୍ୟୁ ବଦଳରେ ଜୀବନ ଓ ଯୁଦ୍ଧ ପରିବର୍ତ୍ତେ ଶାନ୍ତି ପ୍ରତିଷ୍ଠା ପାଇଁ ଅନନ୍ୟ ପ୍ରତିସ୍ପର୍ଦ୍ଧା ପ୍ରଦର୍ଶନ କରି ଦିଗ୍‌ବିଜୟ ଲିପ୍ସୁ ଅଶୋକ : ବିଜୟର ସ୍ୱାଦ ପରିବର୍ତ୍ତେ ପରାଜୟର ଗ୍ଳାନି ମର୍ମେ ମର୍ମେ ଅନୁଭବ କରିଥିଲେ । କଳିଙ୍ଗ ଯୁଦ୍ଧ ମାନବ ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ

ବ୍ୟତିକ୍ରମ ଥିଲା । ଏହି ଯୁଦ୍ଧରୁ ପିତୃହନ୍ତା, ଭ୍ରାତୃହନ୍ତା, ନରଘାତକ ଚଣ୍ଡାଶୋକ ଏକ ମହାନ ଶିକ୍ଷା ଲାଭ କରିଥିଲେ । ସେ ଅନୁତାପ ଦଗ୍ଧ ହୋଇ ସ୍ୱୀକାର କରିଥିଲେ ଯେ 'ହିଂସା ପ୍ରଣୋଦିତ ତରବାରୀର ଜୟ - ଜୟ ନୁହେଁ, ହୃଦୟର ଜୟ ହିଁ ପ୍ରକୃତ ଜୟ ।' ଏହା ହୃଦୟଙ୍ଗମ କରି ହୃଦୟଜୟ ପାଇଁ ସେ ସତ୍ୟ, ଶାନ୍ତି, ଦୟା, କରୁଣାର ପ୍ରମୂର୍ତ୍ତ ପୂଜକ ଧର୍ମାଶୋକ ପାଲଟି ଗଲେ । ଚଣ୍ଡାଶୋକରୁ ଧର୍ମାଶୋକ ହେବା ପାଇଁ ଏହି ଶାନ୍ତିପୀଠ ଧଉଳିଗିରି ତାଙ୍କୁ ଅନୁପ୍ରେରିତ କରିଥିଲା । କଳିଙ୍ଗ ଯୁଦ୍ଧ ଥିଲା ଅଶୋକ ଶାସନର ଶେଷ ଯୁଦ୍ଧ । ସାଧାରଣ ଜନତା ସମ୍ମୁଖରେ ନିଜକୁ ବିଶ୍ୱାସନୀୟ ଭାବେ ଉପସ୍ଥାପନ ପାଇଁ ସେ ଏଠାରେ ଅସ୍ତ୍ର ପରିତ୍ୟାଗ ପୂର୍ବକ ବୌଦ୍ଧଧର୍ମ ଗ୍ରହଣ କରି ରାଜର୍ଷି ଅଶୋକରେ ରୂପାନ୍ତରିତ ହୋଇଥିଲେ । ଏତାଦୃଶ ପରିବର୍ତ୍ତନ ତାଙ୍କୁ ବିଶ୍ୱ ଇତିହାସରେ ଅକ୍ଷୟ ଗୌରବର ଅଧିକାରୀ କରାଇଥିଲା ।

ବୌଦ୍ଧଧର୍ମ ଗ୍ରହଣ ପରେ ସେ ନିଜକୁ ଦେବାନାଂ ପ୍ରିୟ ପ୍ରିୟଦର୍ଶୀ ଅଶୋକ ନାମରେ ପରିଚିତ କରାଇବା ସହ ବହୁବିଧ ଜନକଲ୍ୟାଣ କାର୍ଯ୍ୟକ୍ରମ ହାତକୁ ନେଇଥିଲେ । ସେ କଳିଙ୍ଗର ରାଜଧାନୀ ତୋଷାଳିକୁ ମୟୂର୍ୟ ସାମ୍ରାଜ୍ୟର ଏକପ୍ରଧାନ ଶାସନ କେନ୍ଦ୍ର ତଥା ବୌଦ୍ଧଧର୍ମ ଦର୍ଶନ ପ୍ରଚାରର ଏକ ମହାନ ପୀଠରେ ପରିଣତ କରିଥିଲେ । ତୋଷାଳି ନଗର ଉତ୍ତର ସୀମା ତଥା ପୂତସଲିଳା ଦୟାନଦୀର ଦକ୍ଷିଣତଟ ମଧ୍ୟବର୍ତ୍ତୀ ସ୍ଥାନରେ ସମାନ୍ତରାଳ ଭାବେ ଧର୍ମ ବିଜୟ ଘୋଷଣାକରି ବିରାଟ ମୟୂର୍ୟ ସାମ୍ରାଜ୍ୟର ସୀମାନ୍ତବର୍ତ୍ତୀ ପ୍ରଦେଶମାନଙ୍କରେ ଗିରିଗାତ୍ର ତଥା ଶିଳାସ୍ତମ୍ଭରେ ଧର୍ମାନୁଶାସନମାନ ଖୋଦନ କରିବା ସହିତ ତୋଷାଳି ସନ୍ନିକଟବର୍ତ୍ତୀ ବିଶ୍ୱବିସ୍ମୟ ସୃଷ୍ଟିକାରୀ ଏହି ଧଉଳିର ଦକ୍ଷିଣ ସୀମାନ୍ତବର୍ତ୍ତୀ ପାହାଡ଼ରେ ଖ୍ରୀ:ପୂ: ୨୫୭ରେ ଧର୍ମାନୁଶାସନ ଉତ୍କୀର୍ଣ୍ଣ ପୂର୍ବକ ତାହା ମାଧ୍ୟମରେ ତୋଷାଳିରେ ନିଯୁକ୍ତ କୁମାରାମାତ୍ୟ, ମହାମାତ୍ର, ନଗର ବ୍ୟବହାରକ ପ୍ରମୁଖ ରାଜକର୍ମଚାରୀଙ୍କୁ ସୁଶାସନ ପ୍ରବର୍ତ୍ତନ ନିମନ୍ତେ ଆନୁଷଙ୍ଗିକ ନିର୍ଦ୍ଦେଶନା ଦେଇଥିଲେ । ଉକ୍ତ ଶିଳାଭିଲେଖ 'ଧଉଳିଲେଖ' ନାମରେ ଏବେ ସର୍ବଜନବିଦିତ । ବୌଦ୍ଧଧର୍ମରେ ଦୀକ୍ଷିତ ଅଶୋକ - ବୁଦ୍ଧଜନ୍ମର ଅଲୌକିକତା ସହ ସମ୍ପର୍କିତ ତଥା ବୌଦ୍ଧଧର୍ମର ପବିତ୍ର ପ୍ରତୀକ ରୂପେ ବିବେଚିତ ହସ୍ତୀକୁ ରାଜକୀୟ ସଙ୍କେତ ଭାବେ ଗୁରୁତ୍ୱ ଦେଇ, ଧର୍ମପ୍ରଚାର ଓ ଶାସନ ନିୟନ୍ତ୍ରଣ ଉଦ୍ଦେଶ୍ୟରେ ଉତ୍କୀର୍ଣ୍ଣ ଧଉଳିଲେଖର ପଶ୍ଚିମ ପାର୍ଶ୍ୱରେ କିଞ୍ଚିତ ଉପରକୁ ପ୍ରସ୍ତରକାଟି ଏକ ବିରାଟ ହସ୍ତୀର ସମ୍ମୁଖଭାଗ ଖୋଦନ କରିଥିଲେ ଯାହାକି ମୟୂର୍ୟ ଯୁଗୀୟ ସ୍ଥାପତ୍ୟ କଳାକୃତିର ପ୍ରାଚୀନତମ ନିଦର୍ଶନ ଅଟେ । ଏତଦ୍‌ବ୍ୟତୀତ ଦୟାତୀର ସ୍ପର୍ଶ କରୁଥିବା ଉଚ୍ଚତମ ପାହାଡ଼ ଓ ଆଲୋଚ୍ୟ ଲେଖ ଖୋଦିତ ହସ୍ତୀ ପାହାଡ଼ରେ ଅଶୋକ ଦୁଇଟି ବୃହତ୍ ବୌଦ୍ଧସ୍ତୂପ ନିର୍ମାଣ କରିବା ତଥା କତିପୟ ଚୈତ୍ୟସ୍ତମ୍ଭ ପୋଥିତ କରିବା ସହ ଏହି ଦୁଇ ପାହାଡ଼ ମଧ୍ୟବର୍ତ୍ତୀ ନିମ୍ନୋଚ୍ଚ ପାହାଡ଼ର ଉପତ୍ୟକାରେ ଏକ ବୌଦ୍ଧଧର୍ମ ବିହାର ସ୍ଥାପନ କରିଥିଲେ । ବିଶେଷତଃ ବୌଦ୍ଧ ଭିକ୍ଷୁମାନଙ୍କ ଆଶ୍ରୟ ତଥା ବୌଦ୍ଧ ଶ୍ରମଣମାନଙ୍କ ବର୍ଷାବାସ ନିମିତ୍ତ ଧଉଳିଗାତ୍ରରେ ଇତଃସ୍ତତଃ ବହୁ ସଂଖ୍ୟକ ଗୁମ୍ଫା ଖୋଦନ କରିଥିଲେ । ସର୍ବୋପରି ପ୍ରିୟଦର୍ଶୀ ଶାସନର ବିଂଶତି ବର୍ଷରେ ଧଉଳି ପାହାଡ଼ର ଅନତି ଦୂରରେ ଅବସ୍ଥିତ ଶାକ୍ୟମୁନି ଗୌତମବୁଦ୍ଧଙ୍କ ଜନ୍ମସ୍ଥାନ ଲେମ୍ବେଇ ପ୍ରଗଣାନ୍ତର୍ଗତ କପିଳବସତି - କପିଳବାସ୍ତୁ - କପିଳେଶ୍ୱରରେ ପୂଜାର୍ଚ୍ଚନା ପୂର୍ବକ ସେଠାରେ ବୁଦ୍ଧଜନ୍ମର ପ୍ରାମାଣିକତା ବହନ କରିଥିବା ସ୍ୱୀକୃତି/ସ୍ମୃତିଫଳକ ସଂଯୁକ୍ତ ଏକ ସ୍ତମ୍ଭ ସ୍ଥାପନ କରିଥିଲେ । ଧଉଳି ତଥା ପରିପାର୍ଶ୍ୱରେ ଅଶୋକ ଏତାଦୃଶ ବୌଦ୍ଧକୀର୍ତ୍ତି ସମୂହ ସ୍ଥାପନପୂର୍ବକ ଧଉଳିକୁ ଶାନ୍ତି ଅହିଂସାର ପ୍ରମୁଖ ବୌଦ୍ଧ ପୀଠ ରୂପେ ଗଢ଼ି ତୋଳିଥିଲେ ।

ଏକଦା ଏହି ଧଉଳି ପାହାଡ଼ - ସୁରଭଗିରି ନାମରେ ଐତିହାସିକ ସ୍ୱାକ୍ଷର ବହନ କରିଥିଲା । ଖ୍ରୀଷ୍ଟିୟ ତୃତୀୟ ଶତକରେ ରଚିତ 'ଗଣ୍ଡବ୍ୟୂହ ଅବତଂସକ ସୂତ୍ର'ର ତଥ୍ୟାନୁଯାୟୀ କଳିଙ୍ଗର ଗୌରବମୟ ରାଜଧାନୀ ତୋଷାଳିନଗର ଉତ୍ତର ପାର୍ଶ୍ୱସ୍ଥିତ ସୁରଭଗିରିର ଶିଖର ଦେଶରେ ଏକ ଭେଷଜ ଉପବନ ଓ ପ୍ରମୋଦ ଉଦ୍ୟାନ ଥିବା ଇତିହାସ ସାକ୍ଷ୍ୟ ପ୍ରଦାନ କରିଥାଏ । ଏହି ସମଗ୍ର ପାର୍ବତ୍ୟାଞ୍ଚଳ ଘନଭେଷଜ ବନସ୍ପତିରେ ପରିପୂର୍ଣ୍ଣ ଥିଲା । ଆଲୋଚ୍ୟ ସୁରଭଗିରି ସନ୍ନିକଟରେ ଅର୍ଘ୍ୟକା ବରାଟିକା ମଠ ପ୍ରତିଷ୍ଠା ହୋଇଥିବାର ପ୍ରମାଣ ଭୌମକର ବଂଶୀ ସମ୍ରାଟ ଶାନ୍ତିକର ଦେବଙ୍କ ରାଜତ୍ୱର ୯୩ ଭୌମ ସମ୍ବତ (ଆନୁମାନିକ ଅଷ୍ଟମ ଶତାବ୍ଦୀର ପ୍ରାରମ୍ଭ)ରେ ସୁରଭଗିରିର ଏକ ଗୁମ୍ଫାରେ ଖୋଦିତ ଛଅଧାଡ଼ି ବିଶିଷ୍ଟ ଶିଳାଲେଖରୁ ମିଳିଥାଏ । ପ୍ରୋକ୍ତ ମଠରେ ଅବସ୍ଥାନ କରୁଥିବା ଆୟୁର୍ବେଦଜ୍ଞ ଧନ୍ୱନ୍ତରୀଗଣ ଓ ଗୁମ୍ଫାବାସୀ ମୁନିରଷିଗଣ ସୁରଭଗିରି ଉପଲବ୍ଧ ଭେଷଜ ବନସ୍ପତିରୁ ଆୟୁର୍ବେଦୀୟ ଔଷଧ ପ୍ରସ୍ତୁତ କରୁଥିଲେ । ଔଷଧ ପ୍ରସ୍ତୁତି ନିମିତ୍ତ ଉକ୍ତ ଗିରିବକ୍ଷ ଖୋଦିତ ଗୁମ୍ଫାମାନଙ୍କ ଚଟାଣରେ କ୍ଷୁଦ୍ରବୃହତ୍ ଖଲ ଆକୃତିର ଗର୍ତ୍ତସବୁ ଦୃଷ୍ଟିଗୋଚର ହୋଇଥାଏ । ଭେଷଜ ଗୁଳ୍ମର ସୌରଭରେ ସୁରଭିତ ହେଉଥିବା ଉକ୍ତ ପାର୍ବତ୍ୟଭୂଖଣ୍ଡ ସୁରଭଗିରି ନାମ ବହନ କରିବା ଯଥାର୍ଥ ଅଟେ । 'ଗଣ୍ଡବ୍ୟୂହ' ଗ୍ରନ୍ଥାନୁଶୀଳନରୁ ଜଣାଯାଏ ଯେ ଏଠାରେ 'ସୁରଭଗିରି' ନାମକ ଏ ପ୍ରଖ୍ୟାତ ବୌଦ୍ଧ ବିହାର ଥିଲା । ଅଶୋକଙ୍କ କର୍ତ୍ତୃକ ପ୍ରତିଷ୍ଠିତ ଉକ୍ତ ବୌଦ୍ଧବିହାରର ପ୍ରାମାଣିକତା ଶାନ୍ତିକର ଦେବଙ୍କ ଦ୍ୱାରା ଉତ୍କୀର୍ଣ୍ଣ ଗୁମ୍ଫାଭିଲେଖଦ୍ୱାରା ସମର୍ଥିତ ହୋଇଅଛି । ସେ ଯାହା ହେଉନା କାହିଁକି କଳିଙ୍ଗର ସମୃଦ୍ଧ ରାଜଧାନୀ ତୋଷାଳି - କାଳକ୍ରମେ ଲୋକମୁଖରେ ଧଉଳି ନାମ ବହନ କରି ଓଡ଼ିଆ ଜାତିର ଗୌରବୋଜ୍ଜ୍ୱଳ ସ୍ମୃତି ବିଜ୍ଞପିତ କରିବା ସହିତ ଏହାର ସମୀପବର୍ତ୍ତୀ ସୁରଭଗିରି - ଧଉଳିଗିରି ନାମରେ ଖ୍ୟାତିଲାଭ କରିଆସିଛି । ସେହି ହେତୁ ଐତିହାସିକମାନେ ତୋଷାଳି, ସୁରଭଗିରି ଓ ଧଉଳିକୁ ଏକ ଓ ଅଭିନ୍ନ ବୋଲି ପ୍ରମାଣିତ କରିଅଛନ୍ତି । ଧଉଳିର ଏକ ଗୁମ୍ଫାରେ ଶାନ୍ତିକର ଦେବଙ୍କ ଦ୍ୱାରା ଉତ୍କୀର୍ଣ୍ଣ ଅଭିଲେଖରୁ ପ୍ରତ୍ୟୟ ଜନ୍ମେ ଯେ ଅଷ୍ଟମ

ଶତାବ୍ଦୀ ପର୍ଯ୍ୟନ୍ତ ଧଉଳି - କଳିଙ୍ଗର ଏକ ପ୍ରଭାବଶାଳୀ ଶାସନ କେନ୍ଦ୍ର ରୂପେ ବଳବତ୍ତର ରହିଥିଲା ।

ପରବର୍ତ୍ତୀ କାଳରେ ବ୍ରାହ୍ମଣ୍ୟଧର୍ମର ପୁନରୁତ୍‌ଥାନ ଫଳରେ ଧଉଳିରେ ବୌଦ୍ଧ ପ୍ରଭାବ କ୍ରମଶଃ ସଂକୁଚିତ ହୋଇଗଲା । ପବିତ୍ରନୀରା ଦୟାନଦୀ ପାର୍ଶ୍ୱରେ ସମାବିଷ୍ଟ ତିନିଗୋଟି କ୍ଷୁଦ୍ରବୃହତ୍ତ ପାହାଡ଼ ମଧ୍ୟରୁ ଦୟାତୀର ସ୍ପର୍ଶ କରୁଥିବା ଭୂପତନରୁ ୨୫୦ ଫୁଟ ଉଚ୍ଚତା ବିଶିଷ୍ଟ ଉଚ୍ଚତମ ପାହାଡ଼ଟି ଧଉଳି ପାହାଡ଼ ନାମରେ ସର୍ବଜନାଦୃତି ଲାଭ କରିବା ସହିତ ଏଇ ପାହାଡ଼ ଶୀର୍ଷ ପୂର୍ବ ନାସିରେ ବୌଦ୍ଧ ଆଧିପତ୍ୟ ପ୍ରତିହତ କରିବା ଉଦ୍ଦେଶ୍ୟରେ ଧବଳେଶ୍ୱର ମହାଦେବ ମନ୍ଦିର ନିର୍ମିତ ହେଲା । ପାହାଡ଼ର ନାମାନୁସାରେ ମହାଦେବଙ୍କ ନାମ ଧବଳେଶ୍ୱର ହେଲା କି ଧବଳେଶ୍ୱରଙ୍କ ନାମାନୁଯାୟୀ ପାହାଡ଼ର ନାମ ଧଉଳି ପାହାଡ଼ ହେଲା, ତାହା ଏ ଯାବତ୍ ସଠିକ୍ ନିର୍ଦ୍ଧାରଣ କରାଯାଇପାରି ନାହିଁ । ଏହି ଧଉଳି ପାହାଡ଼ର ପଶ୍ଚିମ ପାର୍ଶ୍ୱ ପାଦଦେଶରେ ବହିରଙ୍ଗେଶ୍ୱର ମହାଦେବ ଓ ସିଦ୍ଧ ବିନାୟକ ମନ୍ଦିର ଗଢ଼ି ଉଠିଲା । ଅଶୋକଙ୍କ ଧର୍ମାନୁଶାସନ ବହନ କରିଥିବା ଦକ୍ଷିଣ ସୀମାନ୍ତବର୍ତ୍ତୀ ପାହାଡ଼ରେ ପ୍ରିୟଦର୍ଶୀ ରାଜତ୍ୱର ଗର୍ବଗୌରବର ମୂକସାକ୍ଷୀ ରୂପେ ବିଦ୍ୟମାନ ଶିଳାହସ୍ତୀକୁ ମହାଭାରତ ଯୁଦ୍ଧ ପ୍ରସିଦ୍ଧ 'ଅଶ୍ୱତ୍‌ଥାମା ହସ୍ତୀ' ନାମରେ ଅଭିହିତ କରିବା ସହିତ ସଂପୃକ୍ତ ପାହାଡ଼ଟି ଅଶ୍ୱତ୍‌ଥାମା ପାହାଡ଼ ନାମ ବହନ କଲା । ପୁନଶ୍ଚ ଜତୁଗୃହରୁ ଆତ୍ମରକ୍ଷା ପୂର୍ବକ ମାତା କୁନ୍ତୀଙ୍କ ସହ ପଞ୍ଚ ପାଣ୍ଡୁପୁତ୍ର ଉଦ୍ଧାର ପାଇ ଆସି ଏହି ପାହାଡ଼ର କତିପୟ, ଗୁମ୍ଫାରେ ଅବସ୍ଥାନ କରିଥିବା ପ୍ରକରଣ ଆଧାରରେ ପ୍ରୋକ୍ତ ଗୁମ୍ଫା ସମୂହ 'ପଞ୍ଚୁପାଣ୍ଡବ ଗୁମ୍ଫା' ନାମରେ ଲୋକ ପ୍ରସିଦ୍ଧିଲାଭ କଲା । ଆଲୋଚ୍ୟ ଦୁଇ ପାହାଡ଼ର ମଧ୍ୟବର୍ତ୍ତୀ ସୁରଭଗିରି ବୌଦ୍ଧ ବିହାର ଅବସ୍ଥିତ କ୍ଷୁଦ୍ର ପାହାଡ଼ଟିକୁ ଲୋକମାନେ ସୁରଭଗିରି ନାମରେ ଚିହ୍ନିତ କଲେ । ଏହି ପାହାଡ଼ରେ କ୍ରମେ ସଙ୍କଟେଶ୍ୱର ଶିବ ମନ୍ଦିର ପ୍ରତିଷ୍ଠିତ ହେଲା । ଧଉଳିର ପ୍ରାଚୀନ କୀର୍ତ୍ତିରାଜିକୁ ଅନୁଧ୍ୟାନ କଲେ ଜଣାଯାଏ ଯେ ଏହା ପ୍ରଥମେ ଏକ ପ୍ରସିଦ୍ଧ ବୌଦ୍ଧପୀଠ ଓ ପରେ ଏକ ମହାନ ଶୈବପୀଠ ରୂପେ ଖ୍ୟାତି ଅର୍ଜନ କରିଥିଲା । ପ୍ରାୟ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ଧଉଳିର ଗୁମ୍ଫାମାନଙ୍କରେ ବୌଦ୍ଧ ହିନ୍ଦୁମାନେ ଅବସ୍ଥାନ କରୁଥିବାର ପ୍ରମାଣ ମଧ୍ୟ ମିଳିଥାଏ । କାଳକ୍ରମେ ବୌଦ୍ଧଧର୍ମ ବିଲୟମୁଖୀ ହେବା ସହିତ ହିନ୍ଦୁ ପ୍ରଭାବ ମଧ୍ୟ ଶିଥିଳ ହୋଇପଡ଼ିଲା । ଫଳରେ ଇଂରେଜମାନେ ଓଡ଼ିଶା ଅଧିକାର କରିବା ସମୟକୁ ବହୁ ପ୍ରତ୍ନତାତ୍ତ୍ୱିକ ଉପାଦାନ ସମ୍ବଳିତ ସ୍ଥାପତ୍ୟ ଭାସ୍କର୍ଯ୍ୟ ବହନ କରିଥିବା ଏହି ଐତିହ୍ୟ ସାଂସ୍କୃତିକ ପୀଠ ଧଉଳି - ଉପେକ୍ଷିତ ହୋଇ କଣ୍ଟକିତ ଗୁଳ୍ମାଚ୍ଛାଦିତ ଶ୍ୱାପଦସଙ୍କୁଳ ଏକ ଦୁର୍ଗମ ତଥା ପରିତ୍ୟକ୍ତ ଧ୍ୱଂସ ସ୍ତୂପରେ ପରିଣତ ହେଲା ।

ଇଂରେଜ ବଣିକମାନେ ଭାରତ ମାଟିରେ ପାଦ ଦେବା ପୂର୍ବରୁ ଭାରତର ବିଭିନ୍ନ ଗିରି ଗହ୍ୱରରେ ଅପରିମିତ ଧନରତ୍ନ ଲୁକ୍‌କାୟିତ ରହିଛି ବୋଲି ସେମାନଙ୍କର ଦୃଢ଼ ଧାରଣା ଥିଲା । ସମୃଦ୍ଧିଶାଳୀ ଓଡ଼ିଶାର ଗିରିଗୁହାରେ ବୋଇତ-ବାଣିଜ୍ୟ ଲବ୍ଧ ଧନସମ୍ପଦ ସବୁ ଗଚ୍ଛିତ ଥିବା ବିଶ୍ୱାସରେ ତାହାର ସନ୍ଧାନ ତଥା ପ୍ରାଚୀନ କୀର୍ତ୍ତିରାଜି ପ୍ରତି ଥିବା ଦୁର୍ବାର ଆକର୍ଷଣ ଯୋଗୁଁ ଖ୍ରୀ:୧୮୩୭ରେ ଇଂରେଜ ଯୁବ ସାମରିକ ଅଫିସର ଲେଫ୍‌ଟନାଣ୍ଟ ମାରଖାମ୍ କିଟୋଙ୍କ ସନ୍ଧାନୀଚକ୍ଷୁ ଧଉଳିର ଐତିହ୍ୟ ସମ୍ବଳିତ ପ୍ରାଚୀନକୀର୍ତ୍ତି ଆବିଷ୍କାର କରିବାରେ ସକ୍ଷମ ହୋଇଥିଲା । ପ୍ରତ୍ନତତ୍ତ୍ୱାନ୍ୱେଷୀ ସେନାଧ୍ୟକ୍ଷ ମାର୍‌ଖାମ କିଟୋ ଅକ୍ଲାନ୍ତ ପରିଶ୍ରମ ପୂର୍ବକ ନିଜ ଜୀବନକୁ ବିପନ୍ନ କରି ଧଉଳିର ଘନ ବୃକ୍ଷ ଲତାଗୁଳ୍ମ ତଥା ବେତ ସଙ୍କୁଞ୍ଚ ପରିବେଷ୍ଟିତ ବିପଜ୍ଜନକ ପରିବେଶ ମଧ୍ୟରୁ ୧୫ ଫୁଟ ଦୈର୍ଘ୍ୟ ତଥା ୧୦ ଫୁଟ ଉଚ୍ଚତା ବିଶିଷ୍ଟ ଏକ କୂର୍ମ ପୃଷ୍ଠାକୃତି ଅସମତଳ କାନ୍ଥରେ ଉତ୍କୀର୍ଣ୍ଣ 'ଧଉଳି ଶିଳାଲିପି'ର ସନ୍ଧାନ ପାଇଲେ । ଇତିହାସ ପ୍ରତି ଗଭୀର ରୁଚିଥିବା ମାରଖାମ୍ କିଟୋ ସ୍ୱଭାବତଃ ଥିଲେ ଜଣେ ସୌଖୀନ ଚିତ୍ରକର । ସେ ଧଉଳିଗାତ୍ର ଖୋଦିତ ଶିଳାଲିପିର ପ୍ରତି ଲିପି ସ୍ୱହସ୍ତରେ ଅଙ୍କନ କରି ଏହାକୁ ପାଠୋଦ୍ଧାର ନିମିତ୍ତ ପୁରାତତ୍ତ୍ୱବିତ୍ ଜେମ୍‌ସ୍ ପ୍ରିନ୍‌ସେପ୍ ସାହେବଙ୍କୁ ଦେଲେ । କଲିକତାସ୍ଥିତ ଏସିଆଟିକ୍ ସୋସାଇଟିର ସଂପାଦକ ପ୍ରିନ୍‌ସେପ୍ ସାହେବଙ୍କ ପରାମର୍ଶକ୍ରମେ ମାରଖାମ କିଟୋ ୧୮୩୯ରେ ପୁନର୍ବାର ଧଉଳି ଆସି ସ୍ୱପ୍ରସ୍ତୁତ ଅନୁଲିପିର ସଂଶୋଧନ କାର୍ଯ୍ୟ ସମାପନ କରିଥିଲେ । ତତ୍‌ପରେ ପ୍ରିନ୍‌ସେପ୍ ସାହେବ ତାହାର ପାଠୋଦ୍ଧାର କରିବା ପରେ ସଂସ୍କୃତ ବିଦ୍ୱାନ ଓ୍ୱିଲ୍‌ସନ୍ ସାହେବ ତାହାର ଅନୁବାଦ ପ୍ରସ୍ତୁତ କଲେ । ଏହି ତିନି ପାଶ୍ଚାତ୍ୟ ପଣ୍ଡିତ / ବିଶେଷଜ୍ଞଙ୍କ ଆନ୍ତରିକ ଉଦ୍ୟମ ଫଳରେ ଓଡ଼ିଶା ଇତିହାସର ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ଉନ୍ମୋଚିତ ହେଲା । କିଟୋଙ୍କ ଦ୍ୱାରା ପ୍ରସ୍ତୁତ ଧଉଳି ଅଞ୍ଚଳର ନକ୍‌ସା ସହିତ ତାଙ୍କ ଆବିଷ୍କାର ସମ୍ବନ୍ଧୀୟ ଏକ ସଂକ୍ଷିପ୍ତ ବିବରଣୀ ଖ୍ରୀ:୧୮୩୫ରେ 'ଏସିଆଟିକ୍ ସୋସାଇଟି ଅଫ୍ ବେଙ୍ଗାଲ' ପ୍ରକାଶ ପାଇବା ପରେ ସମଗ୍ର ବିଶ୍ୱର ପ୍ରତ୍ନତତ୍ତ୍ୱବିତ୍‌ଙ୍କ ମଧ୍ୟରେ ଚହଳ ସୃଷ୍ଟି କରିଥିଲା ।

ମାରଖାମ କିଟୋ ଧଉଳି ପରିଦର୍ଶନ ସମୟରେ ତତ୍ରତ୍ୟ ସ୍ଥାପତ୍ୟ ଶିଳାହସ୍ତୀ ଉପରେ ଆଚ୍ଛାଦିତ ଲତାଗୁଳ୍ମକୁ ପରିଷ୍କାର ପୂର୍ବକ ଦୀର୍ଘ ଦୁଇ ହଜାର ବର୍ଷର ଏହି ପ୍ରାଚୀନ ବୌଦ୍ଧକୀର୍ତ୍ତି ଆପାତତଃ ନିଖୁଣ ଅବସ୍ଥାରେ ଦେଖି ଚମତ୍କୃତ ହୋଇଥିଲେ । ପୁନଶ୍ଚ ଅଶ୍ୱତ୍‌ଥାମା ପାହାଡ଼ର ଉପରିଭାଗରେ ଗୋଟିଏ ସ୍ତୂପ ଓ ପ୍ରାସାଦର ଭଗ୍ନାବଶେଷ ସହିତ ଧଉଳି ପାହାଡ଼ରେ ଥିବା ଭଗ୍ନ ସ୍ତୂପ, ଗୁମ୍ଫା ଓ ଅନେକ ଶିବ ମନ୍ଦିର ଆବିଷ୍କାର କରିଥିଲେ । ବିଶେଷତଃ ଏହି ଦୁଇ ପାହାଡ଼ର ମଧ୍ୟବର୍ତ୍ତୀ କ୍ରମନିମ୍ନ ଭୂମିରେ କେତେକ ପ୍ରାଚୀନ ପ୍ରାସାଦର ଧ୍ୱଂସାବଶେଷ ମଧ୍ୟ ଲକ୍ଷ୍ୟ କରିଥିଲେ । ସ୍ଥୂଳତଃ ତାଙ୍କ ପରିଦର୍ଶନ ସମୟରେ ଅଶୋକଙ୍କ ସମୟରେ ପ୍ରାଚୀନ ସ୍ତୂପ, ଚୈତ୍ୟ ଓ ପ୍ରାସାଦଗୁଡ଼ିକର ମୂଳଭିତ୍ତି ମାତ୍ର ବିଦ୍ୟମାନ ଥିଲା । ଏତଦ୍‌ବ୍ୟତୀତ ପରବର୍ତ୍ତୀ କାଳରେ ନିର୍ମିତ ତଥା ରକ୍ଷଣାବେକ୍ଷଣ ଅଭାବରୁ ଅବକ୍ଷୟର କବଳିତ ହୋଇଥିବା ଶିବମନ୍ଦିର

ସବୁ ପରିଦର୍ଶନ କରିଥିଲେ । ପ୍ରତ୍ନତତ୍ତ୍ୱ ଅନୁସନ୍ଧିତ୍ସୁ ମାରଖାମ କିଟୋ ଧଉଳିରେ ଏହି ପ୍ରାଚୀନ କୀର୍ତ୍ତି ସମୂହକୁ ଲୋକଲୋଚନକୁ ଆଣି ସେ ସମ୍ବନ୍ଧୀୟ ଏକ ଉପାଦେୟ ବିବରଣୀ ପ୍ରସ୍ତୁତ କରିବାର ୩୬ ବର୍ଷ ପରେ ଖ୍ରୀ:୧୮୭୪ରେ ପୁରାତତ୍ତ୍ୱବିତ୍ ଜେ.ଡ଼ି. ବେଗ୍‌ଲାର୍ ସାହେବ ଧଉଳିର ପ୍ରାଚୀନ ବୌଦ୍ଧ ତଥା ହିନ୍ଦୁକୀର୍ତ୍ତି ପରିଦର୍ଶନ କରି ପ୍ରସ୍ତୁତ କରିଥିବା ବିବରଣୀରୁ ସୂଚନା ମିଳେ ଯେ ସେ ଧଉଳି ପାହାଡ଼ ଓ ଅଶ୍ୱତ୍ଥାମା ପାହାଡ଼ର ଶୀର୍ଷରେ ସ୍ତୁପୀକୃତ ଇଟାଖଣ୍ଡମାନ ଦେଖି ଏଠାରେ ଦୁଇଟି ପ୍ରାଚୀନ ବୌଦ୍ଧସ୍ତୁପର ଅବସ୍ଥିତିକୁ ସ୍ୱୀକାର କରିଥିଲେ । ଖ୍ରୀ:୧୯୫୦ରେ ପ୍ରତ୍ନତତ୍ତ୍ୱବିତ୍ ଦେବାଳାମିତ୍ର ଧଉଳି ପାହାଡ଼ର ଦକ୍ଷିଣପାର୍ଶ୍ୱରେ ଇଟା ନିର୍ମିତ ପ୍ରାସାଦର ଧ୍ୱଂସାବଶେଷକୁ ଲୋକଲୋଚନକୁ ଆଣିଥିଲେ ।

ଧଉଳିର ବୌଦ୍ଧାବଶେଷମାନଙ୍କ ମଧ୍ୟରେ ସମ୍ରାଟ ଅଶୋକ କର୍ତ୍ତୃକ ଖୋଦିତ ଶିଳାନୁଶାସନ କ୍ରମଶଃ ସଂସ୍କୃତି ତଥା ଐତିହ୍ୟପ୍ରେମୀ ପର୍ଯ୍ୟଟକମାନଙ୍କ ଦୃଷ୍ଟି ଆକର୍ଷଣ କଲା । ଦକ୍ଷିଣ ସୀମାନ୍ତବର୍ତ୍ତୀ ପାହାଡ଼ରେ ମୟୂର୍ୟ ସ୍ଥାପତ୍ୟର ଅମ୍ଳାନ ସ୍ୱାକ୍ଷର ବହନ କରି ବିଦ୍ୟମାନ ଥିବା ବିରାଟକାୟ ହସ୍ତୀର ସମ୍ମୁଖ ନିମ୍ନଭାଗରେ ପାହାଡ଼ର ଉତ୍ତର ବାଡ଼ରେ ୧୫ ଫୁଟ ଦୈର୍ଘ୍ୟ x ୧୦ ଫୁଟ ଉଚ୍ଚତା ବିଶିଷ୍ଟ ଶିଳାଭିଲେଖ ରାସ୍ତା ଉପରୁ ସ୍ପଷ୍ଟ ଦୃଷ୍ଟିଗୋଚର ହୁଏ । ପ୍ରାକୃତ ଭାଷା ତଥା ବ୍ରାହ୍ମୀଲିପିରେ ଖୋଦିତ ଉକ୍ତ ଅନୁଶାସନ ମାଳାରେ ଅଶୋକଙ୍କ ନିର୍ଦ୍ଦେଶିତ ପ୍ରଥମରୁ ଦଶମ ଓ ଚତୁର୍ଦ୍ଦଶ ଏହିପରି ଏଗାରଟି ଧର୍ମାନୁଶାସନ ସହ ଦୁଇଗୋଟି ସ୍ୱତନ୍ତ୍ର କଳିଙ୍ଗାନୁଶାସନ ଅନ୍ତର୍ଭୁକ୍ତ ହୋଇଅଛି । କେତେକ ଆଲୋଚକ ଏହା ପାଲି ଭାଷାରେ ଲିଖିତ ବୋଲି ମତପୋଷଣ କରିଥାନ୍ତି । ଏହା ନିଛକ ମିଥ୍ୟା ନୁହେଁ । ବାସ୍ତବରେ ଏହା ପାଲିପ୍ରାକୃତ ଭାଷାରେ ଲିଖିତ । ତ୍ରୟୋଦଶ ଅନୁଶାସନରେ କଳିଙ୍ଗ ଯୁଦ୍ଧର ଲୋମହର୍ଷଣ ବିବରଣୀ ସୂଚନାତ୍ମକ ଭାବେ ପ୍ରଦତ୍ତ ହୋଇଅଛି । ଦୀର୍ଘ ଦୁଇହଜାର ବର୍ଷରୁ ଊର୍ଦ୍ଧ୍ୱ ସମୟ ଧରି ପ୍ରଖର ସୂର୍ଯ୍ୟତାପ ତଥା ପ୍ରବଳ ବୃଷ୍ଟିପାତ ପ୍ରଭାବରେ କ୍ରମଶଃ ଏହାର ଅବକ୍ଷୟ ସଂଘଟିତ ହେବା ସ୍ୱାଭାବିକ । ତେଣୁ ଖ୍ରୀ:୧୯୦୪ରେ ଭାରତୀୟ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥା ଗଠିତ ହେବା ପରେ ଏହି ପ୍ରାଚୀନ ଅନୁଶାସନଗୁଡ଼ିକ 'ସଂରକ୍ଷିତ କୀର୍ତ୍ତି', ରୂପେ ଘୋଷିତ ହୋଇ ଏହାର ସୁରକ୍ଷା ବ୍ୟବସ୍ଥା କରାଯାଇଛି । ଆଲୋଚ୍ୟ ଧର୍ମଲେଖକୁ ଅବକ୍ଷୟରୁ ରକ୍ଷା କରିବା ନିମିତ୍ତ ଏହା ଉପରେ ପକ୍କା ଛାତ ନିର୍ମାଣ କରାଯାଇ ଏହାର ସମ୍ମୁଖ ଭାଗ ଲୁହାଜାଲି ଦ୍ୱାରା ଆବଦ୍ଧ କରାଯାଇଛି । ତତ୍‌ସହିତ ଖ୍ରୀଷ୍ଟିୟ ଅଷ୍ଟମ ଶତାବ୍ଦୀର ପ୍ରାରମ୍ଭରେ ଶାନ୍ତିକର ଦେବଙ୍କ ଦ୍ୱାରା ଉତ୍କୀର୍ଣ୍ଣ ଶିଳାଲିପି ଖୋଦିତ ଗୁମ୍ଫା ସମ୍ମୁଖରେ ଭାରତୀୟ ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥା ଦ୍ୱାରା ବିଜ୍ଞାପନ ଫଳକ ସ୍ଥାପିତ ହୋଇଛି । ଏହାକୁ ଦର୍ଶନ କରି ଦର୍ଶକ, ପର୍ଯ୍ୟଟକ ଓଡ଼ିଶାର ଐତିହ୍ୟ ପାଇଁ ଗର୍ବ ଅନୁଭବ କରିଥାନ୍ତି । ଏତଦ୍‌ବ୍ୟତୀତ ଧଉଳି ପାହାଡ଼ରେ ଖୋଦିତ ବହୁ ସଂଖ୍ୟକ କ୍ଷୁଦ୍ର ବୃହତ୍ ଗୁମ୍ଫା ଦୁଇସହସ୍ରାବ୍ଦ ଅତିକ୍ରାନ୍ତ ପରେ ମଧ୍ୟ ଜଳବାୟୁର ଦୁଷ୍ପ୍ରଭାବକୁ ପ୍ରତିହତ କରି ଅଦ୍ୟାବଧି ବିଦ୍ୟମାନ ରହିଛି । ଏହି ସବୁ ଗୁମ୍ଫାମାନଙ୍କର ବିଶେଷତ୍ୱ ହେଉଛି ଯେ ପ୍ରତ୍ୟେକ ଗୁମ୍ଫା ଦକ୍ଷିଣାଭିମୁଖୀ ହୋଇ ଖୋଦନ କରାଯାଇଛି । ସେମାନଙ୍କ ମଧ୍ୟରୁ ଅଧିକାଂଶ ଗୁମ୍ଫା ଏତେ କ୍ଷୁଦ୍ର ଯେ ତନ୍ମଧ୍ୟରେ ଜଣେ ପୂର୍ଣ୍ଣବୟସ୍କ ବ୍ୟକ୍ତି କୌଣସି ପ୍ରକାରେ ସ୍ୱଚ୍ଛନ୍ଦରେ ଶୟନ କରିପାରିବ ନାହିଁ । ପୁନଶ୍ଚ କେତେକ ଗୁମ୍ଫାର ଉଚ୍ଚତା ଏତେ କମ ଯେ ଏହା ମଧ୍ୟରେ ଛିଡ଼ା ହେବା ସମ୍ଭବ ନୁହେଁ । ବିଶେଷତଃ ଏଥିରେ ଖୋଦିତ ଖଲରୁ ଅନୁମିତ ହୁଏ ଯେ ଏଠାରେ ଆୟୁର୍ବେଦିକ ମହୌଷଧି ପ୍ରସ୍ତୁତ ହେଉଥିଲା । ଅନ୍ୟ ଏକ ବୈଶିଷ୍ଟ୍ୟ ହେଉଛି ଅପେକ୍ଷାକୃତ ବଡ଼ଗୁମ୍ଫାଗୁଡ଼ିକର ଚଟାଣ ଆଭ୍ୟନ୍ତରରୁ ବହିର୍ଦ୍ଦେଶକୁ କ୍ରମଶଃ ଗଡ଼ାଣିଆ । ବର୍ଷା ଜଳ ବାହାରକୁ ଗଡ଼ିଯିବା ପାଇଁ ଅଥବା ବିନା ତକିଆରେ ଶୋଇ ପାରିବା ପାଇଁ ଏପରି ଗଡ଼ାଣିଆ ହୋଇଥିବା ସମ୍ଭବ ।

ବିଂଶ ଶତାବ୍ଦୀର ସତୁରୀ ଦଶକରେ ଧଉଳିର ଭାଗ୍ୟ ରବି ଉଦୟ ହେଲା । ଜାପାନର ବୌଦ୍ଧଗୁରୁ ନିଚିଦାତ୍ସୁ ଫୁଜୀ ବୁଦ୍ଧଦେବଙ୍କ ଅନ୍ୟତମ କର୍ମଭୂମି ବିହାର ରାଜ୍ୟର ରାଜଗୃହଠାରେ ଶାନ୍ତିସ୍ତୂପ ନିର୍ମାଣ କରୁଥିବା ଅବସରରେ ବିହାରର ତତ୍କାଳୀନ ରାଜ୍ୟପାଳ ନିତ୍ୟାନନ୍ଦ କାନୁନ୍‌ଗୋ - ଇତିହାସ ପ୍ରସିଦ୍ଧ କଳିଙ୍ଗ ଯୁଦ୍ଧ ସଂଗଠିତ ହୋଇଥିବା ତଥା ଚଣ୍ଡାଶୋକଙ୍କୁ ଧର୍ମାଶୋକରେ ରୂପାନ୍ତରିତ କରିପାରିଥିବା ବିଶ୍ୱବିଦିତ ଶାନ୍ତିପୀଠ ଧଉଳିଠାରେ ଅନୁରୂପ ଏକ ଶାନ୍ତିସ୍ତୂପ ନିର୍ମାଣ କରିବା ନିମିତ୍ତ ପ୍ରସ୍ତାବ ଦେଇଥିଲେ, ଯାହାକି ଫୁଂଜି ଗୁରୁଜୀ ମହୋଦୟଙ୍କ ଦ୍ୱାରା ପରିଗୃହୀତ ହୋଇଥିଲା । ଧଉଳିରେ ସ୍ତୂପ ନିର୍ମାଣ କାର୍ଯ୍ୟ ପରିଚାଳନା ପରିପ୍ରେକ୍ଷୀରେ ୧୯୭୦ ମସିହା ନଭେମ୍ବର ମାସରେ ଫୁଂଜି ଗୁରୁଜୀଙ୍କ ପୃଷ୍ଠପୋଷକତାରେ 'କଳିଙ୍ଗ ନିପ୍ପନ ବୁଦ୍ଧସଂଘ' ଗଠିତ ହେଲା, ଯାହାର ସଭାପତି ଥିଲେ ସ୍ୱୟଂ ନିତ୍ୟାନନ୍ଦ କାନୁନ୍‌ଗୋ । ସର୍ବପ୍ରଥମେ ଧଉଳି ପାହାଡ଼ର ପୂର୍ବ-ନିମ୍ନଭୂମିରେ 'ସତଧର୍ମ ବିହାର' ପ୍ରତିଷ୍ଠା କରାଯାଇ ସ୍ତୂପ ନିର୍ମାଣ କାର୍ଯ୍ୟକୁ ତ୍ୱରାନ୍ୱିତ କରାଗଲା । ତା୨୫.୧.୧୯୭୧ରିଖରେ ସ୍ତୂପ ନିର୍ମାଣ ନିମିତ୍ତ ଭୂମି ପୂଜନ ହେବା ପରେ ତା.୨୫.୮.୧୯୭୧ରିଖରେ ଶାନ୍ତିସ୍ତୂପର ବିଧିବଦ୍ଧ ନିର୍ମାଣ କାର୍ଯ୍ୟ ଆରମ୍ଭ ହୋଇ ତା୨୮.୧୦.୧୯୭୨ରିଖରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀଙ୍କ ପୌରୋହିତ୍ୟରେ ଉକ୍ତ ଶାନ୍ତିସ୍ତୂପରେ ବୁଦ୍ଧଦେବଙ୍କ ପବିତ୍ର ଦେହାସ୍ଥି ସଂସ୍ଥାପିତ ହେବାପରେ ତା୮.୧୧.୧୯୭୨ରିଖରେ ଏହି ଶାନ୍ତିସ୍ତୂପର ଆନୁଷ୍ଠାନିକ ଉନ୍ମୋଚନ ବିଧାନ ସମ୍ପନ୍ନ ହୋଇଥିଲା । ପୂର୍ବ-ପଶ୍ଚିମ ଦିଗରୁ ଦୁଇଗୋଟି ପାବଚ୍ଛ ଶ୍ରେଣୀ ଦ୍ୱାରା ଉକ୍ତ ଶାନ୍ତିସ୍ତୂପ ପରିବେଷ୍ଟିତ ଉପର ବାରଣ୍ଡାକୁ ଆରୋହଣ କଲେ ଏହାର ଚତୁର୍ଦ୍ଦିଗରେ ନିର୍ମିତ ଚାରିଗୋଟି ପ୍ରକୋଷ୍ଠରେ ଗୌତମବୁଦ୍ଧଙ୍କର ଚାରିଗୋଟି ଭିନ୍ନ ଭିନ୍ନ ଶୈଳୀର ବୃହତ୍ତ ମାର୍ବଲ ମୂର୍ତ୍ତି ଅବସ୍ଥାପନ କରାଯାଇଛି । ତତ୍‌ସହିତ ସ୍ତୂପଗାତ୍ରର ଚତୁଃପାର୍ଶ୍ୱରେ

ବୁଦ୍ଧ ଜୀବନର ପ୍ରମୁଖ ଘଟଣାବଳୀ ସିମେଣ୍ଟରେ ରୂପାୟିତ ହୋଇଅଛି । ପ୍ରାଚୀନ ଶିଳ୍ପ ପରମ୍ପରା ତଥା ଆଧୁନିକ ଭାସ୍କର୍ଯ୍ୟର ସମନ୍ୱୟରେ ସମୁଜ୍ଜ୍ୱଳ ନିଦର୍ଶନ ଏହି ଶାନ୍ତିସ୍ତୂପର ବିଭିନ୍ନ ଦୃଶ୍ୟାବଳୀ ଓ ମୂର୍ତ୍ତିମାନଙ୍କର କଳାନୈପୁଣ୍ୟ ଚମତ୍କାର ଭାବେ ପ୍ରକଟିତ ହୋଇଛି । ଶାନ୍ତି-ମୈତ୍ରୀ-ସଦିଚ୍ଛାର ଆଲୋକସ୍ତମ୍ଭ ରୂପେ ଏହା ସମ୍ପ୍ରତି ବିଶ୍ୱ ସମକ୍ଷରେ ସଗର୍ବରେ ଦଣ୍ଡାୟମାନ ରହି ପର୍ଯ୍ୟଟକମାନଙ୍କୁ ନିରନ୍ତର ଆକୃଷ୍ଟ କରୁଅଛି । ଧଉଳି ପାହାଡ଼ ଉପରେ ଶାନ୍ତିସ୍ତୂପର ପଶ୍ଚିମୋତ୍ତର କୋଣରେ ନିର୍ମିତ ପ୍ରାର୍ଥନା ଗୃହ ବା ଉପାସନା ପ୍ରକୋଷ୍ଠ ମଧ୍ୟରେ ଭଗବାନ ବୁଦ୍ଧଙ୍କ ମୂର୍ତ୍ତି ସ୍ଥାପନ କରାଯାଇଛି । ପୁନଶ୍ଚ ପୂର୍ବୋକ୍ତ 'ସଦ୍‌ଧର୍ମବିହାର' ପ୍ରାସାଦର ଉପର ମହଲାରେ ମଧ୍ୟ ଭଗବାନ ବୁଦ୍ଧ ଅବସ୍ଥାପିତ ହୋଇଛନ୍ତି । ଉଭୟ ସ୍ଥାନରେ ପ୍ରତ୍ୟହ ଅଗଣିତ ଶ୍ରଦ୍ଧାଳୁ ଭକ୍ତଙ୍କ ସମାବେଶରେ ଆନୁଷଙ୍ଗିକ ପୂଜାର୍ଚ୍ଚନା ଅନୁଷ୍ଠିତ ହେବା ସହିତ ଏକ ସ୍ୱତନ୍ତ୍ରବାଦ୍ୟ ତାଳରେ 'ଗୁରୁଗମ୍ଭୀର ଓଁ ନମୋ ମ୍ୟୋ ହେ ରେ ଙ୍ଗେ କ୍ୟୋଂ' ପ୍ରାର୍ଥନା ମନ୍ତ୍ର ସମଗ୍ର ଶାନ୍ତିପୀଠରେ ଝଙ୍କାର ତୋଳୁଛି ।

ଧଉଳି ପାହାଡ଼ର ଅନ୍ୟତମ ଆକର୍ଷଣ ହେଉଛି ପୁନର୍ଗଠିତ ଧବଳେଶ୍ୱର ମନ୍ଦିର । ଧଉଳିର ପୂର୍ବ ଶିଖରରେ ଆନୁମାନିକ ଖ୍ରୀ:୪ର୍ଥରୁ ୬ଷ୍ଠ ଶତକରେ ନିର୍ମିତ ଧବଳେଶ୍ୱର ମନ୍ଦିର କାଳକ୍ରମେ ଧ୍ୱଂସ କବଳିତ ହୋଇ ଭୁଷୁଡ଼ି ପଡ଼ିବା ସହିତ ତନ୍ମଧ୍ୟସ୍ଥ ଲିଙ୍ଗ ବିଗ୍ରହ କିଛି ମାତ୍ରାରେ ଢଳି ପଡ଼ିଥିଲା । ଧଉଳିରେ ଶାନ୍ତିସ୍ତୂପ ନିର୍ମାଣ କାର୍ଯ୍ୟ ଚାଲିଥିବା ଅବସରରେ ଏହାର ପୂର୍ବପାର୍ଶ୍ୱ ଶିଖରରେ ୧୫୦ ଫୁଟ x ୧୦୦ ଫୁଟ ପରିମିତ ଚତ୍ୱର ଉପରେ ୪୫ ଫୁଟ ଉଚ୍ଚତା ବିଶିଷ୍ଟ ତ୍ରିରଥ ଶୈଳୀର ପୂର୍ବାଭିମୁଖୀ ଧବଳେଶ୍ୱର ମନ୍ଦିର ଗଢ଼ି ଉଠିଲା । ମନ୍ଦିର ଗାତ୍ରରେ ତିନି ପାର୍ଶ୍ୱଦେବତା ଓ ସମ୍ମୁଖରେ ଏକ ଅନୁଚ୍ଚ ମୁଖଶାଳା ମଧ୍ୟରେ ବାହନ ବୃଷଭସ୍ତମ୍ଭ ସ୍ଥାପିତ ହୋଇ ମନ୍ଦିର ଦ୍ୱାରର ଉପର ବନ୍ଧରେ ନବଗ୍ରହପାଟ ସଂସ୍ଥାପିତ ହେବା ସହିତ ଦ୍ୱାରର ଉଭୟ ପାର୍ଶ୍ୱରେ ନନ୍ଦୀଭୃଙ୍ଗୀ ଦଣ୍ଡାୟମାନ ଅଛନ୍ତି । ଭଗ୍ନଦଶାପନ୍ନ ପ୍ରାଚୀନ ଏହି ମନ୍ଦିର ନବନିର୍ମାଣ ପରେ ତା୨୦.୧୧.୭୨ରିଖରେ ସମ୍ପୂର୍ଣ୍ଣ ବୈଦିକ ରୀତିରେ ଏହାର ପ୍ରତିଷ୍ଠା ଉତ୍ସବ ସମାହିତ ହୋଇଥିଲା । ବର୍ଷର ପ୍ରତ୍ୟେକ ସଂକ୍ରାନ୍ତି, ଶିବରାତ୍ରି, ଦୋଳପୂର୍ଣ୍ଣିମା ଓ ଶୀତଳଷଷ୍ଠୀ ପର୍ବରେ ଏଠାରେ ସ୍ଥାନୀୟ ଲୋକଙ୍କର ପ୍ରବଳ ସମାଗମ ହୋଇଥାଏ । ଧଉଳି ପାହାଡ଼ ଉପରିସ୍ଥ ଧବଳେଶ୍ୱର ମହାଦେବ ମନ୍ଦିର ଓ ଶାନ୍ତିସ୍ତୂପ ନିକଟକୁ ପକ୍କା ରାସ୍ତା ଦ୍ୱାରା ସଂଯୋଗ କରାଯାଇଥିବାରୁ ପ୍ରତ୍ୟହ ହଜାର ହଜାର ଦେଶବିଦେଶାଗତ ପର୍ଯ୍ୟଟକ ଅନାୟାସରେ ଦର୍ଶନ କରିପାରୁଛନ୍ତି । ଯାତ୍ରୀ ପର୍ଯ୍ୟଟକଙ୍କ ଆବଶ୍ୟକତା ପରିପୂର୍ତ୍ତି ନିମିତ୍ତ ଆଲୋଚ୍ୟ ଉଭୟ କୀର୍ତ୍ତି ସମୀପରେ ଗଢ଼ି ଉଠିଛି ଆକର୍ଷଣୀୟ ବିପଣୀମାଳା ।

ଧଉଳି ପାହାଡ଼କୁ ସଂଯୋଜିତ ପକ୍କା ରାସ୍ତାରେ ଅଗ୍ରସର ହେଲେ ହସ୍ତୀ ପାହାଡ଼ ପୂର୍ବରୁ ରାସ୍ତାର ବାମପାର୍ଶ୍ୱରେ ମହାବୀର ହନୁମାନ ମନ୍ଦିର ଦୃଷ୍ଟିଗୋଚର ହୋଇଥାଏ । ଏହା ଏକ ଅର୍ବାଚୀନ ଉପାସନା ପୀଠ ଅଟେ । ପଣାସଂକ୍ରାନ୍ତି ସହିତ ବର୍ଷ ମଧ୍ୟରେ ଅନ୍ୟାନ୍ୟ ସଂକ୍ରାନ୍ତି ଓ ରାମନବମୀରେ ଏଠାରେ ପ୍ରବଳ ଭକ୍ତ ସମାଗମ ହୋଇଥାଏ । ସେଠାରୁ ଶାନ୍ତିସ୍ତୂପ ପର୍ଯ୍ୟନ୍ତ ପ୍ରଲମ୍ବିତ ଘାଟିରାସ୍ତାର ଦକ୍ଷିଣପାର୍ଶ୍ୱରେ ଧଉଳିର ଦକ୍ଷିଣ ନିମ୍ନାଂଶରେ ଗଙ୍ଗ ରାଜତ୍ୱକାଳୀନ କୀର୍ତ୍ତି ସଙ୍କଟେଶ୍ୱର ମନ୍ଦିର ବିଦ୍ୟମାନ । ପ୍ରଖ୍ୟାତ ଐତିହାସିକ କେଦାରନାଥ ମହାପାତ୍ରଙ୍କ ମତରେ ଖ୍ରୀ:୧୭୩୧-୩୨ରେ କଟକର ନାଏବ ନାଜିମ ମହମ୍ମଦ ତକି ଖାଁ ଧଉଳିଗଡ଼ ଆକ୍ରମଣ କରିବା ସମୟରେ ଧଉଳିର ସମସ୍ତ ପ୍ରାଚୀନ କୀର୍ତ୍ତି ଧ୍ୱସ୍ତବିଧ୍ୱସ୍ତ ହେବା ସହିତ ଉକ୍ତ ସଙ୍କଟେଶ୍ୱର ମନ୍ଦିରଟି ମଧ୍ୟ କ୍ଷତିଗ୍ରସ୍ତ ହୋଇ କାଳକ୍ରମେ ଘନଲତାଗୁଳ୍ମ ଆଚ୍ଛାଦନ ଫଳରେ ଏହା ଉପେକ୍ଷିତ ହୋଇପଡ଼ିଲା । ଧଉଳି ପାହାଡ଼ ଉପରେ ଧବଳେଶ୍ୱର ମନ୍ଦିରର ନିର୍ମାଣ କାର୍ଯ୍ୟ ଚାଲିଥିବା ଅବସରରେ କେଦାରନାଥ ମହାପାତ୍ର ଏହି ଜରାଜୀର୍ଣ୍ଣ ତଥା ଅବହେଳିତ ମନ୍ଦିର ଆବିଷ୍କାର କରିଥିଲେ । ତାଙ୍କ ଉଦ୍ୟମରେ ପ୍ରତ୍ନତାତ୍ତ୍ୱିକ ସଂରକ୍ଷଣ ପ୍ରଣାଳୀରେ ଏହି ପିଢ଼ିଶୈଳୀର ମନ୍ଦିରର ପୁନରୁଦ୍ଧାର କାର୍ଯ୍ୟ ପ୍ରଗତିରେ ତ୍ୱରାନ୍ୱିତ ହୋଇଥିଲା । ତତ୍‌ସହିତ ମନ୍ଦିର ପାର୍ଶ୍ୱରେ ପରିତ୍ୟକ୍ତ ଅବସ୍ଥାରେ ଥିବା ପ୍ରାଚୀନ କୂପର ଜୀର୍ଣ୍ଣ ସଂସ୍କାର କାର୍ଯ୍ୟ ସମାହିତ ହୋଇ ମନ୍ଦିର ଚତୁଃପାର୍ଶ୍ୱରେ ଏକ ସୁରମ୍ୟ ଉଦ୍ୟାନ ଗଢ଼ି ଉଠିଲା । ମନ୍ଦିରରେ ବିରାଜିତ ସଙ୍କଟେଶ୍ୱର ମହାଦେବ ସେବାପୂଜା ନିମିତ୍ତ ସେପରି କିଛି ସ୍ଥାୟୀ ବ୍ୟବସ୍ଥା ନଥିବାରୁ ସ୍ଥାନୀୟ ପୂଜକଙ୍କ ଦ୍ୱାରା ଯତ୍‌ସାମାନ୍ୟ ପୂଜାବିଧି ଅନୁଷ୍ଠିତ ହେଉଅଛି ।

ସଙ୍କଟେଶ୍ୱର ମନ୍ଦିର ପାର୍ଶ୍ୱ ରାସ୍ତାର ପଶ୍ଚିମକୁ ଅଳ୍ପ ଦୂରରେ ବାମ ପାର୍ଶ୍ୱକୁ ପଡ଼ିଥିବା ଏକ ଶାଖା ରାସ୍ତା ଯେଉଁଠାରେ ଦୟାନଦୀ ବନ୍ଧକୁ ସ୍ପର୍ଶ କରିଛି, ସେଠାରେ ଏକାମ୍ରକ୍ଷେତ୍ରର ଦକ୍ଷିଣସୀମା ସୂଚକ ତୀର୍ଥ ପ୍ରସିଦ୍ଧ ଶୈବପୀଠରେ ବହିରଙ୍ଗେଶ୍ୱର ମହାଦେବ ବିରାଜିତ । ଏକାମ୍ର ଚନ୍ଦ୍ରିକା, ସ୍ୱର୍ଣ୍ଣାଦ୍ରି ମହୋଦୟ ପ୍ରଭୃତି ଗ୍ରନ୍ଥର ବର୍ଣ୍ଣନାନୁଯାୟୀ ଏକାମ୍ରକ୍ଷେତ୍ରସ୍ଥ ପବିତ୍ର ଆମ୍ରବୃକ୍ଷର ଅନ୍ୟତମ ଶାଖା ଧଉଳି ପାହାଡ଼ ପର୍ଯ୍ୟନ୍ତ ବିସ୍ତାରଲାଭ କରିଥିବାରୁ ଭୁବନେଶ୍ୱର କ୍ଷେତ୍ରର ଦକ୍ଷିଣସୀମା ନିର୍ଦ୍ଧାରକ ଭାବେ ଏହି ପାହାଡ଼ର ପଶ୍ଚିମ ପାଦଭୂମିରେ ପଶ୍ଚିମାଭିମୁଖୀ ବହିରଙ୍ଗେଶ୍ୱର ଲିଙ୍ଗ ବିଗ୍ରହ ଅବସ୍ଥାପିତ ହୋଇଥିଲେ । ସୋମବଂଶୀ ରାଜା ଯଯାତିଙ୍କ ରାଜତ୍ୱ କାଳରେ ନିର୍ମିତ ତ୍ରିରଥ ଶୈଳୀର ଏହି ବହିରଙ୍ଗେଶ୍ୱର ମନ୍ଦିରଟି କାଳକ୍ରମେ ପ୍ରାକୃତିକ ପ୍ରଭାବ ତଥା ଅବହେଳାର ଶିକାର ଫଳରେ ଅବାଞ୍ଛିତ ଲତାଗୁଳ୍ମ ଦ୍ୱାରା ଭାରାକାନ୍ତ ହୋଇ ଜୀର୍ଣ୍ଣ ପ୍ରାୟ ହୋଇଗଲା । ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗର ତଦାନୀନ୍ତନ ଅଧୀକ୍ଷକ ଐତିହାସିକ କେଦାରନାଥ ମହାପାତ୍ର ଧଉଳି କୀର୍ତ୍ତିରାଜିର ସୁରକ୍ଷା ତଥା ତତ୍‌ସଂଲଗ୍ନ ପ୍ରତ୍ନ ଐତିହାସିକ ସମ୍ପଦର ସଂରକ୍ଷଣ ନିମିତ୍ତ ଯଥୋଚିତ ପଦକ୍ଷେପ ନେଇଥିଲେ । ତାଙ୍କ ଉଦ୍ୟମରେ ୧୯୬୨ ଖ୍ରୀ:ରେ ଉକ୍ତ ଅବକ୍ଷୟଗାମୀ ବହିରଙ୍ଗେଶ୍ୱର ମନ୍ଦିରଟି ପୁନଃ ନିର୍ମାଣ କରାଯାଇ ପାରିଛି ସତ, ହେଲେ ମନ୍ଦିର ସଂପୃକ୍ତ ମୁଖଶାଳାଟି

ଅପୂର୍ଣ୍ଣ ରହିଯାଇଛି । ସମ୍ପ୍ରତି ମନ୍ଦିର ସମ୍ମୁଖରେ ବାହନ ବୃଷଭସ୍ତମ୍ଭ ପରିବେଷ୍ଟିତ ମୁଖଶାଳାର ମୂଳପତନର ଢାଞ୍ଚା ମାତ୍ର ରହିଛି । ମନ୍ଦିର ଦ୍ୱାରବନ୍ଧର ଉପର ପାଟରେ ନବଗ୍ରହ ଫଳକ ତଥା ମନ୍ଦିରବାଡ଼ ଖୋପରେ ଅବସ୍ଥାପିତ ପାର୍ବତୀ, କାର୍ତ୍ତିକେୟ, ଗଣେଶ ବିଗ୍ରହ ସମୂହ ପୁରାତନ ସ୍ଥାପତ୍ୟ ଶିଳ୍ପର ନିଦର୍ଶନ ସ୍ୱରୂପ ବିରାଜିତ ଅଛନ୍ତି । ପୁନଶ୍ଚ ମନ୍ଦିର ସନ୍ନିକଟରେ ଥିବା ପ୍ରାଚୀନ ଏକ ଜୀର୍ଣ୍ଣକୂପର ସଂସ୍କାର କାର୍ଯ୍ୟ ସମାହିତ ହେବା ସହିତ ମନ୍ଦିର ଚତୁଃପାର୍ଶ୍ୱରୁ ମୃତ୍ତିକାସ୍ତୂପ ଅପସାରଣ କରାଯାଇ ଇତଃସ୍ତତ ବିକ୍ଷିପ୍ତ ଭାବେ ପଡ଼ି ରହିଥିବା ପ୍ରସ୍ତରଖଣ୍ଡ ସବୁ ବ୍ୟବହାର ପୂର୍ବକ ମୁଖ୍ୟବିମାନ ସମ୍ମୁଖ ଚତ୍ୱର, ପଶ୍ଚିମପାର୍ଶ୍ୱରେ ଏକ ରୋଷଘର ଓ ପୃଥକ୍ ଏକ ମଣ୍ଡପ ନିର୍ମାଣ କରାଯାଇଅଛି ।

ଆଲୋଚ୍ୟ ବହିରଙ୍ଗେଶ୍ୱର ମନ୍ଦିର ପଶ୍ଚିମ ପାର୍ଶ୍ୱ ସଂଲଗ୍ନ ଏକ ଅନୁଚ୍ଚ ମନ୍ଦିରରେ ସିଦ୍ଧ ବିନାୟକ ବିଦ୍ୟମାନ । ଲିଙ୍ଗରାଜ ମନ୍ଦିର ଦକ୍ଷିଣ ପାର୍ଶ୍ୱବାଡ଼ସ୍ଥିତ ଗଣେଶଙ୍କ ସାଦୃଶ୍ୟ ବହନ କରି ଧଉଳିର ଏହି ସିଦ୍ଧଗଣେଶ - ମାରଖାମ କିଟୋ ଧଉଳି ପରିଦର୍ଶନ ସମୟରେ ବହିରଙ୍ଗେଶ୍ୱର ମନ୍ଦିର ମଧ୍ୟରେ ଉପାସିତ ହେଉଥିବା କଥା ଲେଖିଛନ୍ତି । ପରବର୍ତ୍ତୀ ସମୟରେ ପଶ୍ଚିମାଭିମୁଖୀ ଏକ କ୍ଷୁଦ୍ର ପିଢ଼ଶୈଳୀର ମନ୍ଦିର ନିର୍ମିତ ହୋଇ ଆଲୋଚ୍ୟ ଗଣପତିଙ୍କୁ ପ୍ରତିଷ୍ଠା କରାଗଲା, ଯେଉଁ ମନ୍ଦିରର ମୁଖଶାଳାଟି ଓଲଟ ନୌକା ସଦୃଶ ଖାଖରା ଶୈଳୀର ଅଟେ । ଏହି ଦେବୀପୀଠରେ ପ୍ରତ୍ୟେକ ସଂକ୍ରାନ୍ତି, ଶିବରାତ୍ରି, ଗଣେଶ ଚତୁର୍ଥୀ ବିଶେଷତଃ ରଜପର୍ବ ପାଳନ ଅବସରରେ ବହୁ ଜନସମାଗମ ହୋଇଥାଏ ।

ଐତିହ୍ୟ ସାଂସ୍କୃତିକ ପୀଠ ଧଉଳି କାଳକ୍ରମେ ସ୍ୱତଃ ଏକ ଆମୋଦପ୍ରମୋଦ କ୍ଷେତ୍ର ରୂପେ ବେଶ ଗୁରୁତ୍ୱ ଲାଭ କରିଅଛି । ପ୍ରତିବର୍ଷ ରଜପର୍ବ ଉପଲକ୍ଷେ ଏଠାରେ ଏକ ବଡ଼ ଧରଣର ମେଳା ଅନୁଷ୍ଠିତ ହେଉଅଛି । ଉକ୍ତ ମେଳାରେ ଦୟାନଦୀ ପାର୍ଶ୍ୱ ବହିରଙ୍ଗେଶ୍ୱର ମନ୍ଦିର ପାର୍ଶ୍ୱବର୍ତ୍ତୀ ପ୍ରାଙ୍ଗଣ ଅସ୍ଥାୟୀ ବିପଣୀମାଳାରେ ଭରିଯାଏ । ରଜପର୍ବ ଅବସରରେ ଆଞ୍ଚଳିକ ଅଧିବାସୀ ତଥା ବହିରାଗତ ଯାତ୍ରୀମାନଙ୍କର ଏଠାରେ ସମାବେଶ ହେତୁ ସମଗ୍ର ଧଉଳି ଅଞ୍ଚଳ ଲୋକାରଣ୍ୟ ହେବା ସହିତ ଆନନ୍ଦ ମୁଖରିତ ହୋଇଉଠେ । ସମବେତ ଜନତା ଏହି ସମୟରେ ଶାନ୍ତିସ୍ତୂପ ଦର୍ଶନ କରିବା ସଂଗେସଂଗେ ଏଠାରେ ବିରାଜିତ ଧବଳେଶ୍ୱର, ବହିରଙ୍ଗେଶ୍ୱର, ସଙ୍କଟେଶ୍ୱର ମହାଦେବ ସମେତ ମହାବୀର ହନୁମାନଙ୍କୁ ପୂଜାର୍ଚ୍ଚନା ଓ ଭୋଗରାଗ ଇତ୍ୟାଦି ଉତ୍ସର୍ଗ କରିଥାନ୍ତି । ଏହି ମେଳାର ଅନ୍ୟତମ ବୈଶିଷ୍ଟ୍ୟ ହେଉଛି ସିଦ୍ଧିଲାଭ ଉଦ୍ଦେଶ୍ୟରେ ବିଭିନ୍ନ ବିଦ୍ୟାଳୟର ବିଦ୍ୟାର୍ଥୀମାନେ ଏଠାରେ ବିରାଜିତ ସିଦ୍ଧ ଗଣେଶଙ୍କ ପାଖରେ ଚୂଡ଼ାଘଷା ଓ ପଣସଚକଟା ଭୋଗ ଲଗାଇଥାନ୍ତି । ଏହି ସମୟରେ ସମସ୍ତେ ବୁଲି ବୁଲି ପାହାଡ଼ କାଛିରେ ଖୋଦିତ ପ୍ରାଚୀନ ଗୁମ୍ଫା ସବୁ ସନ୍ଦର୍ଶନ କରି ଅତୀତରେ ଏଠାରେ ସିଦ୍ଧପୁରୁଷମାନେ ତପସ୍ୟା କରୁଥିବା କଥା ସ୍ମରଣ ପୂର୍ବକ ବିସ୍ମୟାଭିଭୂତ ହୋଇପଡ଼ନ୍ତି । ଧବଳେଶ୍ୱର ମନ୍ଦିର ସମ୍ମୁଖବର୍ତ୍ତୀ ନିମ୍ନାଂଶରେ ବିଦ୍ୟମାନ ଗିରିଗୁହା ଦେଖିବାକୁ ସମସ୍ତଙ୍କର ଅନୁସନ୍ଧିତ୍ସା ବଢ଼ିଯାଏ । ଭୂଗର୍ଭରେ ଖଣ୍ଡଗିରି ପାହାଡ଼ ସହିତ ସଂଯୁକ୍ତ ଏହି ଗହ୍ୱର ମଧ୍ୟରେ ମୁନିଋଷିମାନେ ତପସ୍ୟାରତ ଅଛନ୍ତି ବୋଲି ପ୍ରଚଳିତ ଜନଶ୍ରୁତି - ଏହି ସମୟରେ ଶୁଣିବାକୁ ମିଳେ । ସେହିପରି ଶାନ୍ତିସ୍ତୂପ ପାଦପୀଠର ନୈଋତ କୋଣସ୍ଥ ସାମାନ୍ୟ ନିମ୍ନକୁ ଥିବା ଏକ ବିବରର ମୁଖ ଦେଶର ଚଟାଣରେ ଏକ ମସୃଣ ପାଦଚିହ୍ନ ଦେଖି ସ୍ଥାନୀୟ ଲୋକମାନେ ଉକ୍ତ ବିବରକୁ 'ଗୁପ୍ତଗଙ୍ଗା' ବୋଲି ଅଭିହିତ କରିଥାନ୍ତି । ଏହି ଗୁପ୍ତଗଙ୍ଗାରୁ ସ୍ୱତଃ ଜଳ ଉଚ୍ଛୁଳି ଆସିବା ଭଳି ପାରମ୍ପରିକ ବିଶ୍ୱାସ ଉପରେ ନିର୍ଭର କରି ଯାତ୍ରୀ ଦର୍ଶନାର୍ଥୀମାନେ ଏଠାରେ ହରିବୋଲ ହୁଳହୁଳି ପକାଇବା ଶୁଣିବାକୁ ମିଳେ । ବାସ୍ତବତା ହେଉଛି ବର୍ଷସାରା ଶୁଷ୍କ ରହୁଥିବା ଏହି ଗୁପ୍ତଗଙ୍ଗାରେ ରଜମେଳା ସମୟରେ ପାଣିଭରି ଦିଆଯାଇଥାଏ । ତତ୍ପରେ ହସ୍ତୀପାହାଡ଼କୁ ଯାଇ ଶିଳାହସ୍ତୀର ମସ୍ତକରୁ ସିନ୍ଦୂର ଆଣି ନିଜ କପାଳ/କଣ୍ଠରେ ଲଗାଇଥାନ୍ତି । ତତ୍‌ସହିତ ଅଶ୍ୱତ୍‌ଥାମା ହସ୍ତୀ ସମ୍ମୁଖରେ ତାଳପତ୍ର ଭାଙ୍ଗି ତା'ର ଖାଦ୍ୟ ସ୍ୱରୂପ ପ୍ରଦାନ କରନ୍ତି । ଉକ୍ତ ଶିଳାହସ୍ତୀର ସମ୍ମୁଖ ଭାଗରେ ଉତ୍କୀର୍ଣ୍ଣ ଶିଳାଲିପି ପରିଦର୍ଶନ କରି ବେଶ୍ ଚମତ୍କୃତ ହୋଇଥାନ୍ତି । ଏହି ପାହାଡ଼ର କୌଣସି ଏକ ସ୍ଥାନରେ ଅପରିମିତ ଧନସମ୍ପଦ ଲୁକ୍କାୟିତ ରହିଥିବା କଥା ଉକ୍ତ ଶିଳାଲିପିରେ ଉଲ୍ଲେଖ ରହିଛି । ଯେ କେହି ଏହି ଲେଖ ପଢ଼ି ପାରିବ ସେ ଉଦ୍ଦିଷ୍ଟ ଗୁପ୍ତଧନର ସନ୍ଧାନ ପାଇବ ବୋଲି ଏବେ ମଧ୍ୟ ସାଧାରଣ ଲୋକେ ବିଶ୍ୱାସ କରିଥାନ୍ତି । ଧଉଳି ମେଳାରେ ସନ୍ଧ୍ୟା ସମୟରେ ସଂକୀର୍ତ୍ତନ, ପାଲା, ଦାସକାଠିଆ, ପାଟୁଆ ନାଚ ପ୍ରଭୃତି ସାଂସ୍କୃତିକ କାର୍ଯ୍ୟକ୍ରମ ପରିବେଷଣ କରାଯାଏ । ବିଳମ୍ବିତ ରାତ୍ରି ପର୍ଯ୍ୟନ୍ତ ସ୍ଥାନୀୟ ଲୋକମାନେ ଏହାକୁ ଉପଭୋଗ କରିଥାନ୍ତି । ରଜପର୍ବ ଅବଧି ପାଇଁ ଆୟୋଜିତ ଏହି ମେଳା ବାସ୍ତବରେ ସପ୍ତାହାଧିକ କାଳ ପର୍ଯ୍ୟନ୍ତ ଅବ୍ୟାହତ ରହେ । ଏତଦ୍‌ବ୍ୟତୀତ ଏହାର ଆକର୍ଷଣୀୟ ପ୍ରାକୃତିକ ସୌନ୍ଦର୍ଯ୍ୟ ହେତୁ ଏଠାରେ ବର୍ଷତମାମ ଓଡ଼ିଆ ଓ ହିନ୍ଦୀ ଚଳଚ୍ଚିତ୍ରର ସୁଟିଂ କାର୍ଯ୍ୟ ଚାଲିଥାଏ । ବିଶେଷତଃ ନଦୀ ସଂଲଗ୍ନ ଲଙ୍କାଆମ୍ବ ବୃକ୍ଷ ପରିବୃତ୍ତ ଧଉଳି ପାହାଡ଼ର ମନୋରମ ପରିବେଶରେ ଇଂରାଜୀ ନୂଆବର୍ଷ ଦିନ ରାଜଧାନୀ ତଥା ଦୂରଦୂରାନ୍ତରୁ ଲୋକମାନେ ଯାନବାହାନରେ ଏଠାକୁ ଆସି ଭୋଜିଭାତ କରି ମହାଧୂମଧାମରେ ନୂଆବର୍ଷ ପାଳନ କରିଥାନ୍ତି । ରାଜ୍ୟ ସରକାରଙ୍କ ଉଦ୍ୟମରେ ଗତ କେତେ ବର୍ଷ ହେଲା ଓଡ଼ିଆ ପାଇକ ଯୋଦ୍ଧାର ସ୍ମୃତିଚାରଣ ପାଇଁ ସପ୍ତାହେ ବ୍ୟାପୀ ଧଉଳି ଉତ୍ସବ ଆୟୋଜିତ ହୋଇ ବିଭିନ୍ନ ପ୍ରକାର ସମରକୌଶଳ ପ୍ରଦର୍ଶନ ସହ ନାଚ-ଗୀତ-ସଂଗୀତ ସମ୍ବଳିତ ସାଂସ୍କୃତିକ ଉତ୍ସବ ପାଳିତ ହେଉଅଛି ।

ସୁଜଳା ସୁଫଳା ଶସ୍ୟଶ୍ୟାମଳା ସମତଳ ଭୂମି ବଳୟିତ ଧଉଳି ପାହାଡ଼ରୁ ସୌନ୍ଦର୍ଯ୍ୟ ଯେପରି ମନୋମୁଗ୍ଧକର ସେହିପରି ଉପଭୋଗ୍ୟ

ମଧ । ତତ୍‌ସହିତ ଏହାର ଶୀର୍ଷରୁ ଦିଗ୍‌ବଳୟବ୍ୟାପୀ ନୈସର୍ଗିକ ଶୋଭା ସମ୍ପଦ ଦର୍ଶକ-ପର୍ଯ୍ୟଟକ ମନରେ ଯୁଗପତ ସନ୍ତୋଷ ଭରି ଦିଏ । ତେଣୁ ଏହି ପ୍ରାକୃତିକ ଦୃଶ୍ୟ ଉପଭୋଗ କରିବା ନିମିତ୍ତ ବର୍ଷର ସବୁ ସମୟରେ ଏଠାରେ ପ୍ରବଳ ଜନସମାବେଶ ହୋଇଥାଏ । ନବନିର୍ମିତ ଧବଳେଶ୍ୱର ମନ୍ଦିର ଓ ଶାନ୍ତିସ୍ତୂପକୁ ସଂଯୁକ୍ତ ଦୁଇଗୋଟି ପୃଥକ୍ ସର୍ପିଳ ପଥରେ ଧଉଳିର ଶୀର୍ଷାରୋହଣ କରି ଚତୁର୍ଦ୍ଦିଗକୁ ଦୃଷ୍ଟି ନିକ୍ଷେପ କଲେ ପୂର୍ବଦିଗରେ ଅଦୂରରେ ୨୦୩ ନମ୍ବର ଜାତୀୟ ରାଜପଥ/ଜଗନ୍ନାଥ ସଡ଼କ ସମାନ୍ତରାଳ ଭାବେ ଦକ୍ଷିଣାଭିମୁଖୀ ହୋଇ ପ୍ରବାହିତ ଭାର୍ଗବ-ପରଶୁରାମଙ୍କ ସ୍ମୃତିପୂତ ଭାର୍ଗବୀ ନଦୀ ଚକ୍ଷୁ ସମକ୍ଷରେ ଉଦଭାସିତ ହୋଇଉଠେ । ପୁନଶ୍ଚ ଆମ୍ର ନାରିକେଳ ବୃକ୍ଷର ସବୁଜ ବନାନୀ ମଧ୍ୟରୁ ଭାର୍ଗବୀ ନଦୀ ତଟବର୍ତ୍ତୀ ସରଦେଈପୁର, ରଥୀଜେମା ଓ ହୀରାପୁର ପ୍ରଭୃତି ଇତିହାସ ପ୍ରସିଦ୍ଧ ଗ୍ରାମମାନଙ୍କର ମଥାନ ଆତ୍ମପ୍ରକାଶ କରିଥାଏ । ଧଉଳି ପାହାଡ଼ର ଦକ୍ଷିଣରେ ଗଙ୍ଗ ରାଜତ୍ୱକାଳୀନ ବୃହଦାକାର କୌଶଲ୍ୟାଗଙ୍ଗ ପୁଷ୍କରିଣୀ ପରିଦୃଷ୍ଟ ହୋଇଥାଏ । ଏହି ସୁବିସ୍ତୃତ ଜଳାଶୟର ମଧ୍ୟଭାଗରେ ଜନୈକା ଗଙ୍ଗ ରାଜ୍ୟକନ୍ୟାଙ୍କ ନିର୍ବାସନ ନିମିତ୍ତ ଉଦ୍ଦିଷ୍ଟ ଏକ ପ୍ରାସାଦର ଧ୍ୱଂସାବଶେଷ ବିଦ୍ୟମାନ । ପ୍ରୋକ୍ତ କୌଶଲ୍ୟାଗଙ୍ଗଠାରେ ସମ୍ପ୍ରତି ଏସିଆ ମହାଦେଶର ସର୍ବବୃହତ୍ ମତ୍ସ୍ୟଚାଷ କେନ୍ଦ୍ର/ମତ୍ସ୍ୟ ଗବେଷଣା ପ୍ରତିଷ୍ଠାନ କାର୍ଯ୍ୟକ୍ଷମ ରହିଛି । ଧଉଳି ପାହାଡ଼ର ପଶ୍ଚିମ ପାଦଦେଶରେ ଦେବକୁଳ ସୁରକ୍ଷା ନିମିତ୍ତ ଦଧୀଚି ମହର୍ଷିଙ୍କର ଅସ୍ଥିଦାନର ପବିତ୍ର ସ୍ମାରକୀ ବହନ ପୂର୍ବକ ପ୍ରବହମାନ ଦୟାନଦୀ ଓ ତାହାର ତଟବର୍ତ୍ତୀ ଗଙ୍ଗରାଜ ପ୍ରତିଷ୍ଠିତ ଶାସନ ଗ୍ରାମ ସବୁ ଦୃଷ୍ଟି ପଥାରୂଢ଼ ହୁଏ । ଧଉଳି ପାହାଡ଼ର ପଶ୍ଚିମୋତ୍ତର ଚକ୍ରବାଳରେ ଐରସମ୍ରାଟ ଖାରବେଳଙ୍କ ଅକ୍ଷୟକୀର୍ତ୍ତି ଜୈନ ମନ୍ଦିର ଓ ହାତୀଗୁମ୍ଫା ଶିଳାଲେଖ ସମ୍ବଳିତ ଖଣ୍ଡଗିରି ଓ ଉଦୟଗିରି ଦୃଷ୍ଟିଗୋଚର ହୁଏ । ଉତ୍ତରରେ ଧଉଳି ପାହାଡ଼ର କାନ୍ଥି ସ୍ପର୍ଶକରି ପ୍ରବାହିତ ଦୟାନଦୀର ଅପରପାର୍ଶ୍ୱରେ କଳିଙ୍ଗ ଯୁଦ୍ଧ ସଂଘଟିତ ସ୍ଥାନ 'ରଣଗୋହିରୀ' ଅଦ୍ୟାପି 'ଅଣେଇଗୋହରି' ନାମରେ ଲୋକସ୍ମୃତିରେ ବଞ୍ଚି ରହିଛି । ପୁନଶ୍ଚ ଅନତି ଦୂରରେ ପ୍ରବହମାନ ଗନ୍ଧବତୀ ନଦୀର ଉତ୍ତରପାର୍ଶ୍ୱରେ ଅଶୋକଙ୍କ ରାଜତ୍ୱର ବିଂଶ ବର୍ଷରେ ଶାକ୍ୟମୁନି ଗୌତମବୁଦ୍ଧଙ୍କ ଜନ୍ମସ୍ଥାନର ପ୍ରାମାଣିକତା ବିଜ୍ଞପିତ କରି ପ୍ରାକୃତ ଭାଷା ତଥା ବ୍ରାହ୍ମୀଲିପିରେ ଉତ୍କୀର୍ଣ୍ଣ ଲୁମ୍ବିନୀ ସ୍ତମ୍ଭଲେଖ ପ୍ରୋଥିତ ସ୍ଥାନ କପିଳବସତି - କପିଳବାସ୍ତୁ - କପିଳେଶ୍ୱର ଗ୍ରାମ ସମେତ କପିଳନାଥ ଶିବ ମନ୍ଦିର ଦୃଷ୍ଟି ସମକ୍ଷୀଭୂତ ହୋଇଥାଏ । ପ୍ରକାଶଥାଉ କି ବୀରେନ୍ଦ୍ର ନାଥ ରାୟଙ୍କ ଦ୍ୱାରା ସଂଗ୍ରହ ତଥା ବିକ୍ରୟ କରାଯାଇଥିବା ଆଲୋଚ୍ୟ ଅଭିଲେଖ ଫଳକଟି ସମ୍ପ୍ରତି କୋଲକାତା ସ୍ଥିତ ଆଶୁତୋଷ ସଂଗ୍ରହାଳୟର ମାଲିକାନାଭୁକ୍ତ ହୋଇଅଛି । କପିଳେଶ୍ୱରରୁ ଆବିଷ୍କୃତ ପ୍ରୋକ୍ତ ଶିଳାଲେଖକୁ ଓଡ଼ିଶା ରାଜ୍ୟ ସଂଗ୍ରହାଳୟକୁ ଫେରାଇ ଆଣିବା ନିମିତ୍ତ ଏଯାବତ୍ କୌଣସି ପାରଦର୍ଶୀ ଉଦ୍ୟମ ଆରମ୍ଭ ନହେବା ବାସ୍ତବରେ ପରିତାପର ବିଷୟ ନୁହେଁ କି ? ଏଠାରେ ସୂଚିତ କରାଯାଇପାରେ ଯେ ଏହି ଶିଳାଭିଲେଖ ଖଚିତ ସ୍ତମ୍ଭ - ସମ୍ପ୍ରତି ଭାସ୍କରେଶ୍ୱର ଶିବଲିଙ୍ଗ ରୂପେ ଉପାସିତ ହେବା ସହିତ ଏହାର ଶୀର୍ଷସ୍ଥ ଏକ ସିଂହ - ଡାକରାବିଭୀଷଣ ମନ୍ଦିର ଓ ଏହାର ପାଦପୀଠ - ଓଡ଼ିଶା ନଦୀ ସଂଗ୍ରହାଳୟ ପ୍ରବେଶ ପଥରେ ପରିତ୍ୟକ୍ତ ଅବସ୍ଥାରେ ପଡ଼ି ରହିଛି । ଆଲୋଚ୍ୟ କପିଳେଶ୍ୱରର ପୂର୍ବକୁ ଲିଙ୍ଗରାଜ ମନ୍ଦିର ସମେତ ମନ୍ଦିର ନଗରୀ ଏକାମ୍ରକ୍ଷେତ୍ର ଓ ତା'ର ପୃଷ୍ଠପଟରେ ପ୍ରାସାଦମାଳିନୀ ନୂଆ ରାଜଧାନୀ ଦୃଷ୍ଟିପଥରେ ଉଦ୍‌ଭାସିତ ହୋଇଉଠେ । ସର୍ବଶେଷରେ ଧଉଳିର ଐଶାନ୍ୟକୋଣରେ ଗନ୍ଧବତୀ ନଦୀ ଗଡ଼ଖାଇ ରୂପେ ବଳୟିତ ଇତିହାସ ପ୍ରସିଦ୍ଧ ଶିଶୁପାଳଗଡ଼ର ଧ୍ୱଂସ କବଳିତ ପ୍ରାଚୀର ଦୃଶ୍ୟମାନ ହୋଇଥାଏ । ବାସ୍ତବରେ ଏତାଦୃଶ ଇତିହାସର ସ୍ୱାକ୍ଷର ବହନ କରି ପ୍ରାଚୀନ ଓଡ଼ିଶାର ଅତୀତ ଗୌରବକୁ ବିଜ୍ଞପିତ କରୁଥିବା ସ୍ଥାନ ପରିବେଷ୍ଟିତ ଏହି ଧଉଳି ପାହାଡ଼ ଉପରୁ ଆଲୋଚ୍ୟ ବିହଙ୍ଗମ ଦୃଶ୍ୟ ଉପଭୋଗ କରିବା ନିମିତ୍ତ ପ୍ରତ୍ୟହ ଦେଶବିଦେଶରୁ ହଜାର ହଜାର ପର୍ଯ୍ୟଟକ ଏଠାକୁ ଆସିଥାନ୍ତି ।

ସମ୍ପ୍ରତି ଧଉଳି ପାହାଡ଼ ଯେ ଓଡ଼ିଶାର ଏକ ପ୍ରମୁଖ ପର୍ଯ୍ୟଟନସ୍ଥଳୀ ରୂପେ ପରିଗୃହୀତ ହୋଇଅଛି, ଏଥିରେ ସନ୍ଦେହ ନାହିଁ । ବହିରାଗତ ଯାତ୍ରୀ ଦର୍ଶନାର୍ଥୀମାନେ ଭୁବନେଶ୍ୱର, କୋଣାର୍କ, ପୁରୀ ପରିଭ୍ରମଣରେ ଆସିବା ଅବସରରେ ଅନ୍ୟତମ ପର୍ଯ୍ୟଟନ କେନ୍ଦ୍ର ଏହି ଧଉଳି ପରିଦର୍ଶନକୁ ଯଥେଷ୍ଟ ପ୍ରାଧାନ୍ୟ ଦେଇଥାନ୍ତି । ଧଉଳି ପାହାଡ଼ର ବିଭିନ୍ନ କୀର୍ତ୍ତି ତଥା ପ୍ରାକୃତିକ ଦୃଶ୍ୟାବଳୀ ସନ୍ଦର୍ଶନରେ ପର୍ଯ୍ୟଟକମାନେ ଯେପରି ଆତ୍ମହରା ହୋଇପଡ଼ନ୍ତି, ସେହିପରି ପ୍ରତ୍ନତତ୍ତ୍ୱବିତ୍‌ମାନେ ଏଠାରୁ ପ୍ରଚୁର ପ୍ରେରଣାଲାଭ କରିଥାନ୍ତି । ରାତ୍ରିରେ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିବା ନିମିତ୍ତ ଉଭୟ ଧବଳେଶ୍ୱର ମନ୍ଦିର ଓ ଶାନ୍ତିସ୍ତୂପକୁ ଉଜ୍ଜ୍ୱଳ ଆଲୋକମାଳାରେ ସୁସଜ୍ଜିତ କରିବା ସହିତ ଜାତୀୟ ରାଜପଥରୁ ଧଉଳିକୁ ସଂଯୋଜିତ ରାସ୍ତାରେ ବୈଦ୍ୟୁତିକ ଆଲୋକ ବ୍ୟବସ୍ଥା କରାଯାଇଛି । ଦେଶ ବିଦେଶାଗତ ପର୍ଯ୍ୟଟକଙ୍କୁ ସମଧିକ ଆକୃଷ୍ଟ କରିବା ନିମିତ୍ତ ଓଡ଼ିଶାର ପର୍ଯ୍ୟଟନ ଶିଳ୍ପକୁ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ କରାଯିବାର ଐତିହାସିକ ସ୍ମୃତିବହନ କରି ମୂକସାକ୍ଷୀ ରୂପେ ବିଦ୍ୟମାନ ଧଉଳିଗିରିଠାରେ ଏକ ଶାନ୍ତିବନ ପ୍ରତିଷ୍ଠା ସହିତ ଏକ ଖୋଲାମଞ୍ଚ ବା ଥିଏଟର ସ୍ଥାପନ ନିମନ୍ତେ ରାଜ୍ୟ ସରକାର ଯୋଜନା ପ୍ରସ୍ତୁତ କରିଅଛନ୍ତି । ଏତଦ୍‌ବ୍ୟତୀତ ଏଠାରେ ଏକ ଧର୍ମଶାଳା, ଅତ୍ୟାଧୁନିକ ହୋଟେଲ ଏବଂ ସ୍ନାନାଦି କର୍ମ ସମ୍ପାଦନ ପାଇଁ ସୁଲଭ ଶୌଚାଳୟ ସମେତ ଦୟାନଦୀରେ ଏକ ପଥର ଘାଟ ନିର୍ମାଣ କରାଗଲେ ଏହା ପର୍ଯ୍ୟଟକମାନଙ୍କ ପାଇଁ ବେଶ୍ ଉପଯୋଗୀ ହୋଇପାରିବ ।

ନୂଆଗାଁ, ଇଟିପୁର
ଭୁବନେଶ୍ୱର-୨

# ପଣ୍ଡିତ ନେହରୁ ଓ ଶ୍ରମିକ ଶ୍ରେଣୀ

ସୌରୀବନ୍ଧୁ କର

ଭାରତ ସ୍ୱାଧୀନତା ପାଇବାର ବହୁପୂର୍ବରୁ ଭାରତର ସ୍ୱାଧୀନତା ଆନ୍ଦୋଳନର ପ୍ରମୁଖ ବ୍ୟକ୍ତିତ୍ୱ ଭାବରେ ନେହରୁ ଜଣାଶୁଣା ହୋଇଯାଇଥିଲେ । ଉପନିବେଶବାଦ ବିରୁଦ୍ଧରେ ଭାରତୀୟ ଜାତୀୟ କଂଗ୍ରେସର ଯେଉଁ ସଂଗ୍ରାମ ଚାଲିଥିଲା, ତାହାର ରଣକୌଶଳ ନିର୍ଦ୍ଧାରଣରେ ତାଙ୍କର ଚିନ୍ତାଧାରା ବେଶ୍ କିଛି ପ୍ରଭାବ ପକାଇଥିଲା । ସେସମୟରେ ପ୍ରଚଳିତ ଜାତୀୟତାବାଦୀ ବିଚାରଧାରା ଥିଲା ସୀମିତ ବୋଲି ନେହରୁ ବିଚାର କରି ଅତ୍ୟଧିକ ଦାରିଦ୍ର୍ୟ ଓ ନିଷ୍ପେଷିତ ଅବସ୍ଥାରେ ଶ୍ରମଜୀବୀ ଜନଗଣ ଥିବାର ସେ ଉପଲବ୍ଧି କରିଥିଲେ । ତେଣୁ ଭାରତୀୟ ଜାତୀୟ କଂଗ୍ରେସ ରାଜନୈତିକ କାର୍ଯ୍ୟକ୍ରମରେ ସେ ଶ୍ରମଜୀବୀ ଜନଗଣଙ୍କର ଦାବିଗୁଡ଼ିକୁ ରଖିବାକୁ ପକ୍ଷପୋଷଣ କରିଥିଲେ । ଶ୍ରମିକ ଶ୍ରେଣୀର ଦକ୍ଷତା ସଂପର୍କରେ ନେହରୁଙ୍କର ମତ ସାମ୍ରାଜ୍ୟବାଦ ବିରୋଧୀ ବିଚାରଗୋଷ୍ଠୀର ପରିପ୍ରକାଶ ହେତୁ ହିଁ ଘଟିଥିଲା । ସେ ବିଚାର କରୁଥିଲେ ଯେ ଜାତୀୟ କଂଗ୍ରେସ କେବଳ ଉପନିବେଶବାଦ ବିରୁଦ୍ଧରେ ସଂଗ୍ରାମ କରୁ ନାହିଁ ବରଂ ଏହା ଏକ ବହୁଶ୍ରେଣୀର ଆନ୍ଦୋଳନ ଭାବେ ସମସ୍ତ ଶ୍ରେଣୀ ଓ ବର୍ଗର ପ୍ରତିନିଧିତ୍ୱ କରି ସାମ୍ରାଜ୍ୟବାଦୀ ବିରୋଧୀ ଶକ୍ତିର ପ୍ରତିନିଧିତ୍ୱ କରୁଛି । ତେଣୁ ସେ ଚେଷ୍ଟା କରିଥିଲେ ଶ୍ରମିକ ଶ୍ରେଣୀ ଓ ସେଗୁଡ଼ିକର ଅନୁଷ୍ଠାନଗୁଡ଼ିକ ସହିତ ଜାତୀୟ କଂଗ୍ରେସର ଯୋଗସୂତ୍ର ।

୧୯୨୭ ମସିହାରେ ୟୁରୋପ ଗସ୍ତ କରି ନେହରୁ ଭାରତ ଫେରି ଆସିବା ପରେ ଭାରତର ଜାତୀୟ ଆନ୍ଦୋଳନରେ ନୂଆ ଉଦ୍ଦିପନା ପ୍ରକାଶ ପାଇଲା । ଶ୍ରମିକମାନଙ୍କର ଅସନ୍ତୋଷ ଫଳରେ ବ୍ୟାପକ ଧର୍ମଘଟ, ଛାତ୍ରମାନଙ୍କ ମଧ୍ୟରେ ଅସନ୍ତୋଷ ଏବଂ କୃଷକ ଶ୍ରେଣୀ ମଧ୍ୟରେ ହତାଶ ମନୋଭାବରୁ ଉତ୍ପନ୍ନ ବ୍ୟସ୍ତତା ଓ ବିବ୍ରତତା ଆସୁଥିବା ସାମାଜିକ ଦ୍ୱନ୍ଦ୍ୱର ପୂର୍ବାଭାସ ସୂଚାଉଥିଲା ଯାହା ଫଳରେ ଉପନିବେଶବାଦ ବିରୁଦ୍ଧରେ ଆନ୍ଦୋଳନ ତୀବ୍ର ହୋଇ ଉଠିଲା ।

ନେହରୁ ମାର୍ଚ୍ଚ ୧୯୨୬ରୁ ଡିସେମ୍ବର ୧୯୨୭ ପର୍ଯ୍ୟନ୍ତ ୟୁରୋପରେ ରହିଥିଲେ । ତାହା ତାଙ୍କ ଜୀବନର ଏକ ଉଲ୍ଲେଖନୀୟ ସମୟ ଥିଲା । କାରଣ ସେ ଉପନିବେଶବାଦ ନିର୍ଯ୍ୟାତନା ବିରୁଦ୍ଧରେ ଓ ସାମ୍ରାଜ୍ୟବାଦ ବିରୁଦ୍ଧରେ ସଂଗଠିତ ବ୍ରସେଲ କଂଗ୍ରେସରେ ଯୋଗ ଦେଇ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ସେ ମଧ୍ୟ ନଭେମ୍ବର ୧୯୨୭ରେ ସୋଭିଏତ ୟୁନିୟନ ଯାଇଥିଲେ ଏବଂ ଅକ୍ଟୋବର ବିପ୍ଳବର ୧୦ମ ବାର୍ଷିକୀ ଉତ୍ସବରେ ଯୋଗ ଦେଇଥିଲେ । ଏହା ତାଙ୍କର ରାଜନୈତିକ ଓ ବିଚାରଧାରା ବିକାଶର ମାର୍ଗକୁ ନୂତନ ମୋଡ଼ ଦେଇଥିଲା । ବାସ୍ତବରେ କହିଲେ ତାହା ଥିଲା ତାଙ୍କର ବାସ୍ତବ ରାଜନୈତିକ ଶିକ୍ଷା ।



ସେ ତାଙ୍କ 'ମୋ ନିଜ କାହାଣୀ'ରେ ଏ ସଂପର୍କରେ ଲେଖିଛନ୍ତି, '୧୯୨୬ ମସିହା ଶେଷଭାଗକୁ ମୁଁ ବର୍ଲିନରେ ଥିଲି । ମୁଁ ଶୁଣିଲି ଯେ ବ୍ରସେଲ୍ସରେ ସମସ୍ତ ଅତ୍ୟାଚାରିତ ଦେଶମାନଙ୍କର ଏକ କଂଗ୍ରେସ ବା ସମ୍ମିଳନୀ ବସିବ । ଏ କଥାଟା ମୋର ପସନ୍ଦ ହେଲା ଏବଂ ଏହି ବ୍ରସେଲସ୍ କଂଗ୍ରେସରେ ଭାରତ ଜାତୀୟ କଂଗ୍ରେସ ବିଧିବଦ୍ଧ ଭାବରେ ଯୋଗ ଦେବା ଉଚିତ ବୋଲି ମତ ଦେଇ ଲେଖିଲି । ମୋର ମତଗୃହୀତ

ହେଲା ଏବଂ ଏଥିରେ ଯୋଗ ଦେବା ନିମନ୍ତେ ଭାରତୀୟ କଂଗ୍ରେସର ପ୍ରତିନିଧି ରୂପେ ମୋତେ ନିଯୁକ୍ତ କରାଗଲା ।'

'ବ୍ରସେଲସ୍ କଂଗ୍ରେସ ଓ ତା'ପରେ ସମିତିର ଯେଉଁ ସବୁ ବୈଠକ ହେଲା, ସେଥିରେ ଯୋଗ ଦେଇ ଉପନିବେଶ ଓ ପରାଧୀନ ଦେଶମାନଙ୍କର ସମସ୍ୟା ମୁଁ କେତେକ ପରିମାଣରେ ବୁଝି ପାରିଥିଲି । ପାଶ୍ଚାତ୍ୟ ଦେଶର ଶ୍ରମିକ ଆନ୍ଦୋଳନର ବିବାଦ ସମ୍ବନ୍ଧରେ ମଧ୍ୟ କେତେକ କଥା ଜାଣି ପାରିଥିଲି ।' 'ମୋର ଦୃଷ୍ଟିକୋଣ ପ୍ରସାରିତ ହୋଇଥିଲା ଏବଂ ଜାତୀୟତା ମୋତେ ଏକ ସଂକୀର୍ଣ୍ଣ ଓ ଅସମ୍ପୂର୍ଣ୍ଣ ନୀତି ପରି ମନେ ହେଲା । ରାଜନୀତିକ ସ୍ୱାଧୀନତା ଦରକାର, ଏଥିରେ ସନ୍ଦେହ ନାହିଁ । ଭଲ ଦିଗରେ ଗତି କରିବା ନିମନ୍ତେ ଏହା ଏକ ପାହାଚ, ମାତ୍ର ସାମାଜିକ ସ୍ୱାଧୀନତା ଏବଂ ସମାଜ ଓ ସରକାର ସମାଜବାଦୀ ନୀତିରେ ଗଠିତ ନ ହେବା ପର୍ଯ୍ୟନ୍ତ କୌଣସି ଦେଶ ବା ବ୍ୟକ୍ତିବିଶେଷ ଅଗ୍ରସର ହୋଇ ପାରିବ ନାହିଁ ଏହା ମୋର ମତ ।'

ବ୍ରସେଲସ୍ କଂଗ୍ରେସ ପରେ ନେହରୁଙ୍କର ଦୃଢ଼ ଧାରଣା ହେଲା ଯେ ଭାରତର ସ୍ୱାଧୀନତା ଆନ୍ଦୋଳନର ଏକମାତ୍ର ଲକ୍ଷ୍ୟ 'ପୂର୍ଣ୍ଣ ସ୍ୱାଧୀନତା' ହେବା ଉଚିତ ଏବଂ ଜାତୀୟତାବାଦ ବ୍ୟାପକ ହେବା ପାଇଁ ସାଧାରଣ ଜନଗଣ, କୃଷକ ଓ ଶ୍ରମିକମାନଙ୍କୁ ସାମିଲ କରିବା ଦରକାର । ୧୯୨୭ ଡିସେମ୍ବର ମାସରେ ମାନ୍ଦ୍ରାଜଠାରେ ଜାତୀୟ କଂଗ୍ରେସର ଯେଉଁ ଅଧିବେଶନ ହେଲା, ନେହରୁ ପୂର୍ଣ୍ଣ ସ୍ୱାଧୀନତା ପାଇଁ ଏକ ପ୍ରସ୍ତାବ ଉପସ୍ଥାପିତ କଲେ ।

ସେ 'ମୋ ନିଜ କାହାଣୀ'ରେ ଏ ସଂପର୍କରେ ଉଲ୍ଲେଖ କରି ଲେଖିଛନ୍ତି, 'ମୁଁ ମାନ୍ଦ୍ରାଜରେ ପହଞ୍ଚିବା ସଂଗେସଂଗେ ସେ ଆବର୍ତ୍ତରେ ପଡ଼ିଗଲି । ମୁଁ କାର୍ଯ୍ୟକାରୀ ସମିତି ଆଗରେ ସ୍ୱାଧୀନତା, ଯୁଦ୍ଧ ସଂକଟ, ସାମ୍ରାଜ୍ୟ ବିରୋଧୀ ସଂଘ ସହିତ ସମ୍ବନ୍ଧ ପ୍ରଭୃତି କେତେଗୁଡ଼ିଏ ପ୍ରସ୍ତାବ ଉପସ୍ଥାପିତ କରିଥିଲି । ସେଗୁଡ଼ିକ ସବୁ ପ୍ରାୟ ଗୃହୀତ ହୋଇ କାର୍ଯ୍ୟକାରୀ କମିଟିର ପ୍ରସ୍ତାବ ହୋଇଗଲା । ସାଧାରଣ ଅଧିବେଶନରେ ମୋତେ ହିଁ ସେଗୁଡ଼ିକ ଉପସ୍ଥାପିତ କରିବାକୁ ପଡ଼ିଲା ଏବଂ ଆଶ୍ଚର୍ଯ୍ୟର କଥା ଯେ, ତାହା ସବୁ ଏକ ମତରେ ଗୃହୀତ ହୋଇଗଲା । କଂଗ୍ରେସର ମାମୁଲି ପ୍ରସ୍ତାବମାନଙ୍କଠାରୁ ମୋର ପ୍ରସ୍ତାବଗୁଡ଼ିକ ଏକ ପ୍ରକାର ସ୍ୱତନ୍ତ୍ର ଥିଲା, ଏଥିରେ ଏକ ନୂଆ ଦୃଷ୍ଟିକୋଣ ଥିଲା ।' 'ଏଥିରେ ସନ୍ଦେହ ନାହିଁ ଯେ ଅନେକ ଲୋକ ଏହାକୁ ପସନ୍ଦ କରୁନଥିଲେ, କେତେକଙ୍କର ଏଥିପ୍ରତି ଅସ୍ପଷ୍ଟ ଭାବରେ ଅଶ୍ରଦ୍ଧା ଥିଲା, ମାତ୍ର ଏହାକୁ ବିରୋଧ କରିବାର କିଛି ନଥିଲା । ସମ୍ଭବତଃ ସେମାନେ ଭାବୁଥିଲେ ଯେ, ଏଗୁଡ଼ିକ ପାଣ୍ଡିତ୍ୟପୂର୍ଣ୍ଣ ପ୍ରସ୍ତାବ, ମାତ୍ର ଏଥିରେ କ୍ଷତିଲାଭ କିଛି ନାହିଁ । ଏଥିରୁ ରକ୍ଷା ପାଇବାର ଉତ୍କୃଷ୍ଟ ଉପାୟ ହେଉଛି, ଶୀଘ୍ର ଏହାକୁ ଗ୍ରହଣ କରି ଅନ୍ୟ ଗୁରୁତର ପ୍ରସ୍ତାବର ଆଲୋଚନା କରିବା । ବର୍ଷେ, ଦୁଇବର୍ଷ ପରେ ସ୍ୱାଧୀନତା ପ୍ରସ୍ତାବ, କଂଗ୍ରେସର ଯେପରି ମୁଖ୍ୟ ଏବଂ ଅପ୍ରତିହତ ଦାବି ହେଲା ସେତେବେଳେ ଏହା ସେପରି ନଥିଲା, ଏହା ଏକ ବ୍ୟାପକ ଓ ବର୍ଦ୍ଧିଷ୍ଣୁ ଭାବର ଅଭିବ୍ୟକ୍ତି ମାତ୍ର ।'

୧୯୨୮ ନଭେମ୍ବର ମାସରେ ସେ ସୁଭାଷ ଚନ୍ଦ୍ର ବୋଷଙ୍କ ସହିତ ମିଶି ଭାରତ ପାଇଁ ସ୍ୱାଧୀନତା ଲିଗ୍ ନାମକ ଏକ ଚାପ ସୃଷ୍ଟିକାରୀ ସଂଗଠନ କଂଗ୍ରେସ ମଧ୍ୟରେ ଗଠନ କଲେ । ଏହି ପ୍ରତିଷ୍ଠାତାମାନେ ଆଶା କରିଥିଲେ, 'ସମଗ୍ର ଭାରତରେ ଏକ ଶକ୍ତିଶାଳୀ ଲିଗ୍ ସଂଗଠନ ଗଠନ କରିବେ ଏବଂ ଏହାକୁ ସ୍ୱାଧୀନତା ଓ ସାମ୍ୟବାଦ'ର ପ୍ରଚାର ପାଇଁ ସମଗ୍ର ଭାରତବର୍ଷ ସାରା ବ୍ୟବହାର କରିବେ ।' ଗୋଟିଏ ସମ୍ବାଦଦାତା ସମ୍ମିଳନୀରେ ନେହରୁ ଏହାର ନୀତି ଓ ଲକ୍ଷ୍ୟ କ'ଣ ହେବ ତାହା ବ୍ୟାଖ୍ୟା କରିଥିଲେ । 'ଏହା କଂଗ୍ରେସ ଓ ଦେଶ ମଧ୍ୟରେ ଥିବା ବାମପନ୍ଥୀମାନଙ୍କର ପ୍ରତିନିଧିତ୍ୱ କରିବ ।' 'ଏହା କଂଗ୍ରେସର ପୁନଃଉତ୍ଥାନ ନୁହେଁ କିନ୍ତୁ ଏହା ନିଶ୍ଚିତ ଭାବରେ କଂଗ୍ରେସକୁ ପ୍ରଭାବିତ କରିବାକୁ ଚାହେଁ ଏବଂ କଂଗ୍ରେସର ସଂଖ୍ୟାଧିକଙ୍କୁ ନେଇ କରି ଯିବାକୁ ଚାହେଁ ।' 'ଭାରତର ସ୍ୱାଧୀନତା ବ୍ୟତୀତ ଲିଗ୍ର ମଧ୍ୟ ଅନ୍ୟ କେତେକ ଲକ୍ଷ୍ୟ ରହିଛି । ସାମାଜିକ ଓ ଅର୍ଥନୈତିକ ସମାନତା ଭିତ୍ତିରେ ଭାରତୀୟ ସମାଜର ପୁନର୍ଗଠନ । ଏହି କାର୍ଯ୍ୟ ସହିତ ଶ୍ରମିକ, କୃଷକ ଓ ଅନ୍ୟାନ୍ୟ ପେଶାଦାର ଶ୍ରେଣୀମାନଙ୍କର ସଂଗଠନ ଗଢ଼ିବାରେ ସାହାଯ୍ୟ କରିବା ।'

୧୯୨୮ ଓ ୧୯୨୯ରେ ଦେଶରେ ଛାତ୍ର ଓ ଯୁବ ଅସନ୍ତୋଷ ଦେଖାଗଲା । ନେହରୁ ଦେଶସାରା ବହୁ ସ୍ଥାନରେ ଛାତ୍ର ଓ ଯୁବ ସମ୍ମିଳନୀରେ ଉଦ୍‌ବୋଧନ ଦେଇଥିଲେ । ୧୯୨୮ ଡିସେମ୍ବର ମାସରେ ନେହରୁ ଛାତ୍ର ଓ ଯୁବକମାନଙ୍କୁ ବମ୍ବେ ସମ୍ମିଳନୀରେ ନିୟୁତ ନିୟୁତ ଚାଷୀ ଓ ଶ୍ରମିକମାନଙ୍କର ଆବଶ୍ୟକତା ସଂପର୍କରେ ଦୃଷ୍ଟି ଦେବାକୁ ଯୁବକମାନେ ଏହାକୁ ନିଜର ସାମାଜିକ ଦାୟିତ୍ୱ ଭାବେ ବିଚାର କରିବାକୁ ଆହ୍ୱାନ ଦେଇଥିଲେ । 'ଏହାର ଅର୍ଥ ହେବ ଭାରତର ସ୍ୱାଧୀନତା ଏବଂ ସାମାଜିକ ଓ ଅର୍ଥନୈତିକ ଭିତ୍ତିରେ ଭାରତୀୟ ସମାଜର ପୁନର୍ଗଠନ ।' ସେ କହିଥିଲେ, 'ଭାରତର ସବୁଠାରୁ ଆଶ୍ଚର୍ଯ୍ୟଜନକ ଓ ଭୟଙ୍କର ଘଟଣା ହେଉଛି ଏହାର ଦାରିଦ୍ର୍ୟ ।'

ସେ 'ମୋ ନିଜ କାହାଣୀ'ରେ ଲେଖିଛନ୍ତି, '୧୯୨୮ ମସିହାରେ ଭାରତ ନୂତନ ସକ୍ରିୟ ହୋଇ ଅବରୁଦ୍ଧ ଭିତରୁ ଜାଗି ଉଠିଲା । ଶ୍ରମିକ ଆନ୍ଦୋଳନ ଖୁବ୍ ବୃଦ୍ଧି ପାଇଲା ଏବଂ ୭/୮ ବର୍ଷ ପୂର୍ବେ ଗଢ଼ା ହୋଇଥିବା ଅଖିଳ ଭାରତ ଟ୍ରେଡ୍ ୟୁନିୟନ୍ କଂଗ୍ରେସ ଖୁବ୍ ଏକ ଦୃଢ଼ ଓ ପ୍ରତିନିଧିମୂଳକ ଅନୁଷ୍ଠାନ ହୋଇ ଉଠିଥିଲା । ଖାଲି ଯେ ଏହାର ସଂଖ୍ୟା ଏବଂ ସଂଗଠନ ବୃଦ୍ଧି ପାଇଥିଲା, ତାହା ନୁହେଁ, ମତବାଦରେ ମଧ୍ୟ ଏହା ଅଧିକ ଲଢୁଆ ଓ ଚରମପନ୍ଥୀ ହେଉଥିଲା । ଘନଘନ ଧର୍ମଘଟ ହେଉଥିଲା ଏବଂ ଶ୍ରେଣୀ ଚୈତନ୍ୟ ଜାଗ୍ରତ ହେଉଥିଲା । ଲୁଗାକଳ ଓ ରେଳବାଇ ଶ୍ରମିକମାନେ ଭଲ ରୂପେ ସଂଗଠିତ ହୋଇଥିଲେ ଏବଂ ଏମାନଙ୍କ ଭିତରେ ବମ୍ବେର ଗିନି କାମଗାର ୟୁନିୟନ ଏବଂ ଜିଆଇପି

ରେଳବାଇ ୟୁନିୟନ ଅତ୍ୟନ୍ତ ଦୃଢ଼ ଓ ଉନ୍ନତ ସଂଘ ଥିଲା । ଶ୍ରମିକ ସଂଗଠନ ବଢ଼ିବା ସଂଗେସଂଗେ ପାଶ୍ଚାତ୍ୟ ଦେଶର ଆଭ୍ୟନ୍ତରୀଣ କଳହ ଓ ବିବାଦର ବୀଜ ବି ତାହା ସହିତ ଆସିଥିଲା ।'

୧୯୨୯ ଡିସେମ୍ବର ଲାହୋର କଂଗ୍ରେସ ଅଧିବେଶନରେ ସେ ଜାତୀୟ କଂଗ୍ରେସ ଓ ଅଖିଳ ଭାରତ ଟ୍ରେଡ଼ ୟୁନିୟନ କଂଗ୍ରେସ ମଧ୍ୟରେ ସଂପର୍କର ଅଭିବୃଦ୍ଧି ଉପରେ ଗୁରୁତ୍ୱ ଆରୋପ କରିଥିଲେ । ସେହି ବର୍ଷ ସେ ଏ.ଆଇ.ଟି.ୟୁ.ସି.ର ସଭାପତି ଭାବେ ନିର୍ବାଚିତ ହେଲେ । ସେ ଉଭୟ ସଂଗଠନର କର୍ମକର୍ତ୍ତା ରହିଥିବାରୁ ସେମାନଙ୍କ ମଧ୍ୟରେ ଯୋଗସୂତ୍ର ସ୍ଥାପନ ପୂର୍ବକ ପରସ୍ପରକୁ ନିକଟକୁ ଆଣିବା ଥିଲା ତାଙ୍କର ଉଦ୍ଦେଶ୍ୟ, ଯାହା ଫଳରେ 'ଜାତୀୟ କଂଗ୍ରେସ ଅଧିକ ସମାଜବାଦୀ, ଅଧିକ ସର୍ବହରା ଓ ଅଧିକ ଶ୍ରମିକଙ୍କୁ ଜାତୀୟ ମୁକ୍ତି ସଂଗ୍ରାମରେ ଭର୍ତ୍ତି କରିପାରିବ ।'

ନେହରୁ ଥିଲେ ଶ୍ରେଣୀ ସଚେତନ । ସେ ଉପନିବେଶ ସମାଜରେ ନିଷ୍ପେସିତ ହେଉଥିବା ଓ ନିଷ୍ପେସିତ କରୁଥିବା ଶ୍ରେଣୀ ମଧ୍ୟରେ ଥିବା ପାର୍ଥକ୍ୟକୁ ବୁଝି ଥିଲେ । ଶ୍ରମିକ ଶ୍ରେଣୀ ଆର୍ଥିକ ଓ ଐତିହାସିକ ଦୃଷ୍ଟିରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଶ୍ରେଣୀ କାରଣ ସେମାନଙ୍କ ହାତରେ ରହିଛି ଉତ୍ପାଦନ । ଏହା ମଧ୍ୟ ଆଗାମୀ ଭବିଷ୍ୟତ ଶକ୍ତିର ପ୍ରତିନିଧିତ୍ୱ କରୁଥିଲା କାରଣ ଏହା ଥିଲା ସବୁଠାରୁ ବୈପ୍ଳବିକ ଶ୍ରେଣୀ । ଶ୍ରମିକ ଶ୍ରେଣୀ ସଂପର୍କରେ ନେହରୁଙ୍କର ବିଚାରପୂର୍ଣ୍ଣ ରୂପ ନେବାବେଳକୁ ଜାତୀୟ କଂଗ୍ରେସ ଶ୍ରମିକ ପ୍ରଶ୍ନ ଉପରେ ଦୃଷ୍ଟି ଦେବାକୁ ଆରମ୍ଭ କରିଥିଲା । ପ୍ରଥମ ବିଶ୍ୱଯୁଦ୍ଧ ପରେ ଶ୍ରମିକ ଶ୍ରେଣୀ ଜାତୀୟ ରାଜନୀତିର ମୁଖ୍ୟସ୍ରୋତକୁ ଆସିଥିଲା । ଲାଲା ଲଜପତ ରାୟ ଥିଲେ ପ୍ରଥମ ବ୍ୟକ୍ତି ଯେ ହୃଦୟଙ୍ଗମ କରିଥିଲେ ପୁଞ୍ଜିବାଦ ଓ ସାମ୍ରାଜ୍ୟବାଦ ମଧ୍ୟରେ ଅବିଚ୍ଛେଦ୍ୟ ସଂପର୍କ ରହିଛି ଏବଂ ଏହା ବିରୁଦ୍ଧରେ ସଂଗ୍ରାମ କରିବାରେ ଶ୍ରିମକମାନଙ୍କର ଭୂମିକା । ଟ୍ରେଡ୍ ୟୁନିୟନ ଓ କଂଗ୍ରେସ ମଧ୍ୟରେ ବହୁ କେତେକ କଂଗ୍ରେସ ସଭ୍ୟ ଯୋଗସୂତ୍ର ସଂପର୍କ ରକ୍ଷା କରୁଥିଲେ କିନ୍ତୁ ଏ.ଆଇ.ଟି.ୟୁ.ସି. ବହୁ ଦିନ ପର୍ଯ୍ୟନ୍ତ କଂଗ୍ରେସ ପ୍ରଭାବରୁ ମୁକ୍ତ ରହିଥିଲା । କିନ୍ତୁ ନେହରୁ ଶ୍ରମିକ ପ୍ରଶ୍ନ ଉପରେ ନିଜର ମତ ଦେବାପରେ ଅବସ୍ଥାରେ ପରିବର୍ତ୍ତନ ହେଲା ।

୧୯୨୬ ମସିହା ପର୍ଯ୍ୟନ୍ତ ଜାତୀୟ ଆନ୍ଦୋଳନ ଅନ୍ଧାରରେ ଗତି କରୁଥିବାବେଳେ ୧୯୨୮ରେ ଏହା ଏକ ନୂତନ ମୋଡ଼ ନେଲା । ସେହି ବର୍ଷ ୨୦୩ ଗୋଟି ଧର୍ମଘଟ ହୋଇ ସମୁଦାୟ ୩୧୬୪୭୪୦୪ ମାନବ ଦିବସ ନଷ୍ଟ ହୋଇଥିଲା । ୧୯୨୮/୨୯ ବେଳକୁ ଟ୍ରେଡ଼୍ ୟୁନିୟନମାନଙ୍କର ସଭ୍ୟ ସଂଖ୍ୟା ହୋଇଥିଲା ୧,୮୦,୦୦୦ । ଟ୍ରେଡ଼୍ ୟୁନିୟନ ଆନ୍ଦୋଳନରେ ମାର୍କସବାଦୀ ବିଚାରଧାରାର ଶକ୍ତିମାନେ ନିଜର ଆସ୍ଥାନ ଜମେଇ ସାରିଥିଲେ । ସାମନ୍ତବାଦୀ ଶାସକ କମ୍ୟୁନିଷ୍ଟମାନଙ୍କୁ ପ୍ରଥମରୁ ହିଁ ଦବାଇ ଦେବାକୁ ଚେଷ୍ଟା ଜାରି ରଖିଥିଲେ ଫଳରେ ଟ୍ରେଡ଼୍ ୟୁନିୟନ ପ୍ରତିଷ୍ଠା ଲାଭ କରି ଶ୍ରେଣୀ ସଂଘର୍ଷକୁ ଗ୍ରହଣ କଲା । ୧୯୨୫ ଡିସେମ୍ବର ମାସରେ କାନପୁରଠାରେ ଭାରତୀୟ କମ୍ୟୁନିଷ୍ଟ ପାର୍ଟି ଜନ୍ମ ଲାଭ କଲା ଏବଂ ଗଣ ଆନ୍ଦୋଳନର ସୂତ୍ରପାତ କଲା ଯାହାର ଆଦର୍ଶ ହେଲା ଜାତୀୟ ସ୍ୱାଧୀନତା ଓ ସାମାଜିକ ନ୍ୟାୟ ।

ନେହରୁ ଏଇ ନୂତନ ପରିସ୍ଥିତିକୁ ଲକ୍ଷ୍ୟ କରି ମୁକ୍ତି ସଂଗ୍ରାମର ରଣକୌଶଳ ସ୍ଥିର କରିଥିଲେ । ସେ ଶ୍ରମିକ ଶ୍ରେଣୀର ଉତ୍‌ଥାନକୁ ଲକ୍ଷ୍ୟ କରି ଲେଖିଥିଲେ, 'ଭାରତରେ ବହୁଳ ଉଦ୍ୟୋଗୀକରଣ ହୋଇଥିବା ହେତୁ ଫ୍ୟାକ୍ଟେରୀରେ କାର୍ଯ୍ୟ କରୁଥିବା ଶ୍ରମିକମାନଙ୍କ ପ୍ରତି ଦୃଷ୍ଟି ଦେବାର ଆବଶ୍ୟକତା ରହିଛି । ବାସ୍ତବରେ ଅତୀତର ଇତିହାସକୁ ଲକ୍ଷ୍ୟ କଲେ ଦେଖାଯାଏ ଯେ ବିଭିନ୍ନ ଫ୍ୟାକ୍ଟେରୀରେ ଷ୍ଟ୍ରାଇକ୍ ଓ ଲକ୍ ଆଉଟ ଓ ଗୁଳିଚାଳନା ଏତେ ପର୍ଯ୍ୟାପ୍ତ ଯେ କେହି ହେଲେ ଉଦ୍ୟୋଗିକ ଶ୍ରମିକଙ୍କୁ ଅବହେଳା କରିପାରିବ ନାହିଁ ।' ସେ ଆହୁରି ମଧ୍ୟ କହିଲେ ଯେ ଶ୍ରମିକମାନଙ୍କର ଶକ୍ତି ବୃଦ୍ଧି ଫଳରେ ସେମାନଙ୍କ ଦ୍ୱାରା ଉତ୍ପନ୍ନ ବିପଦକୁ ଉପନିବେଶ ସରକାର ଆଖି ବୁଜି ଦେବ ନାହିଁ । କଂଗ୍ରେସ ଏହାକୁ ଲକ୍ଷ୍ୟ କରି ମତ ଦେଲା, 'ସରକାର ଉପରେ ପ୍ରକୃତ ବିପଦ କୃଷକ ଓ ଶ୍ରମିକମାନଙ୍କଠାରୁ ଦେଖା ଦେଇଛି କାରଣ ସେମାନେ ସଂଗଠିତ ଭାବରେ ଆନ୍ଦୋଳନ କରି ଗଣଆନ୍ଦୋଳନର ନେତୃତ୍ୱ ନେଇ ପାରିବେ ।'

ସରକାର ଶ୍ରମିକମାନଙ୍କ ଉପରେ କୌଣସି କଠୋର ପଦକ୍ଷେପ ନେବା ବିରୁଦ୍ଧରେ ନେହରୁ ତାଙ୍କର ସ୍ୱର ଉତ୍ତୋଳନ କଲେ । ଶ୍ରମିକମାନଙ୍କର ଗଣତାନ୍ତ୍ରିକ ଅଧିକାର ପାଇଁ ନେହରୁ ଶ୍ରମିକମାନଙ୍କ ସହିତ କଂଗ୍ରେସ କାନ୍ଧକୁ କାନ୍ଧ ମିଳାଇ ଚାଲିବା ଉପରେ ଗୁରୁତ୍ୱ ଦେଲେ । ନେହରୁ କିନ୍ତୁ ଶ୍ରମିକ ନେତା ନଥିଲେ । ୧୯୨୯ ମସିହାରେ ନାଗପୁରଠାରେ ଅନୁଷ୍ଠିତ ଏ.ଆଇ.ଟି.ୟୁ.ସି.ର ବାର୍ଷିକ ସମ୍ମିଳନୀରେ ସଭାପତି ଭାବେ ଅଭିଭାଷଣ ଦେଇ ସେ କହିଥିଲେ, 'ଶ୍ରେଣୀ ସଂଗ୍ରାମ ରହିଥିଲା ଓ ବର୍ତ୍ତମାନ ମଧ୍ୟ ରହିଛି । ଆମେ ତାକୁ ଉପେକ୍ଷା କରିବାକୁ ଚାହିଁଲେ ମଧ୍ୟ ସେଠାରୁ ଅଲଗା ହୋଇ ପାରିବା ନାହିଁ ।' ନାଗପୁର ଏ.ଆଇ.ଟି.ୟୁ.ସି. ଅଧିବେଶନ ପରଠାରୁ ନେହରୁ ଶ୍ରମିକ ଆନ୍ଦୋଳନ ସହିତ ସଂପୃକ୍ତ ରହି ନଥିଲେ ମଧ୍ୟ ସେ ଯେ କଂଗ୍ରେସ ଆନ୍ଦୋଳନ ମଧ୍ୟରେ ଶ୍ରମିକମାନଙ୍କର ଯୋଗଦାନ ଓ ସେମାନଙ୍କର ଆନ୍ଦୋଳନ ଜାତୀୟ ମୁକ୍ତି ଆନ୍ଦୋଳନରେ ସାହାଯ୍ୟକାରୀ ଭୂମିକା ହେବ, ଏହାର ପଥ ଉନ୍ମୋଚନ କରିଥିଲେ ।

ଗଜପତି ନଗର
ଭୁବନେଶ୍ୱର- ୭୫୧୦୦୫

---

# ଭୂଗୋଳ ପୋଥି ପତରର ଯଯାତିନଗର

ଡଃ ପବିତ୍ର ମୋହନ ନାୟକ

**ଛୋ**ଟ ମୋର ଗାଁଟି,
ଭୂଗୋଳ ପୋଥି ପତରେ ପଛେ ନ ଥାଉ ତା'ର ନାଁଟି
ଛୋଟ ମୋର ଗାଁଟି ।

ଗାଁଟି ଛୋଟ । ନାଁ ଯଗତି । ବଉଦ ସହରର ପଶ୍ଚିମରେ ପ୍ରାୟ ପନ୍ଦର କି.ମି. ଦୂରରେ ମହାନଦୀ କୂଳରେ ଯଗତି । ଦେଖିଲେ ବିଶ୍ୱାସ ହୁଏ ନି, ଏଇଠି ଦିନେ ବଉଦ-ସୋନପୁର ଅଂଚଳର ଏକ ସୁପ୍ରଶସ୍ତ, ସମୃଦ୍ଧିଶାଳୀ ରାଜନଗର ଗଢ଼ି ଉଠିଥିଲା । ରାତ୍ରିର ଅନ୍ଧକାର ଭିତରେ ମିଂଜି ମିଂଜି ଦୀପ ଆଲୁଅରେ ନିଜ ଉଜ୍ଜ୍ୱଳ ଅତୀତକୁ ତନ୍ଦ୍ରାଳସ ନୟନରେ ଖୋଜୁଥିବା ଛୋଟ ଗାଁଟିଏ ଯଗତି । ଇତିହାସର ଯଯାତିନଗର ତଥାପି ଭୂଗୋଳ ପୋଥି ପତରରେ ଥାନଟିଏ ପାଇଛି ।

ଦଶମ ଶତାବ୍ଦୀର ଶେଷ ଦଶକରେ ଯଯାତି ମହାଶିବଗୁପ୍ତ ପ୍ରଥମ ନିଜ ରାଜଧାନୀ ସୁବର୍ଣ୍ଣପୁରରୁ ଯଯାତିନଗରକୁ ଉଠାଇ ଆଣିଥିଲେ । ନିଜ ନାମରେ ଏକ ବିରାଟ ନଗରୀ ସ୍ଥାପନ କଲେ । ପୁଷ୍ପ ସୁରଭିତ ଉପବନ, ବାପୀତଡ଼ାଗ, ହୀରାନୀଳା ରତ୍ନ ଖଚିତ ମହାର୍ଘ୍ୟ ଅଟ୍ଟାଳିକାମାନ ଗଢ଼ି ଉଠିଲା । ଏଇଠି ବିଳାସ-ହର୍ମ୍ମ୍ୟ ଶିଖରରେ ଠିଆ ହୋଇ ତରୁଣୀ ପୁରରମଣୀ ମହାନଦୀର ଉଲଙ୍ଗ ସୌନ୍ଦର୍ଯ୍ୟ ବିନ୍ଦୁ ବିନ୍ଦୁ ପାନ କରୁଥିଲା । ନୃତ୍ୟରତା ବାରାଙ୍ଗନାର ଚରଣ ନୂପୁର ଶିଂଜିନୀରେ ଚମକି ଉଠି ପାରାବତ ଶ୍ରେଣୀ ଚନ୍ଦ୍ରସ୍ନାତ ନୀଳ ଆକାଶରେ ଉଡ଼ିଯାଉଥିଲେ । ବାତାୟନ ଦେଇ ମହାନଦୀ-ତୁଙ୍ଗ-ତରଙ୍ଗ-ଶୀତଳ ଶୀକର ବହି ଆସୁଥିଲା । ଆଉ ତା'ରି ମଧୁର ସ୍ନିଗ୍ଧ ପରଶରେ ରତିକ୍ଳାନ୍ତା ନଗର ରମଣୀଙ୍କ ଅଙ୍ଗଗ୍ଳାନି ଅପସରି ଯାଉଥିଲା -

ମହାନଦୀ ତୁଙ୍ଗ ତରଙ୍ଗ ଭଙ୍ଗ
ସ୍ଫାରୋଚ୍ଛଳ ଶୀକରବଦ୍‌ଭିରାରାତ୍
ଯସ୍ମାତ୍ ରତାସିକ୍ତ ମଦାଙ୍ଗନାନାମ୍
ଶ୍ରମାପନୋଦଃ କ୍ରିୟତେ ମରୁଦ୍‌ଭିଃ ...
ତସ୍ମାତ୍ ଶ୍ରୀ ଯଯାତି ନଗରାତ୍ ... ।[୧]

ଦ୍ୱାଦଶ ଶତକର ପ୍ରଥମାର୍ଦ୍ଧ ପର୍ଯ୍ୟନ୍ତ ଏ ମହାନଗରୀ ସୋନପୁର-ବଉଦ ଅଂଚଳର ମଥାମଣି ସାଜିଥିଲା । ଶତ୍ରୁର ଘନ ଘନ ଆକ୍ରମଣ ସତ୍ତ୍ୱେ ଏ ଶତାୟୁ ସହର ମଥା ଟେକି ଛିଡ଼ା ହୋଇଥିଲା । କଲ୍ଲୋଳମାଳିନୀ ମହାନଦୀର କଳକଳ ସଂଗୀତରେ ଆତ୍ମବିଭୋର ହୋଇ ଉଠୁଥିଲା । ସେଦିନ ପରା କଳଚୁରୀ ସେନାପତି ଲକ୍ଷ୍ମଣରାଜ ଓଡ୍ର ଦେଶର କୋଶଳ ରାଜଙ୍କୁ ଯୁଦ୍ଧରେ ପରାସ୍ତ କରି ଏଇ ନଗରରୁ 'ରତ୍ନସ୍ୱର୍ଣ୍ଣମୟ' କାଳୀୟଦଳନ ମୂର୍ତ୍ତିଟି ନେଇ ସୋମେଶ୍ୱର ଦେବଙ୍କୁ ଭେଟି ଦେଇଥିଲେ । କେତେ କରୀ-ବାଜି, ଶୁଭ୍ର ବସନ, ସ୍ରକ୍‌ଚନ୍ଦନ ପାଦ ତଳେ ଅର୍ପଣ କରିଥିଲେ -

ଜିତ୍ୱା କୋଶଳ ନାଥମତ୍ର ନୃପତେ ରାପ୍ତସ୍ତୁ ଯଃ କାଳିୟଃ
ରତ୍ନସ୍ୱର୍ଣ୍ଣମୟଃ ଶୟେନ ବିହିତ ସୋମେଶ୍ୱରାଭ୍ୟର୍ଚ୍ଚନମ୍
ଦତ୍ତ୍ୱା ଯଃ କରୀବାଜି ଶୁଭ୍ରବସନ ସ୍ରକ୍‌ଚନ୍ଦନାଦିନ୍ ପୁନଃ
ସଂସାର ଶ୍ରମଶାନ୍ତୟେତି ବିନତସ୍ତୁଷ୍ଟାଭଃ ତୁଷ୍ଟେଃ ପ୍ରଭୁଃ ।[୨]

ସେଦିନ ବିଦ୍ରୋହୀ ସେନାପତିଗଣ ରାଜା ନଘୁଷଙ୍କ ଅତ୍ୟାଚାରରେ ଅତିଷ୍ଠ ହୋଇ କଳିଙ୍ଗରାଜ ଇନ୍ଦ୍ରରଥଙ୍କୁ ଆମନ୍ତ୍ରଣ କରି ଆଣିଥିଲେ ଏଇ ଯଯାତିନଗରକୁ । ଏଇ ହତଭାଗ୍ୟ ଯଯାତିନଗର ସେଦିନ ରାଜା ନଘୁଷଙ୍କ ଉଷ୍ମ ରକ୍ତରେ ରଂଜିତ ହୋଇଥିଲା । ନରସିଂହପୁର ତାମ୍ରଲେଖ ଲେଖିଥିଲା, ନଘୁଷଙ୍କ ଶତ୍ରୁ ଦକ୍ଷିଣରେ । ଶବର ରାଜ୍ୟରେ । ଅରଣ୍ୟର ପ୍ରମତ୍ତ ସିଂହ ସେ ।[୩] ତାକୁ ଯଯାତିନଗର ବରଣ କରି ଆଣିଲା । ଆଉ ନଘୁଷ ସେହି ଅସହିଷ୍ଣୁ ଅରାଜକତା ଭିତରେ ସେହି କ୍ଷୁଧିତ ସିଂହର ଶାଣିତ ନଖଦନ୍ତର ଶରବ୍ୟ ହେଲେ । ଏ ନରସଂହାରରେ ପିତୃବ୍ୟ ଅଭିମନ୍ୟୁ ମଲେ । ଅଭିମନ୍ୟୁଙ୍କ ପୁତ୍ର ଚଣ୍ଡିହାର ଜୀବନ ବିକଳରେ ଯଯାତିନଗରରୁ ପଳାୟନ କଲେ ।[୪] ରତ୍ନଗିରି ତାମ୍ରଲେଖର 'ଭୁତେଶତୁଲ୍ୟପ୍ରଭ'[୫] ନଘୁଷ, ଇଣ୍ଡିଏନ୍ ଏଣ୍ଟିକ୍ୱେରୀର ନଗେଶ[୬], ବାଣପୁର ଅଭିଲେଖର ବସରାଜ[୭] ଏଭଳି ହୀନମାନ ହୋଇ ଇତିହାସରୁ ବିଦାୟ ନେଲେ ।

ଏଇ ରକ୍ତାକ୍ତ ଇତିବୃତ୍ତର ମୂକସାକ୍ଷୀ ଯଯାତିନଗର ଇନ୍ଦ୍ରରଥଙ୍କ ରାଜତ୍ୱରେ ଆଶ୍ୱସ୍ତି ଅନୁଭବ କରିଥିବ । ମହାନଦୀର ଉତ୍ତାଳ ତରଙ୍ଗ ଥମି ଯାଇଥିବ । ଯେଉଁ ଖଡ୍ଗର ଝନତ୍‌କାର ଗିରିଦରୀରେ ପ୍ରତିଧ୍ୱନି ତୋଳିଥିଲା, ତାହା ସ୍ତବ୍ଧ ହୋଇଯାଇଥିବ । କିନ୍ତୁ ଯଯାତିନଗରର

ନାଗରିକ କପାଳରେ ସିନ୍ଦୂର ଟୋପାଟିଏ ଥାପି ଦେଉଁ ଦେଉଁ ତାକୁ ପୁଣି ପୋଛି ଦେଇଥିବ । ଦକ୍ଷିଣ-ପଶ୍ଚିମ ଦିଗ୍‌ବଳୟର ରକ୍ତବାଦଲ ଯଯାତିନଗରର ଆକାଶକୁ ପୁଣି ଥରେ ଢାଙ୍କି ଦେଇଥିବ । ଦୂରରୁ, ବହୁଦୂରରୁ ଯୁଦ୍ଧଭେରୀର ଗମ୍ଭୀର ନିର୍ଘୋଷରେ ଯଯାତିନଗରର ବକ୍ଷ ପୁଣି ଥରେ ଶିହରି ଉଠିଥିବ । ରାଜେନ୍ଦ୍ର ଚୋଳଙ୍କ ଦୁର୍ଦ୍ଧର୍ଷ ସେନାପତି ବିକ୍ରମ ସେଦିନ ହୁଗୁଳିରୁ ଗଂଗାଜଳ ଆଣୁ ଆଣୁ ଏଇ ସହରରେ ଅଟକି ଯାଇଥିବ ।[୮] କେଡ଼େ ବିରାଟ ବସତି ! କେତେ ମନ୍ଦିର, ତଡ଼ାଗ, ଉପବନ ! କେତେ ନଭଶ୍ଚୁମ୍ବୀ ଅଟ୍ଟାଳିକା ! ଚୋଳ ସେନାପତି ଲୋଭ ସମ୍ବରଣ କରିପାରିନଥିବ । ମହାନଦୀ କୂଳରୁ ଏ ସହରର ଶୋଭା, ନଗର ରମଣୀଙ୍କ ମଧୁର ନୟନ ବିଳାସ ମନ୍ତ୍ରମୁଗ୍ଧ କରି ଦେଇଥିବ ରଣଲିପ୍ସୁ ସେଇ ଚୋଳ ସେନାପତିକୁ । ଇତିହାସର ଚକ ଘୂରିଥିବ ।

ଇନ୍ଦ୍ରରଥଙ୍କ ରାଜତ୍ୱର ଶେଷ ପର୍ଯ୍ୟାୟରେ ଯଯାତିନଗର ଏହିଭଳି ପୁଣି ଥରେ ବିପର୍ଯ୍ୟସ୍ତ ହୋଇପଡ଼ିଥିଲା । ଚୋଳ ସେନାନୀଙ୍କ ଆକ୍ରମଣରେ 'ଓଡ୍ର ବିଷୟ'ର ଏ ଦୁର୍ଗମ ନଗର, ବ୍ରାହ୍ମଣ ଶାସନ ଏହି 'ସୁନ୍ଦର କୋଶଳନାଡୁ' ଶ୍ରୀହୀନ ହୋଇଗଲା ।[୯] ଧ୍ୱଂସସ୍ତୂପ ସାଜିଲା । ୧୦୨୩ ମସିହାରେ ଇନ୍ଦ୍ରରଥ ଅସହାୟ ପରିବାର ସାଥିରେ ବନ୍ଦୀ ହୋଇ ଚୋଳ ସେନାପତି ହାତରେ ପ୍ରାଣବଳି ଦେଲେ । ତିରୁମଲାଇ ଶିଳାଲେଖର ଏ 'ଆଦି ନଗର'ରେ ।[୧୦] ନଘୁଷଙ୍କ ଅତୃପ୍ତ ଆତ୍ମା ହୁଏତ ଆଶ୍ୱସ୍ତ ହୋଇଥିବ । କିନ୍ତୁ ତାଙ୍କ ପ୍ରିୟ ସହର ଛାରଖାର ହୋଇଯାଇଥିଲା ଏ ଯୁଦ୍ଧରେ । ସୋମବଂଶର ସୁଷମାମଣ୍ଡିତ ରାଜଧାନୀର ଶିରୀ ତୁଟି ଯାଇଥିଲା, ଏଇ ସହରର ଶିରୀ ଯାହା ଦିନେ ବହୁ ଦୂର ପର୍ଯ୍ୟନ୍ତ ପ୍ରସରି ଯାଇଥିଲା - A city whose great fame knows no decline.[11]

କାହିଁ ବଙ୍ଗଦେଶ ଆଉ କାହିଁ ଯଯାତିନଗର ! ତଥାପି ଦ୍ୱାଦଶ ଶତାବ୍ଦୀର ବଂଗରାଜ ଲକ୍ଷ୍ମଣ ସେନଙ୍କ ଦରବାରର କବି ଧୋୟୀ ପବନକୁ ପଠାଇଛନ୍ତି ଯଯାତିନଗର ଦେଇ ବଂଗ ଦେଶକୁ । ପବନ ଦୂତମ୍‌ରେ କାବ୍ୟ ନାୟିକା କନକପୁର (ସୁବର୍ଣ୍ଣପୁର) ଯକ୍ଷଲଳନା ପଠାଇଛି ପବନକୁ । ପ୍ରଣୟିନୀର ସନ୍ଦେଶ ନେଇ ପବନ ଯାଇଛି ଯଯାତିନଗର ପଥରେ । ଏଇଠି ଦେଖିଛି କେରଳୀ କାମିନୀର ରମଣଲୀଳା । ଯା'ରି ଅଙ୍ଗନରେ ସେଦିନ କ୍ରମୁକ ତରୁ ଚାରିକଡ଼େ ନାଗବଲ୍ଲୀଲତା ହାତ ବେଢ଼ି ରହିଥିଲା । ଯେଉଁଠି ତରୁଣୀ ରମଣୀ ରତିଲୀଳାକୁଶଳା କେରଳୀ କିଶୋରୀ ଗହଣରେ କାମକଳା ଶିଖୁଥିଲା -

ଲୀଳାଂ ନେତୁଂ ନୟନ ପଦବୀଂ କେରଳୀନାଂ ରତେଷ୍ଟେତ୍
ଗଚ୍ଛେଃ ଖ୍ୟାତାଂ ଜଗତି ନଗରୀମାଖ୍ୟୟାତାଂ ଯଯାତେଃ
ଗାଢ଼ାଶ୍ଳିଷ୍ଟଂ କ୍ରମୁକତରବଃ ପ୍ରାଙ୍ଗଣେ ନାଗବଲ୍ଲୌ
ବାଳାଂ ଯତ୍ର ପ୍ରିୟତମ ପରିରମ୍ଭମଧାପୟନ୍ତୀ ।[୧୨]

ଯଯାତି ମହାଶିବଗୁପ୍ତଙ୍କ ରାଜତ୍ୱର ନବମ ବର୍ଷରେ ଉତ୍କୀର୍ଣ୍ଣ କଟକ ପ୍ଲେଟ୍‌ର ବିନୀତପୁର ସହିତ ତାଙ୍କ ରାଜତ୍ୱର ଚତୁର୍ବିଂଶ ଓ ଅଷ୍ଟବିଂଶତିତମ ବର୍ଷରେ ପ୍ରଦତ୍ତ ତାମ୍ରଶାସନର ଯଯାତିନଗରର ବର୍ଣ୍ଣନାରେ ତାରତମ୍ୟ ନାହିଁ । ଏପରିକି ଯଯାତିଙ୍କ ଉତ୍ତରାଧିକାରୀ ମହାଭବଗୁପ୍ତ ଭୀମରଥଙ୍କ ତୃତୀୟ ବର୍ଷ ମାର୍ଗଶିର ମାସରେ ଓ ଏକାଦଶ ବର୍ଷର ଫାଲଗୁନ ମାସରେ ପ୍ରଦତ୍ତ କଟକ ଓ ଖଣ୍ଡପଡ଼ା ଅଭିଲେଖର ଯଯାତିନଗର ସେଇ ଭାଷାରେ ପାଠକ ଦୃଷ୍ଟିରେ ପଡ଼େ । 'ପ୍ରେମନିରୁଦ୍ଧ ମୁଗ୍ଧ ମାନସ'ର ସେଇ ରସୋତ୍ତୀର୍ଣ୍ଣ ସହର ଯଯାତିନଗର । ଯେଉଁଠି ରତିକ୍ରୀଡ଼ା କୁଶଳ ପ୍ରଣୟୀ ଯୁଗଳର ନବନବ ରସବନ୍ଧରେ ପ୍ରତିଟି ମୁହୂର୍ତ୍ତ ପ୍ରଣୟ-ମଧୁର ହୋଇଉଠେ । ଉଷ୍ମ ଉତ୍ତେଜନାରେ ନୟନ ବିସ୍ଫାରିତ ହୋଇଯାଏ । କାମନାର ତୃପ୍ତି ଓ ଅତୃପ୍ତିରେ ମନ ଉତଳା ହୋଇଉଠେ । ପ୍ରେମିକର ନିବିଡ଼ ଆଲିଙ୍ଗନରେ କ୍ଳାନ୍ତି ଦୂର ହୋଇଯାଏ । ଦେହରେ ପୁଲକ ସଂଚରି ଯାଏ । ରତିରସ ସୀତ୍‌କାର ତୋଳେ -

ଓଁ ସ୍ୱସ୍ତି ପ୍ରେମ ନିରୁଦ୍ଧ ମୁଗ୍ଧ ମନସୋ ସ୍ଫାରୀଭବଚ୍ଚକ୍ଷୁସୋ -
ର୍ୟୂନୋର୍ଯତ୍ର ବିଚିତ୍ର ନିର୍ଭରରତ କ୍ରୀଡ଼ାକ୍ରମଂ ତଦ୍ୱତୋ ।
ବିଚ୍ଛିନ୍ନୋପି କୃତାତିମାତ୍ର ପୁଲକେ ରାବିର୍ଭବତ୍ ସୀତ୍‌କୃତୈ -
ରାଶ୍ଳେଷୈର୍ଗ୍ଲପିତକ୍ଳମୈଃ ସ୍ମରରସଃ କାମଂ ମୁହୂଃସ୍ୱାଦ୍ୟତେ ॥

ଏଇ ସେହି ପ୍ରଣୟର ସହର ଯଯାତିନଗର ଯାହାର ବରଙ୍ଗନାଙ୍କ 'ଅଶେଷ ବିଶେଷ' ରୂପଲାବଣ୍ୟରେ ଅପ୍ସରାର ମନ ବି ବିଷାଦଗ୍ରସ୍ତ ହୋଇଉଠେ । ହୃଦୟ ଈର୍ଷାରେ ଜର୍ଜ୍ଜରିତ ହୁଏ । କନ୍ଦର୍ପର ବାଣାଘାତରେ ବରାଙ୍ଗନାର ଦେହ ଶିହରି ଉଠେ । ତା' କର୍ଣ୍ଣୋତ୍ପଳରେ ତାଡ଼ିତ ପ୍ରଣୟୀ ଦେହରୁ ସ୍ୱେଦ ନିର୍ଗତ ହୁଏ । ପ୍ରଣୟ - ବିଭୋର ହୋଇଉଠେ ଏହି ସହର ଯଯାତିନଗର -

ଯତ୍ରା ଶେଷ ବିଶେଷ ରୂପ ମହିମା ପାସ୍ତାପ୍ସରଃ କାନ୍ତିଭି -
ର୍ଜାତେର୍ଷ୍ୟା କଳହେଷ୍ୱପି ପ୍ରଣୟିନଃ କର୍ଣ୍ଣୋତ୍ପଳୈସ୍ତାଡ଼ିତାଃ
ଜୟନ୍ତେ ପ୍ରବିଶଙ୍କିତ ସ୍ମରଶର ପ୍ରୋଦ୍ଭାପିତାନ୍ତର୍ବ୍ୟଥା
ସାନ୍ଦ୍ର ସ୍ୱେଦ ଜଳାବସେଚନ ବଶାନ୍ନିର୍ବାତ ରୋମାଙ୍କୁରାଃ ॥

ଏହି ସେହି ଯଯାତିନଗର ଯେଉଁଠି ଧବଳ ପ୍ରାସାଦ ଶୃଙ୍ଗରେ, ପ୍ରଣୟର ମଧୁର ମିଳନ ପୀଠରେ ବାରଲଳନା କଣ୍ଠର ମୁକ୍ତାପଂକ୍ତି ମତ୍ତହସ୍ତୀଦନ୍ତର ଆଲୋକରେ ଝଲସି ଉଠେ । ଆଉ ସେହି ଆଲୋକ ଶରତ ଆକାଶର ଚନ୍ଦ୍ରକୁ ନିଷ୍ପ୍ରଭ କରି ଅନ୍ଧକାରକୁ ଦୂରକୁ ଠେଲି ଦିଏ -

ଅଖୁତ୍ତୁଙ୍ଗକରୀନ୍ଦ୍ର ଦନ୍ତମୂଷକ ପ୍ରୋଦ୍‌ଭାସିରୋଚିଚୟୈ -
ର୍ଦ୍ଧ୍ୱାନ୍ତଧ୍ୱଂସନ ନିଷ୍ଫଳୀକୃତ ଶରଚ୍ଚନ୍ଦ୍ରୋଦୟୈଃ ସର୍ବଦା
ଯତ୍ରାସୀଦ ସତୀ ଜନସ୍ୟ ବିଶଦଂ ମୁକ୍ତାମୟଂ ମଣ୍ଡନଂ
ସଙ୍କେତାସ୍ୱଦମପ୍ୟତୀବଧ ବଳଂ ପ୍ରାସାଦ ଶୃଙ୍ଗାଗ୍ରତଃ ॥[୧୨a]

ଏହିଭଳି ଏକ ପ୍ରଣୟ-ସ୍ନିଗ୍ଧ ସହରକୁ ପଦ୍ମଶ୍ରୀ ସତ୍ୟନାରାୟଣ ରାଜଗୁରୁ ଖଣ୍ଡପଡ଼ାର କଣ୍ଟକାକୀର୍ଣ୍ଣ କଣ୍ଟିଲୋର ଜଂଗଲ ମଧ୍ୟରେ ନେଇ ଥୋଇଛନ୍ତି -

The chola records add that odda-vishya is a place difficult to approach surely, it points to a locality within the western half of the Cuttack district where a thick forest runs for several miles and through which passes the Mahanadi too deep, steep and narrow (at the Satakosiganda). We believe that the correct identification of yayatinagara would be a place on the banks of the Mahanadi near Kantilo in Khandapara Sub-Division where many ancient monuments, including the temple of Nilamadhava are seen.[12b]

ଏହିଭଳି ଏକ ପ୍ରଣୟ-ସୁଭଗ ସହରକୁ, ଶୌର୍ଯ୍ୟବୀର୍ଯ୍ୟ ଐଶ୍ୱର୍ଯ୍ୟ ସଂପନ୍ନ ରାଜନବରକୁ କତିପୟ ଐତିହାସିକ ମହାନଦୀ ତଟରୁ ଉପାଡ଼ି ଆଣି ଥୋଇଛନ୍ତି ବୈତରଣୀ କୂଳରେ ଯାଜନଗର ବନାମ ଯାଜପୁରରେ । ଯାଜପୁର ଇତିହାସରେ ଯଜ୍ଞପୁର ଯେଉଁଠି ଯଯାତି ଦ୍ୱିତୀୟ ଏକ ବିରାଟ ଯଜ୍ଞ ଅନୁଷ୍ଠାନ କରିଥିଲେ । କାଣ୍ୟକୁବ୍ଜ (ବର୍ତ୍ତମାନର ଏଲାହାବାଦ)ରୁ ଦଶ ହଜାର ବ୍ରାହ୍ମଣ ଅଣାଇ ଦଶାଶ୍ୱମେଧ ଯଜ୍ଞରେ ଆହୂତି ଦେଇଥିଲେ । ସେଇଠି, ବିରଜା କ୍ଷେତ୍ରରେ । ତେଣୁ ନାମ ଯଜ୍ଞପୁର ବା ଯାଜପୁର । ତଥାପି ଯଯାତିନଗର ବେକରେ ପଘା ପକାଇ ଟଣାଓଟରା ଚାଲିଛି ମହାନଦୀ କୂଳରୁ ବୈତରଣୀ ତଟକୁ । ଡି.ସି. ଗାଙ୍ଗୁଲି ଆଦିନଗରକୁ କଳିଙ୍ଗ ନଗର ସହିତ ଚିହ୍ନିତ କଲାବେଳେ,[୧୩] ପାଣ୍ଡେୟ ଓ ହୀରାଲାଲ ଏହାକୁ ବିନୀତପୁର ବା ଆଧୁନିକ ବିନିକା ସହର ଓ ଡ. କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଆଧୁନିକ ଯାଜପୁର ସହିତ ଯୋଡ଼ିଛନ୍ତି ।[୧୪] ଡ. ପାଣିଗ୍ରାହୀ ମାଦଳାପାଂଜି ଓ କୃଷ୍ଣସିଂହ ମହାଭାରତର ନଜିର ନେଇ ଯାଜପୁରକୁ ଯଥାକ୍ରମେ 'ଅଭିନବ ଯଯାତିନଗର' ଓ 'ଯଯାତି ପାଟଣା' ନାମ ଦେଇଛନ୍ତି । ଧୋୟୀଙ୍କ ପବନଦୂତମ୍‌ରେ ପବନ ବହିଛି ଯଯାତିନଗରରୁ ସୁହ୍ମଦେଶ ବା ଆଧୁନିକ ମିଦ୍‌ନାପୁରକୁ । ଭୌଗଳିକ ଦୃଷ୍ଟିରୁ ଯାଜପୁର ଓ ମିଦ୍‌ନୀପୁର ପାଖାପାଖି ଥିଲେ ହେଁ ଯାଜପୁରରେ କେରଳ ପ୍ରଭାବର ଭିତ୍ତି ନାହିଁ ଅଥବା କନକପୁରକୁ ସୁବର୍ଣ୍ଣପୁର ବ୍ୟତୀତ ଅନ୍ୟ କେଉଁଠି ଥୋଇ ହେବ ନାହିଁ ।

ପକ୍ଷାନ୍ତରେ ଡ. ଏସ୍.କେ. ଆୟାଙ୍ଗାର୍[୧୫], ପରମାନନ୍ଦ ଆଚାର୍ଯ୍ୟ[୧୬] ଓ ଡ. ନବୀନ କୁମାର ସାହୁ[୧୭] ଯଯାତିନଗରକୁ ଓଡ୍ର ଦେଶ ବା କୋଶଳରେ ନେଇ ଥୋଇଛନ୍ତି । ଡ. ସାହୁ ଆଉ ପାଦେ ଆଗେଇ ଯାଇ ଐତିହାସିକ ଉପାଦାନ ଓ ଭୌଗୋଳିକ ଅବସ୍ଥିତିକୁ ଅନୁଧ୍ୟାନ କରି ଆଧୁନିକ ଯଗତିକୁ ଅତୀତର ଯଯାତିନଗର ସହିତ ଚିହ୍ନିତ କରିଛନ୍ତି । ଅଭିଲେଖର ମହାନଦୀ-ତୁଙ୍ଗ-ତରଙ୍ଗ-ପ୍ରଖ୍ୟାଳିତ ଯଯାତିନଗର ଯେ ଆଜିର ଯଗତି ତାହା ଏକ ନିର୍ଭରଯୋଗ୍ୟ, ନିର୍ବିବାଦୀୟ ଓ ଅକାଟ୍ୟ ସିଦ୍ଧାନ୍ତ । ତଥାପି ହଜାର ବର୍ଷର କଟକ ସ୍ମରଣିକାରେ ଏ ସହର ଯାଜପୁର ପାଲଟିଛି । ତା' ପାଦରେ ପୁଣି ମହାନଦୀ ମଥା ପିଟୁଛି । ଇତିହାସକୁ ପିଠିରେ ବୋହି ଭୂଗୋଳ ବି ବାଟ ହୁଡ଼ିଛି । ସୋମବଂଶର ଐତିହାସିକ ଯାତ୍ରାର ପଥ ନିରୀକ୍ଷଣ କରିଥିଲେ ସମ୍ଭବତଃ ଏ ଭୁଲ ହୋଇନଥାନ୍ତା । ଏ ଯାତ୍ରା ପୂର୍ବପଟରେ ଲମ୍ବିଯାଇଛି । ଆରାମ କଟକରୁ ବିନୀତପୁର, ବିନୀତପୁରରୁ ସୁବର୍ଣ୍ଣପୁର ଓ ସୁବର୍ଣ୍ଣପୁରରୁ ଯଯାତିନଗର । ରାଜେନ୍ଦ୍ର ଚୋଳଙ୍କ ରାଜତ୍ୱର ଦ୍ୱାଦଶ ବର୍ଷରୁ ଆରମ୍ଭ କରି ଏକତ୍ରିଂଶ ବର୍ଷ ପର୍ଯ୍ୟନ୍ତ ଯେଉଁ ଅଭିଲେଖ ଉତ୍କୀର୍ଣ୍ଣ ହୋଇଥିଲା, ସେଥିରୁ ବାରଟିରେ ଯଯାତିନଗର ସ୍ଥାନ ପାଇଛି ।[୧୮] କେବଳ ଦ୍ୱାଦଶ ବର୍ଷରେ ଖୋଦିତ ତିରୁମଲାଇ ଶିଳାଲେଖରେ ଯଯାତିନଗର 'ଆଦିନଗର'ର ନାମ ନେଇଛି । ଲେଖନକାର ହୁଏତ 'ଯଯାତି'କୁ ଭୁଲ କ୍ରମେ 'ଆଦି' ଲେଖି ଦେଇଥିବେ କିମ୍ବା ତାମିଲ ଲିପିକାରର ଭାଷାରେ ତାହା 'ଆଦିନଗର' ହୋଇଯାଇଥିବ । ଡ. ପାଣିଗ୍ରାହୀଙ୍କ ଏ ଅନୁମାନ ଯଥାର୍ଥ ଓ ଯୁକ୍ତିନିଷ୍ଠ ।[୧୯] ଆଦିନଗର ଭଳି ଇନ୍ଦ୍ରରଥ ମଧ୍ୟ ଲିପିକାର ହାତରେ କେତେବେଳେ ଇନ୍ଦିରରଦ ତ ଆଉ କେତେବେଳେ ଇନ୍ଦିରଦମ୍ (ଇନ୍ଦ୍ରଦ୍ୟୁମ୍ନ) ହୋଇଯାଇଛନ୍ତି ।[୨୦]

ସେଦିନ ଚାରିଶମ୍ଭୁର ମାଟିଗଦା ଉପରେ ଠିଆ ହୋଇ ତଳକୁ ଅନାଇଲି, ପାହାଡ଼ ଉପରୁ । କାହିଁ କେତେ ତଳେ ଯଗତି । ଏକ ପରିତ୍ୟକ୍ତ ଉପତ୍ୟକା ଭିତରେ ହଜି ଯାଇଛି । ଚାରିଆଡ଼େ ଚାଷ ଜମି । ଯେଉଁଠି ପ୍ରଣୟିନୀ ଲେଖନୀ ଧରି ଅଶ୍ରୁରେ ପ୍ରଣୟପତ୍ର ଲେଖୁଥିଲା, ମହାନଦୀ-ବାରି-ବିଳାସ-ସିକ୍ତ ମଳୟପବନ ଯେଉଁଠି ପୁରାଙ୍ଗନାଙ୍କ ରତିକ୍ଳାନ୍ତି ପୋଛି ଦେଉଥିଲା, ଯେଉଁଠି ଆସନ୍ନ ଯୁଦ୍ଧର ସାମ୍ନା କରିବା ପାଇଁ ରଣଲିପ୍ସୁ ସୈନିକ ନଦୀତୁଠ ପଥରରେ ଖଣ୍ଡା ପଜାଉଥିଲା, ସେଇଠି ଆଜି ପୁଙ୍ଗୁଳା ଦେହରେ କୃଷକ ଲଙ୍ଗଳ ବୁଲାଉଛି ।

ସୂର୍ଯ୍ୟ ପଶ୍ଚିମ ଦିଗ୍‌ବଳୟରେ ଝୁଲି ପଡ଼ିଥିଲେ । ସମଗ୍ର ଉପତ୍ୟକାଟିରେ ଛାଇ ପଡ଼ି ଆସୁଥିଲା । କାଁ ଭାଁ ଧୂମକୁଣ୍ଡଳୀ ଉଠୁଥିଲା ଶୂନ୍ୟ ଆକାଶକୁ । ଦୂରରେ ଯଗତିର ଅଳସି କନ୍ୟା ନଈତୁଠରୁ କାଖରେ କଳସୀ ଧରି ଫେରୁଥିଲା । ମୁଁ ଠିଆ ହୋଇଥିଲି ଏକ ମାଟି ସ୍ତୂପରେ । ଯଗତି ଶୋଇଯାଇଥିଲା ବିସ୍ମୃତିର ପାତାଳରେ । ଭାବିଲି, ଯଗତି ଏତେ ତଳକୁ ଚାଲିଗଲା କେମିତି ? ସେତେବେଳେ ତ ବୋମା ନଥିଲା ଯେ ଉପତ୍ୟକାଟିଏ ସୃଷ୍ଟି କରି ଦେଲା ! ଅଥବା ଭୂକମ୍ପନ ଭୂଗୋଳକୁ ଭିନ୍ନ ମୋଡ଼ ଦେଲା ? କିମ୍ବା ଯଗତି ସଂକୁଚିତ ହେଲା ଶତ୍ରୁ ଆକ୍ରମଣର ବାରବାର ଆଘାତରେ ଏବେ ବି ଏ ପ୍ରଶ୍ନଟି ମୋ ମନକୁ ଆନ୍ଦୋଳିତ କରୁଛି । ଉତ୍ତର ଖୋଜୁଛି । ତଥାପି ଯଗତି ଠିଆ ହୋଇଛି । ଭୂଗୋଳ

ପୋଥିପତରର ଯଗତି । ମହାନଦୀ କୂଳର ମହାନଗରୀ । ଜନାକୀର୍ଣ୍ଣ ଜନପଦ । ଗରିମାମୟ ସୋମବଂଶୀ ବିଜୟ ସ୍କନ୍ଦବାର । ବଉଦ-ସୋନପୁର ଅଂଚଳର ମୃତ୍ୟୁହୀନ ଐତିହାସିକ କୀର୍ତ୍ତିସ୍ତମ୍ଭ ।

ସନ୍ଧ୍ୟା ନଇଁ ଆସିଥିଲା ଯଯାତିନଗରର ଧୂସର ଆକାଶରେ । ଯଯାତିନଗରର ଧୂସର ଆକାଶରେ ସୂର୍ଯ୍ୟ ତ କେବେଠୁ ଅସ୍ତମିତ ହୋଇସାରିଥିଲା ।

**ସହାୟକ ଗ୍ରନ୍ଥସୂଚୀ**


୧. Journal of the Asiatic Society of Bengal, Vol. I, p.16.

୨. Epigraphia Indica, Vol. I, p.256.

୩. Journal of Bihar and Orissa Research Society, Vol. XVII, p.1.

୪. Journal of the Asiatic Society of Bengal, Vol. VIII, p.271-76.

୫. Epigraphia Indica, Vol. XXXIII, p.269-74.

୬. The Indian Antiquary, vol. IV, p.364-65.

୭. JASB, op.cit.

୮. Epigraphia Indica, Vol. IX, p.223.

୯. Corpus Inscription Indicarum, Vol- II, p.108-9.

୧୦. ibid.

୧୧. Nilakantha Sastri, The Cholas, p.248-99.

୧୨. ଧୋୟୀ । ପବନଦୂତମ୍, ଶ୍ଳୋକ ୯୬ ।

୧୨a.. S.N. Rajaguru Inscriptions of Orissa, Vol. IV (Bhubaneswar : Sarada Prem, 1966), p.373.

୧୨b. ibid, p.197.

୧୩. History and Culture of the Indian People, Vol. V, p.66.

୧୪. K.C. Panigrahi, Viraja Lecture, p.36.

୧୫. Sir Ashutosh Mukherji's Silver Jubilee, Vols. Orientalia, pt. II, p.541-87.

୧୬. Journal of Indian History, Vol. XX, pt.1, 1941, p.12.

୧୭. History of Orissa, Vol. I, p.137-38.

୧୮. South Indian Inscriptions, Vol. III, p.400, Vol. V, nos.- 464, 635, 636, 637, 651, Vol VI, nos.- 30, 33, Vol VII, nos. 1047, Vol I, no. 68; Epigraphia Indica, Vol IX, p.232.

୧୯. Chronology of the Bhaumakaras and the Somavambis of Orissa (Madras: MLJ Press, 1961), p.11.

୨୦. South Indian Inscription, Vol. V, nos.464, 636, 651, 1354; Vol. VII, no. 1047.


ଅବସରପ୍ରାପ୍ତ କୁଳସଚିବ
ଭି.ଆଇ.ଏମ୍.- ୬୮୯, ଶୈଳେଶ୍ରୀ ବିହାର
ଭୁବନେଶ୍ୱର




ପୁରୀଠାରେ ଆୟୋଜିତ 'କୁମାର ଉତ୍ସବ' ପାଳନ ଅବସରରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ, ମାନ୍ୟବର ବାଚସ୍ପତି ଶ୍ରୀ ମହେଶ୍ୱର ମହାନ୍ତି ଏବଂ ପଞ୍ଚାୟତିରାଜ ଓ ସଂସ୍କୃତି ମନ୍ତ୍ରୀ ଡା. ଦାମୋଦର ରାଉତ ଉପସ୍ଥିତ ଅଛନ୍ତି । (୨୭.୧୦.୦୪)

# ସୁଖର ସଂଜ୍ଞା

ସୁରେନ୍ଦ୍ର କୁମାର ମିଶ୍ର

**କା**ର୍ଯ୍ୟାଳୟରେ ଅବସରକାଳୀନ ବାର୍ତ୍ତାଳାପ ସମୟରେ ମୋର ଉପରିସ୍ଥ ଅଧିକାରୀ ପଚାରିଲେ - ସଂସାରରେ ସୁଖୀ କିଏ ? ହଠାତ୍ ମୁଁ ନିମ୍ନୋକ୍ତ ଶ୍ଳୋକଟି ଆବୃତ୍ତି କରିଥିଲି ।

'ଅର୍ଥାଗମୋନିତ୍ୟଂ ଆରୋଗୀତାଚ
ପ୍ରିୟାଚଭାର୍ଯ୍ୟା ପ୍ରିୟବାଦିନୀଚ
ବଶ୍ୟଶ୍ଚପୁତ୍ରଃ ଅର୍ଥକରୀଚ ବିଦ୍ୟା
ଷଡ୍‌ଜୀବଲୋକସ୍ୟ ସୁଖୀନଃ ରାଜନ୍ ।'

ଦୈନନ୍ଦିନ ହାତକୁ କଂଚା ପଇସା ଆସୁଥିବ, ଶରୀର ନୀରୋଗ ହୋଇଥିବ, ପ୍ରିୟତମା ସ୍ତ୍ରୀ ସଦାବେଳେ ପ୍ରିୟ କଥା କହି ମନ ତୋଷୁଥିବ, ପୁତ୍ର, ପିତାର ଆଜ୍ଞାଧୀନ ଏବଂ ଅର୍ଥ ଉପାର୍ଜନକ୍ଷମ ବିଦ୍ୟା ଅର୍ଜନ କରିଥିବ, ଏହି ଛଅଗୋଟି ବସ୍ତୁ ଜୀବଲୋକରେ ସୁଖୀ କରାଏ ।

ଦୃଷ୍ଟାନ୍ତଟି ତାଙ୍କର ମନ ପସନ୍ଦ ହୋଇନଥିବା ଅନୁଭବ କଲି । ଅଧିକାରୀ ଜଣକ ପ୍ରାପ୍ତବୟସ୍କ ବିଜ୍ଞ ଏବଂ ଆଧାତ୍ମବାଦୀ । ତାଙ୍କର ମନ ନିଶ୍ଚିତ ଭାବେ ଉନ୍ନତମାନର ସୁଖ ସନ୍ଧାନ କରୁଥିବ । ମଣିଷ ଗୋଟିକେ ରୁଚି ଗୋଟିଏ । କାହାକୁ ଗରମ ଭଲ ତ, କାହାକୁ ଥଣ୍ଡା ଭଲ । କାହାକୁ ମିଠା ଭଲ ତ କାହାକୁ ଖାରା । କାହାକୁ କୋଳାହଳ ତ କାହାକୁ ନିର୍ଜନ ନୀରବତା ଭଲ । ଶିଶୁ ଖେଳନାରେ, ବିଦ୍ୟାର୍ଥୀ ବିଦ୍ୟା ସଫଳତାରେ, ବ୍ୟବସାୟୀ ଲାଭରେ, ତୃଷାର୍ତ୍ତ-କ୍ଷୁଧାର୍ତ୍ତ, ତୃଷା-କ୍ଷୁଧା ନିବାରଣରେ, ରୋଗୀ ଆରୋଗ୍ୟପ୍ରାପ୍ତିରେ, ନିଃସନ୍ତାନ ସନ୍ତାନ ପ୍ରାପ୍ତିରେ, ନିର୍ଦ୍ଧନ ଧନ ପ୍ରାପ୍ତିରେ ସୁଖୀ ହୁଅନ୍ତି । ପ୍ରତିଯୋଗିତା କ୍ଷେତ୍ରରେ କ୍ରୀଡ଼ାବିତ୍, ଯୋଦ୍ଧା, କଳାକାର ଏବଂ ପଣ୍ଡିତମାନେ ଅନେକ ଶାରୀରିକ ତଥା ମାନସିକ କ୍ଳେଶ ସହନ କରିଥାନ୍ତି, ବିଜୟ ସୁଖର ସ୍ୱାଦ ନେବା ପାଇଁ ।

ନିଃସନ୍ତାନ ରାଜାଙ୍କର ବହୁ ପ୍ରତୀକ୍ଷିତ ସନ୍ତାନ ରତ୍ନ ପ୍ରାପ୍ତ ହେବା ପରେ ରାଜପ୍ରାସାଦ ଆନନ୍ଦ ମୁଖର । ଏହି ଅବସରରେ ରାଜା ଗୋପାଳଭାଣ୍ଡଙ୍କୁ ପୁଛା କଲେ - ଆପଣ କିପରି ଭାବେ ଆନନ୍ଦିତ । ପଣ୍ଡିତେ ତତ୍‌କ୍ଷଣାତ୍ ଉତ୍ତର ଦେଲେ - ଆଜ୍ଞା ! ଝାଡ଼ା ଫେରିବା ପରେ ଶରୀର ଯେଉଁ ସୁଖ ଅନୁଭବ କରେ, ମଳ, ମୂତ୍ରାଦି ବର୍ଜ୍ୟବସ୍ତୁ ତ୍ୟାଗରେ ବି ସୁଖ ଅଛି । ଉତ୍ତମ ଶୌଚାଳୟରେ କିଏ ମଳମୂତ୍ର ତ୍ୟାଗରେ ଆନନ୍ଦ ପାଉଛିତ, କିଏ ମୁକ୍ତ ଆକାଶ ତଳେ ରଗଡ଼ା ବାଲିରେ ମଳତ୍ୟାଗ ଜନିତ ସୁଖ ପାଇଁ ପସନ୍ଦ କରୁଛି । ସୁଖମୟ ଦାମ୍ପତ୍ୟ ଜୀବନ ପାଇଁ କିଏ ଗୋଟିଏ ଜୀବନସାଥି ଚୟନ କରୁଥିବାସ୍ଥଳେ କିଏ ବହୁ ପତ୍ନୀକ ହୋଇ ବିଷୟ ସୁଖର ଶୀର୍ଷକୁ ଯିବାକୁ ପ୍ରୟାସ କରୁଛି । ଏପରି କେତେକ ଅଛନ୍ତି ଯେଉଁମାନେ ଅସ୍ୱାଭାବିକ ଯୌନକ୍ରିୟାରୁ ସୁଖ ପାଇବା ପାଇଁ ମଗ୍ନ ହୋଇଥାନ୍ତି । ଏଥିରୁ ପାଠକେ ଅନୁଭବ କରିବେ - ସୁଖର ସଂଜ୍ଞାକୁ ପାର୍ଥୀବ ଜଗତରେ କେଉଁଠୁ ଠାବ କରାଯିବ ?

ସୃଷ୍ଟିର ଆରମ୍ଭରୁ ମନୁଷ୍ୟ ସୁଖର ସନ୍ଧାନ ଜାରି ରଖିଅଛି । ମୁନିଋଷି ତଥା ମହା ମନୀଷିଗଣ ମଣିଷର ପ୍ରକୃତି ଗୁଣକ୍ରମରେ ସୁଖର ବିଶ୍ଳେଷଣ କରିଛନ୍ତି ।

'ବିଷୟେନ୍ଦ୍ରୀୟ ସଂଯୋଗାଦ୍ ଯତ୍‌ଦଗ୍ରେ ମୃତପମ
ପରିଣାମେ ବିଷମିବ ତତ୍‌ସୁଖଂ ରାଜସ ସୃତମ୍ ।'
(ଶ୍ରୀମଦ୍‌ଭଗବତ୍ ଗୀତା- ୧୮/୩୮)

ଧନସମ୍ପତ୍ତି, କ୍ଷମତା, ଆଭିଜାତ୍ୟ ସହାଚର୍ଯ୍ୟରେ ଇନ୍ଦ୍ରିୟଜନିତ ସୁଖଭୋଗ କରିବାକୁ ରାଜସିକ ସୁଖ କୁହାଯାଏ । ଅଧିକବିତ୍ତ, ପ୍ରଭୁତ୍ୱ ଓ ଖ୍ୟାତି ଲାଭ କରିବା ଏବଂ ଜୀବନକୁ ଉପଭୋଗ କରିବା ପାଇଁ ରାଜକୀୟ ଖାଦ୍ୟ, ବେଶ, ପୋଷାକ, ପ୍ରାସାଦ, ସୁନ୍ଦରୀ ରମଣୀ, କେଳି ସଦନ, ପ୍ରମୋଦ ଉଦ୍ୟାନ, ଯାନବାହନ ଏବଂ ପର୍ଯ୍ୟଟନ ଆଦି ରାଜସିକ ସୁଖର ଭୋଗ୍ୟ ବସ୍ତୁ । ଏଥିରେ ଲିପ୍ତ ବ୍ୟକ୍ତି ପ୍ରାରମ୍ଭରୁ ଶାରୀରିକ ସୁଖ ଲାଭ କରିଥାଏ । ଆଶାର ଅନ୍ତ ନାହିଁ । ବେଳକୁ ବେଳ ବିଷୟ ଓ ଇନ୍ଦ୍ରୀୟଲାଳସା ପ୍ରଖରରୁ ପ୍ରଖରତର ହୁଏ । ଫଳତଃ ରାଜସିକ ବ୍ୟକ୍ତି ଧନ ଓ ଯୌବନ କ୍ଷୟଜନିତ ଚିନ୍ତା, ଭଗ୍ନ ସ୍ୱାସ୍ଥ୍ୟ, ସଂଭୋଗଜନିତ ବ୍ୟାଧିର ଶିକାର ହୋଇ ଅନେକ କ୍ଳେଶ ଭୋଗ କରେ । ଅସଂଯତ ଇନ୍ଦ୍ରିୟଗଣ ପ୍ରମାଦର କାରଣ ହୁଅନ୍ତି । ଏହି ହେତୁରୁ ରାଜସିକ ସୁଖର ପରିଣାମ ବିଷତୁଲ୍ୟ ।

ତାମସିକ ଗୁଣ ବିଶିଷ୍ଟ ବ୍ୟକ୍ତିଙ୍କ ସୁଖ ନିମ୍ନମତେ ବର୍ଣ୍ଣିତ ହୋଇଛି -

ପଦଗ୍ରେ ଚାନୁବନ୍ଧେଚ ସୁଖଂ ମୋହନ ମାତ୍ମନଃ
ନିଦ୍ରାଳସ୍ୟ ପ୍ରମାଦୋତ୍‌ଥଂ ତତ୍ତାମସମୁଦାହୃତତମ୍ ।
(ଗୀତା ୧୮/୩୯)

ଏମାନଙ୍କର ରୁଚି ଅଭୁତ୍ । ଥଣ୍ଡା, ବାସୀ, ଦୁର୍ଗନ୍ଧଯୁକ୍ତ ଉଚ୍ଛିଷ୍ଟଦ୍ରବ୍ୟ ଏବଂ ଅଭକ୍ଷ ଏମାନଙ୍କର ପ୍ରିୟ ଖାଦ୍ୟ । ନିଦ୍ରା, ଆଳସ୍ୟ ଏବଂ ପ୍ରମାଦପୂର୍ଣ୍ଣ କାର୍ଯ୍ୟ କରି ଏମାନେ ଆନନ୍ଦ ପାଆନ୍ତି । ନିଦ୍ରାସୁଖ ପାଇଁ ନାନାଦି ନିଶାଦ୍ରବ୍ୟ ସେବନ ଏବଂ ଆଳସ୍ୟ ପରାୟଣ ହୋଇଥାନ୍ତି । ଏହି ବ୍ୟକ୍ତିମାନେ ଅନ୍ୟକୁ ପ୍ରତାରଣା କରି ପରସ୍ୱ ଅପହରଣ ଆଦି ଜଘନ୍ୟ ଅସାମାଜିକ ବୃତ୍ତି ଅବଲମ୍ବନ କରିଥାନ୍ତି । ପର ସ୍ତ୍ରୀ ହରଣ, ବଳାତ୍କାର, ପାଶବିକ ଅତ୍ୟାଚାର ଏବଂ ହତ୍ୟା ଆଦି ପ୍ରମାଦପୂର୍ଣ୍ଣ କାର୍ଯ୍ୟକରି ସୁଖ ପାଆନ୍ତି । ଏସବୁ ପ୍ରାରମ୍ଭରୁ ଶେଷ ପର୍ଯ୍ୟନ୍ତ ଆତ୍ମାର ମୋହଜନକ ତାମସିକ ସୁଖ ଅଟେ ।

ଉପରୋକ୍ତ ଗୁଣ ବିଶିଷ୍ଟ ସୁଖ ଦ୍ୱୟଠାରୁ ସାତ୍ତ୍ୱିକ ସୁଖ ଉତ୍କୃଷ୍ଟ ବୋଲି ବର୍ଣ୍ଣିତ ହୋଇଛି -

ପତଦଗ୍ରେ ସୁଖମିବ ପରିଣାମେ□ମୃତୋ ପମମ୍
ତତ୍‌ସୁଖଂ ସାତ୍ତ୍ୱିକଂ ପ୍ରୋକ୍ତମ୍ ଆତ୍ମବୃଦ୍ଧି ପ୍ରସାଦଜମ୍ ।
(ଗୀତା ୧୮/୩୭)

ସାତ୍ତ୍ୱିକଗୁଣ ସମ୍ପନ୍ନ ବ୍ୟକ୍ତି ଦେବପୂଜକ, ସରଳ, ସତ୍ୟନିଷ୍ଠ, ତ୍ୟାଗୀ, ଧାର୍ମିକ, ଦୟାଶୀଳ, ପରୋପକାରୀ, କ୍ଷମାଶୀଳ, ଚରିତ୍ରବାନ୍ ଓ ଜିତେନ୍ଦ୍ରୀୟ ଅଟନ୍ତି । ମୋହମାୟାଗ୍ରସ୍ତ ସଂସାରରେ ବିଷୟ ସମୂହରୁ ଆସକ୍ତି ତ୍ୟାଗ କରି ଇନ୍ଦ୍ରିୟଗଣଙ୍କୁ ନିଜର ବଶୀଭୂତ କରିବାର ସାଧନା ଅତୀବ କଷ୍ଟସାଧ୍ୟ । ସଂସାର ସ୍ରୋତର ପ୍ରତିକୂଳରେ ଗତି କଲାପରି ବୋଧ ହେବ ଅନେକ ବାଧାବିଘ୍ନ ଉପୁଜିବ । ଏସବୁ ସହ୍ୟ କରି ସତ୍ତ୍ୱ ଗୁଣର ଅଧିକାରୀ ହେଲେ ଚିତ୍ତ ପ୍ରସାଦ ଲାଭ ହୁଏ ।

'ପ୍ରସାଦେ ସର୍ବ ଦୁଃଖାନାଂ ହାନିରସ୍ୟୋପଜାୟତେ ...'

ଚିତ୍ତ ପ୍ରସାଦରୁ ସକଳ ଦୁଃଖ ନାଶ ଯାଏ, ଯୋଗୀ ବା ମୁନିଗଣଙ୍କଠାରେ ପ୍ରାରବ୍ଧବଶତଃ କାମ୍ୟ ବିଷୟଗୁଡ଼ିକ ପ୍ରବେଶ କଲେ ମଧ୍ୟ ସେମାନେ ଉଦ୍‌ବିଗ୍ନ ନହୋଇ ଶାନ୍ତି ଲାଭ କରନ୍ତି । ଯେପରି ଅଥଳ ସମୁଦ୍ରରେ ନାନା ନଦନଦୀରୁ ନିପତିତ ପ୍ରଚୁର ଜଳରାଶି ସମୁଦ୍ରର ସ୍ଥିରତା କ୍ଷୁଣ୍ଣ କରି ପାରେ ନାହିଁ ।

'ଆପୂର୍ଯ୍ୟମାଣମ୍□ଅଚଳ ପ୍ରତିଷ୍ଠଂ ...
ସ ଶାନ୍ତି ମାପ୍ନୋତି ନ କାମକାମୀ ।
(ଗୀତା ୨/୭୦)

ମୋହ ତ୍ୟାଗ ପୂର୍ବକ ବିଷୟ ଉପଭୋଗ କରିବାକୁ ବେଦରେ ଉପଦେଶ ଦିଆଯାଇଅଛି । ସାରା ବିଶ୍ୱ ଗତିଶୀଳ । ଏହାର ସକଳ ପଦାର୍ଥ ମଧ୍ୟ ଗତିଶୀଳ । ମନୁଷ୍ୟ ସଂସାର ମାର୍ଗରେ ନିରନ୍ତର ଗତି କରୁଥିବା ସମୟରେ ତାହାର ପାଦ ଆବୃତ୍ତ କରିଥିବା ମାର୍ଗର ଅଂଶକୁ ତ୍ୟାଗ କଲେ ସେ ପାଦଟିକୁ ଆଗକୁ ପକାଇବାକୁ ସକ୍ଷମ ହୁଏ । ଅନୁରୂପ ବିଶ୍ୱର ସକଳ ବସ୍ତୁକୁ ନିଜର କରିବାର ଲୋଭ ନକରି ତ୍ୟାଗ ପୂର୍ବକ ଉପଭୋଗ କର । ଧନ ବା କାହାର ସବୁ ସେହି ସ୍ରଷ୍ଟା - ଈଶ୍ୱରଙ୍କର । ତାଙ୍କର ସୃଷ୍ଟ ସକଳ ପ୍ରାଣୀଙ୍କର ସୃଷ୍ଟିରେ ଉପଭୋଗ କରିବାର ଅଧିକାର ଅଛି । ଏହା ହିଁ ବେଦର ଉପଦେଶ ।

'ଈଶା ବାସ୍ୟମିଦଁ ସର୍ବଂ ଯତ୍‌କିଂ ଚ ଜଗତ୍ୟାଂ ଜଗତ୍
ତେନ ତ୍ୟକ୍ତେନ ଭୁଂଜୀଥା ମା ଗୃଧଃ କସ୍ୟ ସ୍ୱିଦ୍ଧନମ୍ ।'
(ଯଜୁ - ଅଧ୍ୟାୟ - ୪ ଓ ମନ୍ତ୍ର-୧)

ସ୍ୱାର୍ଥପର ହୁଅ ନାହିଁ । ଜଗତ ସୁଖରେ ପ୍ରାଣୀର ସୁଖ । ଦାନ, ଧର୍ମ, ଦୟା ଓ ତ୍ୟାଗ ଦ୍ୱାରା ଅନ୍ୟକୁ ସୁଖ ଦେଇ ସୁଖ ଉପଭୋଗ କରିବା ହିଁ ସାତ୍ତ୍ୱିକ ସୁଖ । ସମସ୍ତଙ୍କ ସୁଖରେ ଆମେ ସୁଖୀ ହେବା । 'ସର୍ବେ ଭବନ୍ତୁ ସୁଖୀନଃ ସର୍ବେ ସନ୍ତୁ ନିରାମୟା ... ।' ଯାହାର ପ୍ରାରମ୍ଭ କଠୋର ସାଧନାପୂର୍ଣ୍ଣ ହେତୁ ବିଷବତ୍ ଅନୁଭୂତ ହୋଇ ପରିଣାମରେ ଅମୃତତୁଲ୍ୟ ସୁଖ ପ୍ରଦାନ କରିଥାଏ ।

ମାତ୍ର ଏହି ଗୁଣତ୍ରୟକୁ ଅତିକ୍ରମ କରୁଥିବା ବ୍ୟକ୍ତି ହିଁ ଜନ୍ମ, ମୃତ୍ୟୁ ଜରା ଦୁଃଖରୁ ମୁକ୍ତି ଲାଭ କରି ଅମୃତ (ନିତ୍ୟ ସୁଖ) ପ୍ରାପ୍ତ ହୁଅନ୍ତି ।

'ଗୁଣାନେତାନତୀତ୍ୟତ୍ରୀନ୍ ଦେହୀ ଦେହ ସମୁଦ୍‌ଭବାନ
ଜନ୍ମ ମୃତ୍ୟୁଜରା ଦୁଃଖୈ ର୍ବିମୁକ୍ତୋ□ମୃତମଶ୍ନୁତେ ।'
(ଗୀତା ୧୪/୨୦)

ଐକାନ୍ତିକ ଭକ୍ତିଯୋଗରେ ଈଶ୍ୱର ଉପାସନା ଦ୍ୱାରା ଗୁଣତ୍ରୟକୁ ଅତିକ୍ରମ କରି ବ୍ରହ୍ମ ସାକ୍ଷାତ୍‌କାର ଅର୍ଥାତ୍ ମୋକ୍ଷଲାଭର ଯୋଗ୍ୟ ହୁଅନ୍ତି । ଯେହେତୁ ଈଶ୍ୱର, ବ୍ରହ୍ମ ନିତ୍ୟ (ଯୁକ୍ତ) ଭକ୍ତି ଧର୍ମର ଓ ଐକାନ୍ତିକ ସୁଖର ଆଧାର । ବ୍ରହ୍ମ ସାକ୍ଷାତ୍‌କାରରେ ହିଁ ଅନନ୍ତ ସୁଖ ନିହିତ ।

ମାଂଚ ଯୋ□ବ୍ୟଭିଚାରେଣ ଭକ୍ତି ଯୋଗେନସେବତେ ...
(ଗୀତା ୧୪/୨୬)

ବ୍ରହ୍ମଣୋହି ପ୍ରତିଷ୍ଠାଂମ ମୃତସ୍ୟାବ୍ୟୟସ୍ୟଚ ... (ଗୀତା ୧୪/୨୭)

କର୍ମ ସନ୍ନ୍ୟାସୀ ଅର୍ଥାତ୍ ଇନ୍ଦ୍ରିୟ ବିଷୟରେ ଅନାସକ୍ତ ଚିତ୍ତ ବ୍ୟକ୍ତି ଅନ୍ତଃକରଣରେ ଉପଶମାତ୍ମକ ସାତ୍ତ୍ୱିକ ସୁଖ ଲାଭ କରିଥାନ୍ତି । ତତ୍‌ପରେ ସେ ବ୍ରହ୍ମରେ ସମାଧି ଯୋଗଦ୍ୱାରା ଅକ୍ଷୟ ସୁଖକୁ ପ୍ରାପ୍ତ ହୁଅନ୍ତି ।

ବାହ୍ୟ ସ୍ପର୍ଶେଷ୍ୱସକ୍ତାତ୍ମା ବିନ୍ଦତ୍ୟାତ୍ମନି ଯତ୍‌ସୁଖମ୍
ସ ବ୍ରହ୍ମ ଯୋଗଯୁକ୍ତାତ୍ମା ସୁଖମକ୍ଷୟ ମଶ୍ନୁତେ ।
(ଗୀତା ୫/୨୧)

ଯିଏ ମୋକ୍ଷ ଯୁକ୍ତ ସେ ହିଁ ଯଥାର୍ଥରେ ସୁଖୀ । ସେହି ବ୍ୟକ୍ତି ଶରୀର ତ୍ୟାଗ ପୂର୍ବ ପର୍ଯ୍ୟନ୍ତ କାମ ଓ କ୍ରୋଧରୁ ଉତ୍ପନ୍ନ ବେଗକୁ ସହ୍ୟ କରିବାରେ ସମର୍ଥ ଏବଂ ସେ ହିଁ ଯୋଗଯୁକ୍ତ ।

ଶକ୍ନୋତିହୈବ ଯଃ ସୋଢୁଂ ପ୍ରାକ୍‌ଶରୀର ବିମୋକ୍ଷଣାତ୍ ।
କାମ କ୍ରୋଧୋଦ୍ଭବଂ ବେଗଂ ସଯୁକ୍ତଃ ସ ସୁଖୀନରଃ ॥
(ଗୀତା ୫/୨୩)

ଯୋଗାଭ୍ୟାସଦ୍ୱାରା ବ୍ରହ୍ମସାକ୍ଷାତକାର ହୋଇଥାଏ । ବ୍ରହ୍ମ ସାକ୍ଷାତ୍‌କାର ହିଁ ଐକାନ୍ତିକ ସୁଖ । ଯେଉଁ ଅବସ୍ଥାରେ ଯୋଗୀ କେବଳ ବୁଦ୍ଧି ଦ୍ୱାରା ଗ୍ରାହ୍ୟ ଇନ୍ଦ୍ରିୟାତୀତ ନିତ୍ୟ ସୁଖ ଅନୁଭବ କରନ୍ତି ଏବଂ ଆତ୍ମ ସ୍ୱରୂପରୁ ବିଚଳିତ ହୁଅନ୍ତି ନାହିଁ । ଯେଉଁ ଅବସ୍ଥାରେ ଆତ୍ମସୁଖ ସ୍ୱରୂପକୁ ଲାଭ କରି ଅନ୍ୟ ଲାଭକୁ ତହିଁରୁ ଅଧିକ ମଣନ୍ତି ନାହିଁ । ଗୁରୁତର ଦୁଃଖରେ ମଧ୍ୟ ବିଚଳିତ ହୁଅନ୍ତି ନାହିଁ । ତାହା ଯୋଗ ବୋଲି ଜ୍ଞାତ ।

ରଜୋଗୁଣ ହୀନ, ପ୍ରଶାନ୍ତ ଚିତ୍ତ, ନିଷ୍ପାପ ଓ ବ୍ରହ୍ମଭାବପ୍ରାପ୍ତ ଯୋଗୀକୁ ସମାଧି ଜନିତ ଉତ୍ତମ ସୁଖ ସ୍ୱୟଂହି ଆଶ୍ରୟ କରେ ।

ପ୍ରଶାନ୍ତ ମନସଂ ହ୍ୟେନଂ ଯୋଗିନଂ ସୁଖ ମୁତ୍ତମମ୍
ଉପୈତି ଶାନ୍ତ ରଜସଂ ବ୍ରହ୍ମଭୂତମ୍ କଳ୍ମଷମ୍ ।

ମନକୁ ଆତ୍ମବଶ କରିପାରୁଥିବା ସକଳ ପାପପରି ଶୂନ୍ୟ ଯୋଗୀ ସୁଖ ମାର୍ଗରେ ବ୍ରହ୍ମ ସଂସ୍ପର୍ଶ ସ୍ୱରୂପ ପରମ ସୁଖକୁ ପ୍ରାପ୍ତ ହୁଏ ।

ଯୁଞ୍ଜନ୍ନେବଂ ସଦା[illegible]ନଂ ଯୋଗୀବିଗତ କଳଷଃ
ସୁଖେନ ବ୍ରହ୍ମ ସଂସ୍ପର୍ଶମତ୍ୟନ୍ତଂ ସୁଖମଶ୍ନୁତେ ।
(ଗୀତା ୬/୨୮)

ଯେଉଁ ଲାଭରୁ ଅଧିକ ଲାଭ ଆଉ ନାହିଁ । ଯେଉଁ ସୁଖ ହିଁ ଶ୍ରେଷ୍ଠ ସୁଖ, ଯେଉଁ ଭାବରୁ ଅଧିକ ଜ୍ଞାନ ଆଉ ନାହିଁ, ତାହା ହିଁ ବ୍ରହ୍ମ ।

ଯଲ୍ଲାଭାନ୍ନାପରୋଲାଭଃ ଯତ୍ ସୁଖାନ୍ନା ପରଂ ସୁଖମ୍
ଯଦ୍‌ଜ୍ଞାତ୍ୱା ନାପରଂ ଜ୍ଞାନଂ ତଦ୍‌ବ୍ରହ୍ମେତୀନ୍ ଧାରୟେତ୍ ।
(ଆତ୍ମବୋଧ)

ତ୍ରିବିଧ ଦୁଃଖ ଯଥା-

ଆଧ୍ୟାତ୍ମିକ, ଅଧିଭୌତିକ, ଅଧି ଦୈବିକରୁ ନିବୃତ୍ତି ହିଁ ଅତ୍ୟନ୍ତ ପୁରୁଷାର୍ଥ ।
ଅଥ ତ୍ରିବିଧ ଦୁଃଖାତ୍ୟନ୍ତ ନିବୃତ୍ତି ରତ୍ୟନ୍ତ ପୁରୁଷାର୍ଥଃ ।
(ସାଂଖ୍ୟ ସୂତ୍ର -୧)

ଧର୍ମ, ଅର୍ଥ, କାମ ଓ ମୋକ୍ଷ ଏହି ଚାରିଗୋଟି ପୁରୁଷାର୍ଥ ମଧ୍ୟରୁ ପ୍ରଥମ ତିନିଗୋଟି, ଉପରୋକ୍ତ ତ୍ରିବିଧ ଦୁଃଖ ବା ତ୍ରିତାପରୁ ରକ୍ଷା କରିବାକୁ ସମର୍ଥ ନୁହନ୍ତି । କେବଳ ମୋକ୍ଷ ଦ୍ୱାରା ହିଁ ତ୍ରିବିଧ ଦୁଃଖରୁ ରକ୍ଷା ସମ୍ଭବ ।

ଜ୍ଞାନାନ୍ ମୁକ୍ତି (ସାଂଖ୍ୟ ସୂତ୍ର ୩/୨୩)

ଯେତେବେଳେ ମନୁଷ୍ୟ ଚେତନ ଅଚେତନ ବା ପୁରୁଷ ଓ ପ୍ରକୃତିର ଭେଦକୁ ସ୍ପଷ୍ଟ ରୂପେ ଆତ୍ମ ସାକ୍ଷାତ୍‌କାର ଦ୍ୱାରା ଜାଣି ନିଏ, ସେହି ଅବସ୍ଥାକୁ ଜ୍ଞାନ ପ୍ରାପ୍ତି କୁହାଯାଏ । ଏହା ହିଁ ମୁକ୍ତିର ମାର୍ଗ । ଗୀତାରେ ବ୍ରହ୍ମ ସାକ୍ଷାତ୍‌କାର ବା ଐକାନ୍ତିକ (ଅନନ୍ତ ସୁଖ) ନିମନ୍ତେ ତିନିଗୋଟି ମାର୍ଗ ସୁପ୍ରଶସ୍ତ କରାଯାଇଅଛି, ଯଥା- କର୍ମ, ସନ୍ନ୍ୟାସ, ଭକ୍ତି ବା ଧ୍ୟାନ ଓ ଜ୍ଞାନ ମାର୍ଗ ଭିନ୍ନ ହୋଇପାରେ ମାତ୍ର ଲକ୍ଷ୍ୟ ଏକ । ଶ୍ରୀପରମେଶ୍ୱର - ପରାତ୍ମାନ - ଚରଣାରବିନ୍ଦ ।

ଧର୍ମାର୍ଥ କାମ ନିଚୟୈଃ କୁମତି ପ୍ରଭାବ୍ୟୈଃ
କ୍ଷୁଦ୍ରୈ ରମୀଭୀ ରହିତାଷ୍ମ ସୁଖୈର୍ନକାର୍ଯ୍ୟମ୍
ଆଜ୍ଞା ପୟାଗ୍ରିଂ ନଳିନ ଦ୍ୱୟ ଚିନ୍ତନାଦ୍ୟ
ସାଂଦ୍ରାନୁ ବର୍ଦ୍ଧିତ ସୁଖାର୍ଣ୍ଣ ମଜଜ୍‌ନଂ ମେ ।
(ସ୍କନ୍ଦ ପୁରାଣଂ - ବିଷ୍ଣୁ ଖଣ୍ଡ)

ଧର୍ମ, ଅର୍ଥ ଓ କାମ ଏହା କୁବୁଦ୍ଧି ବ୍ୟକ୍ତିମାନଙ୍କର ଆଦରଣୀୟ । ମୁଁ ଏହି ଅହିତକର କ୍ଷୁଦ୍ରାତି କ୍ଷୁଦ୍ର ସାମାନ୍ୟ ସୁଖ ପାଇଁ ପ୍ରାର୍ଥୀ ନୁହେଁ । ହେ ନାଥ ! ମାତେ ଆଜ୍ଞା ହେଉ, ଯାହାଫଳରେ ମୁଁ ଆପଣଙ୍କର ପାଦପଦ୍ମ ଚିନ୍ତନ ସ୍ୱରୂପ ଶାଶ୍ୱୀୟ ସୁଖ ସାଗରରେ ନିମଗ୍ନ ରହିବି ।

ଓଡ଼ିଶା ପ୍ରଶାସନିକ ସେବା
କ୍ୱା.ନଂ.- ଡି-୨୧, ୟୁନିଟ୍-୬
ଭୁବନେଶ୍ୱର



# ଉତ୍କଳୀୟ ସ୍ଥାପତ୍ୟରେ ମୈଥୁନ ଚିତ୍ର

ଡକ୍ଟର ଜନ୍ମେଜୟ ଚୌଧୁରୀ

**ଭା**ରତୀୟ ସଂସ୍କୃତିରେ ଶାକ୍ତ ଉପାସନା ସୁପ୍ରାଚୀନ । ମହେଞ୍ଜୋଦାରୋ ଏବଂ ହରପ୍ପାରୁ ଆବିଷ୍କୃତ ପ୍ରତ୍ନତାତ୍ତ୍ୱିକ ଉପାଦାନମାନଙ୍କରେ ଅନେକ ଲିଙ୍ଗାକୃତି ପ୍ରସ୍ତରଖଣ୍ଡ ଦେଖିବାକୁ ମିଳେ । ପୁଣି କେତେକ ଶକ୍ତି ବିଜଡ଼ିତ ଲିଙ୍ଗାକୃତି ପ୍ରସ୍ତରରୁ 'ଲିଙ୍ଗଯୋନି' ଉଭୟର ପୂଜା ସମ୍ପର୍କରେ ପ୍ରତୀକ ହୋଇଥାଏ । ସମାନ୍ତରାଳ ଭାବେ ପୃଥିବୀରେ ସମସ୍ତ ଆଦିମ ମଣିଷର ମାନସ ଭୂମିରେ ଏହା ଅଙ୍କୁରିତ ହୋଇଥିବ । ଆଦିମାନବ ନିକଟରେ ତା'ର ପ୍ରାଥମିକ ଆବଶ୍ୟକତା ଆହାର, ନିଦ୍ରା, ଭୟ ଓ ମୈଥୁନ । ଏହି ଚାରୋଟି ମଧ୍ୟରୁ 'ମୈଥୁନ' କର୍ମ ବା 'ପ୍ରଜନନ' କ୍ରିୟା ଥିଲା ସବୁଠାରୁ ଶକ୍ତିଶାଳୀ । ତା'ର ଅପରିପକ୍ୱ ପ୍ରଜ୍ଞାରେ ସେ ମୈଥୁନ କର୍ମ ସହ ଭୂମିର ଉର୍ବରତା, ଧାନ୍ୟାଦି ଶସ୍ୟ ବୃଦ୍ଧି ଓ ପଶୁବୃଦ୍ଧି ଆଦିର ଏକ କାର୍ଯ୍ୟକାରିଣୀ ସମ୍ପର୍କ ସ୍ଥାପନ କରିଥିଲା । ଏଣୁ ସଦା ସର୍ବଦା ପ୍ରଜନନ ପ୍ରକ୍ରିୟା ପ୍ରତି ଆଦିମାନବ ଅଧିକ ଯତ୍ନବାନ ହେଉଥିଲା । ତା'ର ଏହି ଯତ୍ନ ପ୍ରଜନନ କ୍ରିୟାକୁ ଏକ ଧାର୍ମିକ ମର୍ଯ୍ୟାଦା ପ୍ରଦାନ କଲା । ଯାହାର ଫଳ ସ୍ୱରୂପ ଏହି କାର୍ଯ୍ୟ କରୁଥିବା ଅଙ୍ଗଠାରେ ଆଧିଭୌତିକତା ଆରୋପ କରାଯାଇ ତା'ର ଉପାସନା କରାଗଲା । ଏହି ସୂତ୍ରରେ କେବଳ ଭାରତ ନୁହେଁ ସମଗ୍ର ପୃଥିବୀର କେତେକ ପ୍ରାନ୍ତରେ ଆଦିମ ଅଧିବାସୀମାନେ ସମାନ୍ତରାଳ ଭାବରେ ମୈଥୁନ ବିଧିରେ ଶାକ୍ତ ଉପାସନା କରି ଚାଲିଲେ । ପଶୁଠାରେ ମଧ୍ୟ ପ୍ରବଳ ପ୍ରଜନନ ଶକ୍ତି ଦେଖି ତାକୁ ପୂଜା କରାଗଲା । ପାଶ୍ଚାତ୍ ଦେଶମାନଙ୍କରେ ଓକ୍ ଏବଂ ମାଣ୍ଡ୍ରାକ୍ ପ୍ରଭୃତି ଲିଙ୍ଗାକୃତି ଓ ପ୍ରଜନନକ୍ଷମ ବୃକ୍ଷମାନଙ୍କର ପୂଜା କରାଯାଉଥିଲା । ଭାରତୀୟ ସଂସ୍କୃତିରେ ଉଆଁସୀ କନ୍ୟାମାନେ ପ୍ରଥମେ ସାହାଡ଼ା ବୃକ୍ଷକୁ ବିବାହ କରି ପରେ ପୁରୁଷ ସହ ବିବାହ କରୁଥିଲେ । 'ବାଇବେଲ'ରେ ମଧ୍ୟ ଆଦି ପୁରୁଷ ଆଦାମ୍ ଓ ଆଦିନାରୀ 'ଇଭ୍'ଙ୍କର କାହାଣୀରେ ଯୌନ ପ୍ରଚୋଦନା ଆରମ୍ଭ ହେବାର ମୂଳରେ ଓକ୍‌ବୃକ୍ଷ, ସର୍ପ, ଛାଗ ପ୍ରଭୃତିର ସଂକେତକୁ ଗ୍ରହଣ କରାଯାଇଛି । ଇଜିପଟ୍ ଓ ଏଥେନ୍ସ ପ୍ରଭୃତି ପ୍ରାଚୀନ ନଗରୀମାନଙ୍କରେ 'ଭେନସ୍' ବୋଲି ଯୌନ ଦେବୀଙ୍କର ପୂଜା କରାଯାଉଥିଲା । ତାଙ୍କୁ କର୍ମ ଓ ପ୍ରେମର ଦେବତା ବୋଲି କୁହାଯାଏ । ୫.୭୫ ମିଟର ଉଚ୍ଚତା ବିଶିଷ୍ଟ, ତାଙ୍କର ଏକ ବିରାଟ ଉଲଗ୍ନ ମୂର୍ତ୍ତି ତତ୍କାଳୀନ ଏଥେନ୍ସ ଓ ଇଜିପଟ୍‌ରେ ଯୌନ ଉପାସନା ସମ୍ପର୍କରେ ପରିଚୟ ଦେଇଥାଏ । ବିବାହ ପୂର୍ବରୁ ଯୁବତୀ କନ୍ୟାମାନଙ୍କୁ ଏହି ଦେବୀଙ୍କର ଯୌନତୃପ୍ତି ପାଇଁ ଏକ ରାତ୍ର ତାଙ୍କ ନିକଟରେ ଛଡ଼ା ଯାଉଥିଲା । ବେଶ୍ୟାମାନେ ତାଙ୍କ ଲାଭାଂଶକୁ ଏହି ଦେବୀଙ୍କ ଉଦ୍ଦେଶ୍ୟରେ ଅର୍ପଣ କରି ନିଜର ବ୍ୟବସାୟରେ ଲିପ୍ତ ରହୁଥିଲେ । ଏଥିରୁ ପ୍ରାଚୀନ ସଭ୍ୟମାନବ ସମାଜରେ ମଧ୍ୟ ଯୌନ ଉପାସନାର ପରିଚୟ ମିଳେ । ଗ୍ରୀସ୍, ରୋମ ଓ ଇଜିପଟ୍ ପରି ଆୟର୍ଲାଣ୍ଡରେ ମଧ୍ୟ ପ୍ରାଚୀନ କାଳରେ ଲିଙ୍ଗ ଯୋନିର ଉପାସନା କରାଯାଉଥିଲା ।ଆୟର୍ଲାଣ୍ଡର ଚର୍ଚ୍ଚମାନଙ୍କରେ ଥିବା ସିଲା-ନା-ଗିଗ୍ ଚିତ୍ରଗୁଡ଼ିକୁ ହିଁ ଯୋନି ଉପାସନାର ପ୍ରାଧାନ୍ୟ ସୂଚିତ କରିଥାଏ ।

ଏହିପରି ଓଡ଼ିଶାର ବିଶ୍ୱପ୍ରସିଦ୍ଧ କୋଣାର୍କ ମନ୍ଦିର, ଶ୍ରୀଜଗନ୍ନାଥ ମନ୍ଦିର ଓ ଲିଙ୍ଗରାଜ ମନ୍ଦିର ସମେତ ଅନେକ ଦେବଦେବୀ ପୀଠରେ ମୈଥୁନ ଚିତ୍ର ମଧ୍ୟ ପରିଲକ୍ଷିତ ହୋଇଥାଏ । ମାତ୍ର ପ୍ରଶ୍ନ ହେଉଛି ଏହାର ଉଦ୍ଦେଶ୍ୟ କଣ ? ଏହାର କାରଣ ବା ଉଦ୍ଦେଶ୍ୟ ଏଯାବତ୍ ଯଦିଓ ସଠିକ୍ ହୋଇପାରିନାହିଁ ତଥାପି ବୁଝିବାକୁ ହେବ ମନୁଷ୍ୟ ପ୍ରଥମେ ଉଲଗ୍ନ ଥିଲା । ମନୁଷ୍ୟର ଜନ୍ମ ମୁହୂର୍ତ୍ତ ହିଁ ଉଲଗ୍ନ - ଏହି ଉଲଗ୍ନ ଥିଲାବେଳେ ସେ କେଉଁ କେଉଁ କାମ ପ୍ରଭାବକୁ ତୃପ୍ତି କରିପାରିଥିଲା, ତାହା ପରବର୍ତ୍ତୀ ସମୟରେଏକ ବନ୍ଧ ବା କାମବନ୍ଧ ରୂପେ ପ୍ରଚଳିତ ହେଲା । କାମସୂତ୍ର ପ୍ରଣୟନକାରୀମାନେ ଯେଉଁ କାମବନ୍ଧ ନିତାନ୍ତ ଜରୁରୀ ବୋଲି ମନେ କଲେ ତାହାକୁ ସେମାନେ ଶାସ୍ତ୍ରରେ ଲିପିବଦ୍ଧ କରି ରଖିଲେ । ଏହା ମଧ୍ୟ ନିରାଟ ସତ୍ୟ ଯେ, ଯେଉଁ ଯୋଗୀ ହୁଅନ୍ତୁ ବା ସଂସାରୀ ହୁଅନ୍ତୁ, କର୍ମୀ ବା ଜ୍ଞାନୀ ହୁଅନ୍ତୁ, ତାଙ୍କୁ ତିନୋଟି ଶବ୍ଦ ବିଚଳିତ କରେ- ଆହାର, ନିଦ୍ରା ଆଉ ମୈଥୁନ । ଆହାରଠାରୁ ନିଦ୍ରା ଓ ମୈଥୁନ ସୃଷ୍ଟି ହେଲେ ମଧ୍ୟ, ମୈଥୁନର ଭାବନା ବଡ଼ ଭୟଙ୍କର । ସେ ଭକ୍ତି ଭାବନାକୁ ନିମିଷେକ ମାତ୍ରେ ଦୂରେଇ ଦେଇପାରେ । ତେଣୁ କାମ ସଂଯମ ବା କାମ ତୃପ୍ତି ଏକ ଦୁଇଟି ଉପାୟ ଅବଲମ୍ବନୀୟ । କାମ ଭାବନା ତୃପ୍ତି ପରେ ଯେଉଁ ପବିତ୍ର ଭାବନା ସୃଷ୍ଟି ହୁଏ ତାହା ହେଉଛି ଯୋଗର ଶ୍ରେଷ୍ଠ ଅବସ୍ଥା । ତେଣୁ ମନ୍ଦିର ଗାତ୍ରରେ ଯେଉଁ କାମଚିତ୍ର ଅଙ୍କିତ ହୋଇଛି, ତାହା କାମ ତୃପ୍ତିର ମାର୍ଗ । କାମ ସଂଯମୀ ବ୍ୟକ୍ତି ଏହାକୁ (ଦର୍ଶନ) ବର୍ଜନ କରୁଥିବା ବେଳେ ସଂସାରୀ ମଣିଷ ଏହାକୁ ତୃପ୍ତି ଦେଇ ଠାକୁର ଦର୍ଶନ କଲେ ସମାଧି ସଦୃଶ ଫଳ ପ୍ରାପ୍ତି ହୁଏ । ପୁନଶ୍ଚ ବିଚାର କଲେ ଉଲଗ୍ନ ଚିତ୍ର ଥିବା ମନ୍ଦିର ମଧ୍ୟରେ ଭୂତ,

ପ୍ରେତ, ଯକ୍ଷ, ରାକ୍ଷାସାଦି ଦୁଷ୍ଟ ଶକ୍ତିର ପ୍ରଭାବ ମନ୍ଦିର ମଧ୍ୟକୁ ଯାଉଥିବା ଭକ୍ତମାନଙ୍କ ଉପରେ ପ୍ରଭାବ ବିସ୍ତାର କରିପାରେ ନାହିଁ । ସେମାନେ ଏଭଳି ଚିତ୍ରମାନଙ୍କୁ ଦେଖିଲେ ଦୁର୍ବଳ ହୋଇପଡ଼ନ୍ତି । ଏଭଳି ଅନେକ ଦୁର୍ଦ୍ଧର୍ଷ, ଅହଂକାରୀ ବ୍ୟକ୍ତି ସେହି କାମ ଚିତ୍ର ଦର୍ଶନ କରି ସେହିଠାରେ ଅଟକିଯାନ୍ତି । ଏତଦ୍‌ବ୍ୟତୀତ ଉତ୍କଳରେ ତନ୍ତ୍ରର ପ୍ରଭାବ ଓ କଳାର ପ୍ରଦର୍ଶନ ଉଦ୍ଦେଶ୍ୟରେ ଏହି ଚିତ୍ର ସବୁ ଅଙ୍କିତ କରାଯାଇଛି ।

ଅଗ୍ନି ପୁରାଣ ତଥା ସ୍କନ୍ଦ ପୁରାଣ ମତରେ ବଜ୍ରପାତ ଭୟରୁ ମନ୍ଦିରକୁ ରକ୍ଷା କରିବା ନିମନ୍ତେ ମୈଥୁନ ଚିତ୍ର ମନ୍ଦିରରେ ପରିଦୃଷ୍ଟ ହୁଏ । ଅଗ୍ନି ପୁରାଣରେ ବର୍ଣ୍ଣିତ -

'ବଜ୍ରପାତଦିତ୍ତିତ୍ୟାର୍ଥ ବାରଣାର୍ଥ ସୂଲୋଭମେ
ମିଥୁନୈଂ ରଥ ବର୍ଲ୍ଲଭି ଅଧୋଶାଖା ବିମଣ୍ଡୟେତ୍ ।'

ଓଡ଼ିଶାରେ ମୈଥୁନ ଚିତ୍ରର ପରିଦୃଷ୍ଟ ହିଁ ଶିଳ୍ପଗତ ପ୍ରଥା ଅଟେ । ଆଧାତ୍ମିକ ମତ ଏହି ଯେ ଏଗୁଡ଼ିକ ସଂଯମତା ମନରେ ଆଣିଥାଏ । ମାତ୍ର ଏହି ଉକ୍ତି ଯୁକ୍ତିଯୁକ୍ତ ନୁହେଁ । 'ଶିଳ୍ପ ସାରଣୀ' ନାମକ ଶିଳ୍ପ ଗ୍ରନ୍ଥରେ ବର୍ଣ୍ଣିତ ମନ୍ଦିରର କଳାରେ 'ଚଉଦଶ ଯୋନି' ପାଇଁ ମୈଥୁନ ମୂର୍ତ୍ତିମାନ ରଖାଯାଇଥାଏ । ଯେପରି କୌଣସି ଜୀବବସ୍ତୁ ଆନନ୍ଦରୁ ବଞ୍ଚିତ ହେବେ ନାହିଁ । ସମସ୍ତ ଜୀବର ଆନନ୍ଦ ପାଇଁ ଏହା ହିଁ ରହିଥାଏ । ଦେବତାଙ୍କ ଆନନ୍ଦ ପାଇଁ ଦେବମୂର୍ତ୍ତି, ରାକ୍ଷାସମାନଙ୍କ ପାଇଁ ବିକଟ ମୂର୍ତ୍ତି, ଯକ୍ଷଯୋନିର ଆନନ୍ଦ ପାଇଁ ଯକ୍ଷ ମୂର୍ତ୍ତି, ଗନ୍ଧର୍ବ ଯୋନିର ଆନନ୍ଦ ପାଇଁ ନୃତ୍ୟ ମୂର୍ତ୍ତି, କିନ୍ନର ଆନନ୍ଦ ପାଇଁ କିନ୍ନରୀ ମୂର୍ତ୍ତି, ନାଗ ଲୋକର ଆନନ୍ଦ ପାଇଁ ନାଗବନ୍ଧ ମୂର୍ତ୍ତି, ପଶୁମାନଙ୍କ ଆନନ୍ଦ ପାଇଁ ପଶୁବନ୍ଧ ମୂର୍ତ୍ତି, ପକ୍ଷୀମାନଙ୍କ ଆନନ୍ଦ ପାଇଁ ପକ୍ଷୀ ବନ୍ଧ, ଭ୍ରମରାଦି ପତଙ୍ଗମାନଙ୍କ ଆନନ୍ଦ ପାଇଁ ପୁଷ୍ପବନ୍ଧ, ନରମାନଙ୍କ ଆନନ୍ଦ ପାଇଁ ନରବନ୍ଧ ଆଦି ଦଶଗୋଟି ସୌମ୍ୟ ଯୋନି ସମେତ ଚାରିଗୋଟି ତୀର୍ଯ୍ୟକ୍ୟ ଯୋନି ଭୂତ, ପ୍ରେତ, ପିଶାଚ ଓ କୀଟକମାନଙ୍କ ପାଇଁ ମନ୍ଦିରରେ ନିର୍ମିତ ହୋଇଥାଏ, ଯାହାକୁ ଦେଖି ଏହି ଅଶରୀରୀମାନେ ସନ୍ତୋଷ ଲାଭ କରିଥାନ୍ତି । ଏକ ଉଦାର କାରଣରୁ ଆର୍ଯ୍ୟ ଶିଳ୍ପୀମାନେ କଳାର ମହତ୍ତ୍ୱ ପାଇଁ ଏହାକୁ ରଖିଛନ୍ତି । ଏହାର ଅନ୍ୟ କେତେକ କାରଣ ଅନେକ ବିଚାର କରିଥାନ୍ତି ଯେ ବହୁ ବର୍ଷ ଧରି ସ୍ଥପତିମାନେ ଘର ସଂସାର ମାର୍ଗ ବା ଗାର୍ହସ୍ଥ୍ୟ ଧର୍ମ ଛାଡ଼ି ମନ୍ଦିର ନିର୍ମାଣ ସ୍ଥଳରେ ସଂଯମ ରହିବାକୁ ତାଙ୍କର ମନର ବିକାରରୁ ସେମାନେ ଏପରି ନଗ୍ନ ମୂର୍ତ୍ତିମାନ ରଖିଛନ୍ତି । ମାତ୍ର ବିଚାର କରିବା ଆବଶ୍ୟକ କାହାର କାମର ବିକାରରୁ ସ୍ଥାପତ୍ୟ ଶାସ୍ତ୍ର ଏଭଳି ଏକ ବିକାରକୁ ମନ୍ଦିରର ପବିତ୍ର ଗାତ୍ରରେ ରଖିବା ଆଦୌ ଶାସ୍ତ୍ର ସମ୍ମତ ନୁହେଁ । କାରଣ ମନ୍ଦିର ନିର୍ମାଣ ରାଜାଙ୍କର ବିନା ଅନୁମତିରେ ଏପରି ମୈଥୁନ ଚିତ୍ର ମନ୍ଦିରରେ କଦାପି ସ୍ଥାନ ପାଇ ନପାରେ । ତେଣୁ ଯଦି ସାଧାରଣ ବ୍ୟକ୍ତି ଏପରି କାମୁକ ଥିଲେ ତେବେ ରାଜା ନିଶ୍ଚୟସେହି କାମୁକ ଧର୍ମୀ ହୋଇଥିବା ସମ୍ଭବ । ଯଦି ତାହା ହୋଇଥାଏ ତେବେ ରାଜା ଦେବ ମନ୍ଦିର ପରିବର୍ତ୍ତେ ଅର୍ଥ ଓ ଶ୍ରମ ବ୍ୟୟ କରି ରତିଶାଳାମାନ ନିର୍ମାଣ କରିଥାନ୍ତେ । ଯେଉଁମାନେ ପ୍ରେମ ମୂଳକ ଉପନ୍ୟାସମାନ ଲେଖନ୍ତି ସେମାନେ କେବଳ ପ୍ରେମିକ ନୁହଁନ୍ତି, ଯେଉଁମାନେ ଡିଟେକ୍‌ଟିଭ୍ ବା ରହସ୍ୟ ଉପନ୍ୟାସ ଲେଖନ୍ତି ସେମାନେ ଦସ୍ୟୁ ନୁହଁନ୍ତି । 'କଳା'କୁ କଳା ଦୃଷ୍ଟିରେ ଦେଖିଲେ କଳାର ପ୍ରକୃତ ମହତ୍ତ୍ୱ ଉପଲବ୍‌ଧି କରିହୁଏ । ତେଣୁ ସ୍ଥାପତ୍ୟ ହିଁ ପ୍ରଣିଧାନଯୋଗ୍ୟ । ଭୂତ, ପ୍ରେତ, ପିଶାଚାଦି ତୀର୍ଯ୍ୟକ ଯୋନିମାନେ ଏହି ଅଶ୍ଳୀଳ ମୂର୍ତ୍ତି ଦର୍ଶନ କରି କାମ ରୂପୀ ରୂପେ ତୃପ୍ତିଲାଭ କରି ଭକ୍ତଗଣଙ୍କ ନିକଟରୁ ଦୂରରେ ରହିଥାନ୍ତି ।

ଶିଳ୍ପଶାସ୍ତ୍ର ବା ନିର୍ମାଣ ବିଧି ଅନୁଯାୟୀ ମନ୍ଦିରରେ ମୈଥୁନ ଚିତ୍ର ପ୍ରୟୋଜନ ହୋଇଥାଏ । କାରଣ ମନ୍ଦିରର ଏକ 'ଗୁପ୍ତ ଯୋଗିନୀ ଗର୍ଭଯନ୍ତ୍ର' ଥାଏ । ଏହି ଯନ୍ତ୍ରକୁ ସର୍ବସାଧାରଣ ଦୃଷ୍ଟିରୁ ଗୁପ୍ତ ରଖିବା ପାଇଁ ଏହି ମୈଥୁନ ମୂର୍ତ୍ତିର ନିର୍ମାଣ ହୋଇଥାଏ । ଏହି 'ଗୁପ୍ତଯୋଗିନୀ ଗର୍ଭଯନ୍ତ୍ର' ଯେଉଁଠି ରହେ, ତାହା ଏକ ବୀର ମନ୍ଦିର ରୂପେ ପରିଚୟ ଦେବା ସହ ସର୍ବ ବିଘ୍ନ ଭୟକୁ ଦୂର କରିଥାଏ । ଏହି ଗର୍ଭଯନ୍ତ୍ର ରହିବାର ଅନ୍ୟ କାରଣ ହେଲା, ଏହା 'ଆଗମୋକ୍ତ' ତତ୍ତ୍ୱାନୁଯାୟୀ ବା 'କୌଳାଚାର' ବିଧି ଅନୁସାରେ ନିର୍ମିତ । ଏହା ଯେଉଁଠି ବିଦ୍ୟମାନ, ସେଠାକୁ ଭୂତ ପ୍ରେତାଦି ପ୍ରବେଶ କରନ୍ତି ନାହିଁ । 'ଶିଳ୍ପ ପ୍ରକାଶ' ପୋଥିରେ ଏହାକୁ 'କାମକଳା' କୁହାଯାଏ । କାରଣ ଜଗତର ମୂଳ ହେଉଛି କାମ । ଏହି କାମ କ୍ରିୟା ବିନା ସୃଷ୍ଟି ଅସମ୍ଭବ । ତେଣୁ ଏହି ଦୃଷ୍ଟିରୁ ଉତ୍କଳୀୟ ସ୍ଥାପତ୍ୟରେ ମୈଥୁନ ଚିତ୍ର ଦେଖାଯାଏ । ଏହି ମୈଥୁନ ଚିତ୍ରକୁ ଦେଖି କେତେକ ଏହାକୁ କହିଥାନ୍ତି ଏହା ହେଉଛି ଶିବରୂପୀ ମହାଲିଙ୍ଗ ଓ ଶକ୍ତିରୂପୀ ଭାବର ମିଳନ । କେହି ମତଧାରୀ ସଂଖ୍ୟା ମତରେ ଏହାକୁ ପୁରୁଷ ଓ ପ୍ରକୃତିର ମିଳନ ବା ତାନ୍ତ୍ରିକ ତନ୍ତ୍ରରେ ଶିବ ଓ ଶକ୍ତିର ମିଳନ ବୋଲି କହିଥାନ୍ତି ତ ସହଜଯାନ ବୌଦ୍ଧ ମତରେ ରଜ ଓ ବିନ୍ଦୁର ମିଳନ ବା ରସ ଓ ରତିର ମିଳନ ଅଥବା ବୈଷ୍ଣବ ମତରେ ଶ୍ରୀକୃଷ୍ଣ ଓ ରାଧାଙ୍କର ମିଳନ ବା ନାଦ ଓ ବିନ୍ଦୁର ମିଳନ ରୂପେ କଳ୍ପନା କରାଯାଇଛି । ତେଣୁ ସର୍ବୋପରି ଏହାକୁ ସୃଷ୍ଟିର ସଂକେତ ରୂପେ ଧରାଯାଏ ।

ତନ୍ତ୍ରଶାସ୍ତ୍ରର ପଞ୍ଚମକାର ବିଧିରେ ମୈଥୁନ ଅନ୍ୟତମ । ମୈଥୁନ ହେଉଛି ପରମତତ୍ତ୍ୱ ଓ ସୃଷ୍ଟିତତ୍ତ୍ୱ ପ୍ରଳୟର କାରଣ । ଏହି ମୈଥୁନ ଦ୍ୱାରା ବ୍ରହ୍ମଜ୍ଞାନ ସିଦ୍ଧି ହୋଇଥାଏ । ତେଣୁ ଏହି ତାନ୍ତ୍ରିକ ପୂଜାର ନିଦର୍ଶନ ରୂପେ ମଧ୍ୟ ମନ୍ଦିରରେ ମୈଥୁନ ଚିତ୍ର ରହିବା କିଛି ବିଚିତ୍ରତା ନୁହେଁ । ଭକ୍ତର ମନ ଜିଣିବା ପାଇଁ ମଧ୍ୟ ଏହି ମୈଥୁନ ମୂର୍ତ୍ତି ରହିଥାଏ । କାରଣ ଯେ ପ୍ରକୃତ ଭକ୍ତ, ସେ ସାଂସାରିକ ମାୟା, ମମତା, ମୋହ ଆଦିକୁ ତ୍ୟାଗ କରି ଏକାଗ୍ର ଚିତ୍ତରେ ନିଜର ସାଧନା ପଥରେ ଅଗ୍ରସର ହେଲେ ପରଂବ୍ରହ୍ମଙ୍କ ସାନିଧ୍ୟ ଲାଭ କରିପାରେ, ଭକ୍ତ କଳ୍ପନା କରିପାରେ ଯେପରି ପ୍ରିୟାକୁ ଆଲିଙ୍ଗନ କରିବା ବେଳେ ପୁରୁଷ ବାହ୍ୟ ବିଷୟ କିମ୍ବା ଅନ୍ତଃ ବିଷୟ ଜାଣିପାରେନା । ସେହିପରି ଆତ୍ମା ବା ପରମାତ୍ମା ପରଂବ୍ରହ୍ମଙ୍କୁ ଦର୍ଶନ କରିବାର ଉତ୍ସାହ ସମୟରେ ଏହି ଜୀବାଣୁ ବାହ୍ୟ କିମ୍ବା ଅନ୍ତଃ ପଦାର୍ଥ ବିଷୟରେ ଜାଣିପାରିବ ନାହିଁ । ଏହାକୁ ଭକତ ଏକାଗ୍ରତାର ସଂକେତ ରୂପେ ଗ୍ରହଣ କରିଥାଏ ।

ଉତ୍କଳର ଶ୍ରୀମନ୍ଦିର ସମେତ ଅନ୍ୟ କେତେକ ମନ୍ଦିରର ନିର୍ମାଣ ପ୍ରଣାଳୀକୁ ଅନୁଧ୍ୟାନ କଲେ ଜଣାଯାଏ ଯେ, ଏହା ପ୍ରକୃତି ସମ୍ଭବ ତ୍ରିଗୁଣାତ୍ମକ ଅଟେ । ଉଦାହରଣ ସ୍ୱରୂପ ଯଦି ଶ୍ରୀଜଗନ୍ନାଥ ମନ୍ଦିରକୁ ତିନି ଭାଗରେ ବିଭକ୍ତ କରି ଅନୁଧ୍ୟାନ କରାଯାଏ, ତେବେ ଏହାର ନିମ୍ନାଂଶରେ ତାମସିକ ଭାବ ବା ପଶୁ ଭାବର ବିଗ୍ରହ ଯଥା- ରାକ୍ଷାସ, ମସ୍ତକ ଆଦି ରହିଛି । ଏହାର ମଧ୍ୟାଂଶରେ ବୀର ଭାବ ତଥା ରାଜସିକ ଭାବର ବିଗ୍ରହ ଯଥା- ଯୁଦ୍ଧାଦିର ଚିତ୍ର ତଥା ମୈଥୁନ ଚିତ୍ର ରହିଛି । ଊର୍ଦ୍ଧ୍ୱଦେଶରେ ସାତ୍ତ୍ୱିକ ଭାବ ବା ଦିବ୍ୟ ଭାବର ବିଗ୍ରହ ରହିଛି । ତେଣୁ ଶ୍ରୀମନ୍ଦିର ଶୈଳୀ ପରି ଥିବା ମନ୍ଦିର ହେଉଛି ତିନିଗୁଣର ପ୍ରତୀକ ଓ ତନ୍ମଧ୍ୟସ୍ଥ ମୈଥୁନ ମୂର୍ତ୍ତି ହେଉଛି ରାଜସିକ ଭାବର ପ୍ରତୀକ ।

ମନୁଷ୍ୟର ମୃତ୍ୟୁପରେ ତା'ର ଜୀବାତ୍ମା ଶରୀର ତ୍ୟାଗ କରି ଚାଲିଯାଏ । ମାତ୍ର କେତେକ ଆତ୍ମା ପରମାତ୍ମାରେ ଲୀନ ହୋଇଥାଏ ତ ଆଉ କେତେକ ପୁନଶ୍ଚ ସଂସାରରେ ନୂତନ ଶରୀର ଧାରଣ କରନ୍ତି । କିନ୍ତୁ କେତେକ ଆତ୍ମା ରହି ଯାଆନ୍ତି, ଯେଉଁମାନଙ୍କର ମୋକ୍ଷ ନାହିଁ । ଏହି ଆମୋକ୍ଷ ଆତ୍ମାଗୁଡ଼ିକ କାମନା ପ୍ରବୃତ୍ତ ଏବଂ ପୂର୍ବଜନ୍ମରେ ତାଙ୍କର ଯେଉଁ କାମନା ବାସନା ପୂରଣ ହୋଇପାରି ନଥାଏ, ତାହା ସେମାନେ ଅଶରୀରୀ ରୂପରେ ଉପଭୋଗ କରିବା ପାଇଁ ମହାଶୂନ୍ୟରେ ଘୂରି ବୁଲନ୍ତି । ତେଣୁ ସେହି କାମ ଦେହୀ ଭୂତ ପ୍ରେତାଦିଙ୍କର ସନ୍ତୋଷ ବିଧାନ ନିମନ୍ତେ ମନ୍ଦିର ଦେହରେ ଏପରି ଯୌନ ମୂର୍ତ୍ତିମାନ ସ୍ଥାପନ କରାଯାଇଥାଏ ବୋଲି କେତେକ ମତପୋଷଣ କରିଥାନ୍ତି । ସେମାନେ ଏହି ଦୃଶ୍ୟମାନ ଦେଖି ଏପରି ମୁଗ୍ଧ ହୋଇ ଯାଆନ୍ତି ଯେ, ସେମାନେ ମନ୍ଦିରର କାର୍ଯ୍ୟକ୍ରମରେ ବା ଧର୍ମାନ୍ୱେଷୀ ଲୋକମାନଙ୍କ ଉପରେ କୌଣସି ପ୍ରଭାବ ପକାଇ ପାରନ୍ତି ନାହିଁ । ତନ୍ତ୍ରଶାସ୍ତ୍ରରେ ମଧ୍ୟ ଉଲ୍ଲେଖ ଅଛି ଯେ, ଉଲଗ୍ନ ମୂର୍ତ୍ତି ବା ଛବି ଦେଖିଲେ ବଜ୍ର ଓ ଭୂତ ପ୍ରେତାଦି ସେସ୍ଥାନରେ ପ୍ରବେଶ କରିପାରନ୍ତି ନାହିଁ । ସେଥି ନିମନ୍ତେ ତନ୍ତ୍ର ସାଧକମାନେ ଉଲଗ୍ନ ହୋଇ ତନ୍ତ୍ର ସାଧନା କରିଥାନ୍ତି । ଏହା ଦ୍ୱାରା ସେମାନେ ବଜ୍ର ବା ଭୂତପ୍ରେତଙ୍କ ପ୍ରଭାବରୁ ବଞ୍ଚିତ ହୋଇଥାନ୍ତି । ଆଉ ମଧ୍ୟ ଜଣାଯାଏ ପାହାଡ଼, ଜଙ୍ଗଲରେ ବାସ କରୁଥିବା ଅଧିବାସୀମାନେ ବଜ୍ର, ଭୂତ ଓ ପ୍ରେତାଦି ଭୟରୁ ରକ୍ଷା ପାଇବା ପାଇଁ ପୂର୍ବେ ସଂପୂର୍ଣ୍ଣ ଉଲଗ୍ନ ହୋଇ ଚଳୁଥିଲେ । ତେଣୁ ଅତୀତରେ ବଜ୍ର ଓ ଭୂତପ୍ରେତଙ୍କ ପ୍ରଭାବରୁ ମନ୍ଦିରମାନଙ୍କ ସୁରକ୍ଷା ନିମନ୍ତେ ମନ୍ଦିର ଦେହରେ ଏପରି ଯୌନ ନଗ୍ନ ଚିତ୍ରମାନ ନିର୍ମିତ କରାଯାଉଥିଲା । ମନ୍ଦିର ଦେହରେ ଥିବା ଏହି ଯୌନ ମୂର୍ତ୍ତିଗୁଡ଼ିକ ତନ୍ତ୍ର ଯୁଗର ତନ୍ତ୍ର ସାଧନାର ପ୍ରତୀକ 'କାମକଳା ବିଦ୍ୟା' ନାମରେ ପ୍ରସିଦ୍ଧ । ମନ୍ଦିରର ପୂଜା ନୀତି ମଧ୍ୟରେ ଏହି କାମକଳାଙ୍କର ପୂଜା ବିଧାନ ମଧ୍ୟ ରହିଛି ।

ପୂର୍ବକାଳରେ ଲୋକମାନଙ୍କର ଶୁଦ୍ଧ ଶାସ୍ତ୍ରୀୟ ଧାରଣା ଓ ପାରମ୍ପରିକ ଉଚ୍ଚ ଚିନ୍ତାଧାରା ରହିଥିଲା । ମନ୍ଦିର ଦେହରେ ତତ୍କାଳୀନ ଲୋକମାନଙ୍କର ସାମାଜିକ, ରାଜନୈତିକ ତଥା ଅର୍ଥନୈତିକ ଜୀବନର ପ୍ରତ୍ୟେକ ଦୃଶ୍ୟ ରହିଛି । ଏପରିକି ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଜୀବନର ସମସ୍ତ କାର୍ଯ୍ୟକଳାପ ମନ୍ଦିର ଦେହରେ ସୁସ୍ପଷ୍ଟ ଭାବେ ପ୍ରକାଶିତ ହୋଇଛି । ଶିକ୍ଷାଦାନ, କୃଷିକାର୍ଯ୍ୟ, ଯୁଦ୍ଧଯାତ୍ରା ଆଦି ବିଭିନ୍ନ ଯାତ୍ରା ପର୍ବର ଯେଉଁଭଳି ଦୃଶ୍ୟ ରହିଛି ନାରୀମାନଙ୍କ ବିଭିନ୍ନ ରୂପ, ଢଙ୍ଗ, ବେଶଭୂଷାର ଦୃଶ୍ୟ ମଧ୍ୟ ରହିଛି । ଯୌନକ୍ରିୟା ମଧ୍ୟ ମନୁଷ୍ୟ ଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ । ତାହା ଏକ ବଳିଷ୍ଠ କର୍ମଯୋଗ ରୂପେ ଗୃହୀତ ହୋଇଥାଏ । ଯୌନକର୍ମ ପବିତ୍ର କର୍ମ ରୂପେ ପାଳିତ ହୋଇଥାଏ । ତାହା ସହିତ ବ୍ରହ୍ମଚର୍ଯ୍ୟ ଓ ଯୌନକର୍ମର ବିଭିନ୍ନ ବିଧିବିଧାନ ପ୍ରତି ମଧ୍ୟ କଠୋରତା ଅବଲମ୍ବନ କରାଯାଏ । ତେଣୁ ଏ ପ୍ରକାର ଦୃଶ୍ୟ ଯେ ଲୋକମାନଙ୍କର ଚରିତ୍ର ପ୍ରତି ପ୍ରଭାବ ପକାଉଥିବ ତାହା ବିଶ୍ୱାସ କରାଯାଇ ନପାରେ । କାରଣ କାମବସ୍ତୁ ବା ଦୃଶ୍ୟ କାମଦ୍ଦୀପକ ନୁହେଁ । କାମ ଭାବ ନୁହେଁ, ଏହା କାମୋଦ୍ଦୀପକ ଅଟେ । ପୂର୍ବକାଳରେ ପୁରୁଷ ଓ ସ୍ତ୍ରୀ ମଧ୍ୟରେ ଯୌନ ଜୀବନ ଅତ୍ୟନ୍ତ ଶୁଦ୍ଧପୂତ ଭାବରେ ଗଢ଼ି ଉଠିଥିଲା । ପବିତ୍ର ଦାମ୍ପତ୍ୟ ଜୀବନରେ ଉତ୍ତମ ସନ୍ତାନ ଲାଭ ଯୌନକ୍ରିୟାର ଏକ ମାତ୍ର ଲକ୍ଷ୍ୟ ଥିଲା । ଉତ୍ତମ ସନ୍ତାନ ଲାଭ କେବଳ ସାଫଲ୍ୟ ଯୌନକ୍ରିୟା ଉପରେ ସମ୍ପୂର୍ଣ୍ଣ ନିର୍ଭର କରେ । ତେଣୁ ପୁରାଣ ଯୁଗରେ ବାତ୍ସାୟନ ପ୍ରଭୃତି ମହର୍ଷିମାନେ ଲୋକମାନଙ୍କର ଶିକ୍ଷା ନିମନ୍ତେ ରତିଶାସ୍ତ୍ର ଓ ଯୌନ ବିଜ୍ଞାନ ଆଦି ବହୁ ମୂଲ୍ୟବାନ ଉପାଦେୟ ଗ୍ରନ୍ଥମାନ ରଚନା କରିଥିଲେ । ତେଣୁ ଉତ୍କଳୀୟ ମନ୍ଦିରରେ ଥିବା ଏସବୁ ଯୌନ ମୂର୍ତ୍ତିଗୁଡ଼ିକ ଏକ ଶିକ୍ଷଣୀୟ ବସ୍ତୁ । ଏଥିରୁ ଯୌନ କର୍ମର ବିଧିବିଧାନ ତଥା ତା'ର ପରିଣାମର ସୁଫଳ ଓ କୁଫଳ ଉଭୟ ଉପଲବ୍ଧି କରାଯାଏ ।

ତାତ୍ତ୍ୱିକ ଦୃଷ୍ଟିରୁ ଦେଖିଲେ ମୈଥୁନ କହିଲେ ସଙ୍ଗମ ବା ମିଳନକୁ ବୁଝାଏ । ସୁଷମ୍ନା ଓ ପ୍ରାଣବାୟୁର ସଙ୍ଗମକୁ ତାନ୍ତ୍ରିକ ଭାଷାରେ ମୈଥୁନ ବୋଲି କୁହାଯାଏ । ସାଧାରଣ ମୈଥୁନର ଆନନ୍ଦଠାରୁ ସୁଷୁମ୍ନାରେ ପ୍ରାଣବାୟୁ ସ୍ଥିତି ସମୟ ବହୁ ଗୁଣରେ ଆନନ୍ଦ ଦେଇଥାଏ । ସେହି ଆନନ୍ଦ ଲାଭ କରି ଥିବା ସାଧକ ସହବାସକୁ ଘୃଣା କରେ, ଯେଉଁମାନେ ଏହି ଗୂଢ଼ ଅର୍ଥକୁ ବୁଝି ପ୍ରବୃତ୍ତ ହେଲେ ସେମାନେ ଯୋଗମାର୍ଗୀ ବା ତାନ୍ତ୍ରିକ କୌଳାଚାରୀ ନାମରେ କଥିତ ହେଲେ । କ୍ରମଶଃ ପାଶବ ସଂସ୍କାର ଏହି ସାଧନାକୁ କଳୁଷିତ କଲା । ଏଥିରେ ଥିବା ବାମାଚାର ବୌଦ୍ଧ, ଜୈନ, ଶୈବ, ଶାକ୍ତ ଓ ବୈଷ୍ଣବ ସମ୍ପ୍ରଦାୟରେ ପ୍ରବେଶ କରି ଶୈବ ସହଜିଆ, ଶାକ୍ତ ସହଜିଆ, ତାନ୍ତ୍ରିକ ସହଜିଆ, ବୈଷ୍ଣବ ସହଜିଆ ପ୍ରଭୃତି ସମ୍ପ୍ରଦାୟକୁ ସୃଷ୍ଟି କଲା । ଫଳରେ ଉତ୍କଳୀୟ ମନ୍ଦିରମାନଙ୍କରେ ମୈଥୁନ ଚିତ୍ର ଓ ମୂର୍ତ୍ତିମାନ ସ୍ଥାନ ପାଇଲା ଯାହାକି ଉତ୍କଳୀୟ କଳା ଓ ସଂସ୍କୃତିର ନିଦର୍ଶନ ଅଟେ ।

ଇତିହାସ ବିଭାଗ
ଶ୍ରୀଜଗନ୍ନାଥ ମହାବିଦ୍ୟାଳୟ
କାଇପଦର, ଖୋର୍ଦ୍ଧା

# ପାରଳାଖେମୁଣ୍ଡିର ସାହିତ୍ୟିକ ବିଭା ଓ ବିଭବ

ପ୍ରଦୀପ୍ତ କୁମାର ବାରିକ

ପାରଳା ଖେମୁଣ୍ଡି (ଆଜିର ଗଜପତି ଜିଲ୍ଲା) ଓଡ଼ିଶାର କ୍ଷମତା କେନ୍ଦ୍ର ଭୁବନେଶ୍ୱରଠାରୁ ଦୂରବର୍ତ୍ତୀ ଏବଂ ଆନ୍ଧ୍ରପ୍ରଦେଶର ସୀମାନ୍ତବର୍ତ୍ତୀ ଏକ ସହର ମାତ୍ର ନୁହେଁ, ଏହା ଆଧୁନିକ ଓଡ଼ିଶାର ସୂତିକାଗାର । ଓଡ଼ିଶାର ରାଜନୀତିକ ମାନଚିତ୍ରରେ ଏବେ ପାରଳାଖେମୁଣ୍ଡି କହିଲେ ଯେଉଁ ଭୂଖଣ୍ଡକୁ ବୁଝାଏ, ତାହା ପ୍ରକୃତ ପାରଳାଖେମୁଣ୍ଡିର ଏକ ବିକୃତ ଓ ଖଣ୍ଡିତ ଅଂଶ ମାତ୍ର । ଉତ୍କଳର ରାଜନୀତିକ ସ୍ୱତନ୍ତ୍ରତା ପାଇଁ ଏହା ଯେଉଁଭଳି ଏକ ନିଶ୍ଚିତ ଅଧ୍ୟାୟ, ଓଡ଼ିଆ ଭାଷା ସାହିତ୍ୟର ଅନ୍ୱୟ ଓ ଅଭିବୃଦ୍ଧି ପାଇଁ ସେହିଭଳି ଏକ ସ୍ପର୍ଦ୍ଧିତ ଉଚ୍ଚାରଣ । ପାରଳାର ସାହିତ୍ୟିକ ପ୍ରତିବେଦନ ସଂପର୍କରେ ଆଲୋକପାତ କରିବା ଏ କ୍ଷୁଦ୍ର ପ୍ରବନ୍ଧର ଆଭିମୁଖ୍ୟ ।

### ଗୋପାଳକୃଷ୍ଣ ଚିନ୍ତେ ଦୁହିଁକିରେ -

### କବିତାରେ ଲୌକିକତା ଓ ସାଂଗୀତିକତାର ଯୁଗଳ ଅନୁରାଗ

ଓଡ଼ିଆ ସାହିତ୍ୟର ଗତିଧାରାରେ ପୁରାଣ ଓ ଛାନ୍ଦ ଯୁଗ ପରେ ଆସିଥିଲା ପଦାବଳୀ ସାହିତ୍ୟର ଯୁଗ । ଏହି ସମୟରେ ସଂଗୀତ ସାହିତ୍ୟର ବିପୁଳ ପ୍ରତିଶ୍ରୁତି ଓ ତା'ର ଲାଳିତ୍ୟମୟ ମୂର୍ଚ୍ଛନାରେ ଯେଉଁମାନେ ଓଡ଼ିଶାର ଜନମାନସକୁ ଚିନ୍ମୟ ଆନନ୍ଦ ଓ ମୁଗ୍ଧ ବିସ୍ମୟର ମିଳିତ ସମବାୟରେ ଉଦ୍‌ବେଳିତ କରିଥିଲେ କବିକଳହଂସ ଗୋପାଳକୃଷ୍ଣ ପଟ୍ଟନାୟକଙ୍କ ନାମ ଅବିସ୍ମରଣୀୟ ।

କବି ଗୋପାଳକୃଷ୍ଣ ଓଡ଼ିଶାର ଅକ୍ଷରଜ୍ଞାନ ବର୍ଜିତ ଅଶିକ୍ଷିତ ଗ୍ରାମ୍ୟ ଜନତାଠାରୁ ଆରମ୍ଭ କରି ଅତ୍ୟୁଚ୍ଚ ଶିକ୍ଷିତ ଶ୍ରେଣୀ ପର୍ଯ୍ୟନ୍ତ ପ୍ରତ୍ୟେକ ସ୍ତରରେ ଏକ ଆଦୃତ ଆବେଗ । ଏହି ଆବେଗଟି ସାହିତ୍ୟିକ ରସସ୍ନିଗ୍ଧତା, ଭକ୍ତି ଭାବନାର ଐକାନ୍ତିକତା ଓ ସଂଗୀତର ଲାଳିତ୍ୟମୟ ଆମନ୍ତ୍ରଣର ଏକ ତ୍ରିବେଣୀ ସଂଗମ । ଓଡ଼ିଆ ପଦାବଳୀ ସାହିତ୍ୟକୁ ଏକ ନିର୍ଣ୍ଣାୟକ ଭୂମିକାରେ ଉପସ୍ଥାପନ କରି ଗୋପାଳକୃଷ୍ଣ ହିଁ ରୀତି ଯୁଗର ଅବସାନ ପରେ ରତିକ୍ଳାନ୍ତ ହୋଇପଡ଼ିଥିବା ଓଡ଼ିଆ କାବ୍ୟ ନାୟିକା ପାଦରେ ପିନ୍ଧାଇ ଦେଇଥିଲେ ଗତିମୟତାର ଘୁଂଘୁର, ଯାହାର ମୂର୍ଚ୍ଛିତ ଆବେଗରେ ନାଚି ଥିଲା ସେ ନିଜେ, ଆଉ ନଚାଇଥିଲା ଓଡ଼ିଶାର ସାରସ୍ୱତ ପ୍ରାଣ ଅଗଣିତ ନରନାରୀଙ୍କୁ । କବିତା-ଲତାର ପ୍ରତିଟି ପତ୍ର ପ୍ରସୂନକୁ ମଧୁକ୍ଷରା କରାଇ ପାରିଥିବା କବି ଗୋପାଳକୃଷ୍ଣ କେବଳ ପାରଳାଖେମୁଣ୍ଡିର ଗୌରବ ନୁହନ୍ତି, ସମଗ୍ର ଓଡ଼ିଶାର ଏକ ମୂର୍ତ୍ତିମନ୍ତ ମର୍ଯ୍ୟାଦା ।

ଓଡ଼ିଆ ସାହିତ୍ୟରେ କବିତାର ଅଭାବ ନାହିଁ । ବୋଧହୁଏ, ଆମ ସାହିତ୍ୟର ଅନ୍ୟାନ୍ୟ ବିଭାଗ ଅପେକ୍ଷା କବିତା ବିଭାଗଟି ଅଧିକ ପୁଷ୍କଳ ଓ ପୃଥୁଳାୟତନ । କିନ୍ତୁ ପଦ୍ୟର ଅମୃତ ଆଶୀର୍ବାଦରେ ଯଦି କାହାର କବିତା କାଳୋତ୍ତୀର୍ଣ୍ଣ ହୋଇଛି ବୋଲି ଅନୁସନ୍ଧାନ କରାଯାଏ, ତେବେ ଗୋପାଳକୃଷ୍ଣଙ୍କୁ ଛାଡ଼ି ଆଉ ଆଗକୁ ଯାଇ ହେବ ନାହିଁ । ଗୋପାଳକୃଷ୍ଣଙ୍କ ପଛରେ ପଡ଼ି ରହିଥିଲା ଓଡ଼ିଆ କବିତାର ଏକ ସୁଦୀର୍ଘ ପରମ୍ପରା । ସାରଳାଙ୍କଠାରୁ ଆରମ୍ଭ କରି ବଳଦେବ ରଥଙ୍କ ପର୍ଯ୍ୟନ୍ତ ପ୍ରଲମ୍ବିତ ଥିଲା ଏ ପରମ୍ପରା । ତଥାପି ବାରି ହୋଇପଡ଼ନ୍ତି ଗୋପାଳକୃଷ୍ଣ, କେମିତି ଅଲଗା ଦିଶେ ତାଙ୍କ ମୁହଁ, ନିଆରା ଶୁଭେ ତାଙ୍କ କଣ୍ଠସ୍ୱର !

କେବଳ ବୈଷ୍ଣବ ରସତତ୍ତ୍ୱର ଆଧାରରେ ତାଙ୍କ ପଦାବଳୀଗୁଡ଼ିକର ମୂଲ୍ୟାୟନ କଲେ ଯଥେଷ୍ଟ ହେବ ନାହିଁ । ତାଙ୍କ କବିତା-କଳାର ଲୌକିକ ଆବେଦନ ଓ ସାଂଗୀତିକ ସମ୍ମୋହନ ବୋଧହୁଏ ଆମ ପାଖରେ ତାଙ୍କୁ ଅଧିକ ମାତ୍ରାରେ ସ୍ମରଣୀୟ କରାଇପାରିଛି । ଗୋପାଳକୃଷ୍ଣଙ୍କର ଜନ୍ମ ଏକ ବୈଷ୍ଣବ ପରିବାରରେ । ପରମ ପ୍ରେମମୟୀ ହ୍ଲାଦିନୀ ଶକ୍ତି ସ୍ୱରୂପିଣୀ ଶ୍ରୀରାଧା ଓ ପରମ ପ୍ରେମମୟ ରସରାଜ ଶ୍ରୀକୃଷ୍ଣ ପ୍ରତ୍ୟେକ ବୈଷ୍ଣବର ଆରାଧ୍ୟ ଅପ୍ରାକୃତ : ପ୍ରେମ ମୂର୍ତ୍ତି ଜୟ ରାଧାହରି । ତାଙ୍କ ମତରେ ସେ ଅବ୍ୟକ୍ତ ଲୀଳାକୁ ଅବତାର ଗ୍ରହଣ କରି ବ୍ୟକ୍ତ କରିଛନ୍ତି କେବଳ । ସୁତରାଂ ଗୋପାଳକୃଷ୍ଣ ଶ୍ରୀରାଧା-ଶ୍ରୀକୃଷ୍ଣଙ୍କର ପ୍ରେମାଖ୍ୟାନକୁ ଉପଜୀବ୍ୟ କରି କବିତା ଲେଖିବା ଆଦୌ ଅପ୍ରତ୍ୟାଶିତ ନୁହେଁ । ପଦାବଳୀ ସାହିତ୍ୟର ମୁଖ୍ୟ ଆଧାର ମଧ୍ୟ ରାଧାମାଧବ ଚିନ୍ତନ । କିନ୍ତୁ ଗୋପାଳକୃଷ୍ଣଙ୍କ କବିତାର ମହତ୍ତ୍ୱ ହେଉଛି ତାଙ୍କ ଶ୍ରୀରାଧା-ଶ୍ରୀକୃଷ୍ଣ ଦେବତାର ଦୃଷ୍ଟି ଓ ଦର୍ଶନରେ ଦୁର୍ବୋଧ ନୁହନ୍ତି, ବରଂ ସାଧାରଣ ମଣିଷର ତୃଷା ଓ ତ୍ରାସରେ ତିଳତଣ୍ଡୁଳିତ । କବିତ୍ୱ ଓ ପାଣ୍ଡିତ୍ୟର ପରାକାଷ୍ଠାରେ ଜଗନ୍ନାଥ, ବଳରାମ, ଦୀନକୃଷ୍ଣ,

ଉପେନ୍ଦ୍ର, ଅଭିମନ୍ୟୁ ଓ ଏପରିକି ବଳଦେବ ରଥ ମଧ୍ୟ ଗୋପାଳକୃଷ୍ଣଙ୍କ ଅପେକ୍ଷା ଗରୀୟାନ୍ । କିନ୍ତୁ ଆଖ୍ୟାନବସ୍ତୁର ସାବଲୀଳ ମାନବାୟିତ ରୂପାୟନ ଏବଂ କବିତାର ଅସାଧାରଣ ସାରଲ୍ୟ ମଣ୍ଡିତ ମାଧୁର୍ଯ୍ୟରେ ଗୋପାଳକୃଷ୍ଣ ତାଙ୍କ ପୂର୍ବସୂରୀମାନଙ୍କୁ ଅନାୟାସରେ ବଳି ଯାଇଛନ୍ତି ।

ଭାଷାର ସ୍ୱାଭାବିକତା ଓ କାବ୍ୟାନୁଭବର ନିବିଡ଼ ଆନ୍ତରିକତା ଯୋଗୁଁ ଗୋପାଳକୃଷ୍ଣଙ୍କ କବିତା ଅନ୍ୟ ବୈଷ୍ଣବଙ୍କ କବିତାଠାରୁ ଅଲଗା ବୋଲି ଚିହ୍ନି ହୋଇଯାଏ । ରସକଲ୍ଲୋଳ, ବୈଦେହୀଶ ବିଳାସ, କଳାକଉତୁକ, ବିଦଗ୍ଧ ଚିନ୍ତାମଣି ଓ କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ ଇତ୍ୟାଦି କାବ୍ୟାବଳୀର ଅନେକ ଛାନ୍ଦ କେବଳ ଭାଷାର ଆଡ଼ମ୍ବର ଯୋଗୁଁ ଅସ୍ୱାଭାବିକ ଭାବେ ଦୁଷ୍ପାପ୍ୟ ହୋଇଅଛି । ସେମାନଙ୍କର କେବଳ ସେହି ଛାନ୍ଦ ବା ଗୀତ ଜନପ୍ରିୟ ଯାହା ସରଳ, ସୁବୋଧ ଓ ଭାବଗର୍ଭକ । ଅପରପକ୍ଷରେ ଗୋପାଳକୃଷ୍ଣଙ୍କ କବିତା 'ଶରତକାଳୀନ ନଦୀ ଜଳପରି କ୍ଷୀଣ ହେଲେ ହେଁ ଅତ୍ୟନ୍ତ ନିର୍ମଳ ଓ ସୁପେୟ । ଟୀକା-ଟିପ୍ପଣୀ ରୂପକ ନିର୍ମଳା ଫଳ ଦରକାର ହେବନି, ଅଥଚ ଜଳର ସ୍ୱାଭାବିକ ମାଧୁରୀରେ ପିପାସୀର ତୃଷା ନିବୃତ ହେବ ।' (ମାୟାଧର ମାନସିଂହ - କବି ଓ କବିତା)

କବିତା କେବଳ ଦେହର କଥା କହେ ନାହିଁ, ଏହା ମଧ୍ୟ ମନର କଥା କହେ, ଆଉ କହେ ବି ଅନୁଭବର କଥା, କଳ୍ପନାର କଥା । ନିଜ ସ୍ନାୟୁ ଓ ଶିରାର ଜାଲରେ କେବେ ଥରେ ପଡ଼ି ନଥିବା କିମ୍ବା ନିଜ ଚେତନାର ଚୌହଦୀରେ କେବେ ଥରେ ଆସି ନଥିବା କଥାଗୁଡ଼ିକ ଯେତେ ଲୋଭନୀୟ ହୋଇଥାଆନ୍ତୁ ପଛକେ, ଅପ୍ରିୟ ହେବେ କିନ୍ତୁ ନିଶ୍ଚୟ । ସେଥିପାଇଁ 'ଅଭିମନ୍ୟୁ, ଦୀନକୃଷ୍ଣଙ୍କର ପ୍ରଣୟ ବର୍ଣ୍ଣନା ସ୍ଥାନେ ସ୍ଥାନେ ଏପରି ଅସ୍ୱାଭାବିକ ହୋଇଛି ଯେ, ତାହା ଓଡ଼ିଶାରେ, ବୃନ୍ଦାବନରେ ବା ଜଗତର କୌଣସି ସ୍ଥାନରେ ସତ୍ୟ ନୁହେଁ । x x x ଗୋପାଳକୃଷ୍ଣ ପ୍ରଧାନତଃ ଅନୁଭବୀ କବି । ସେ ନିଜେ ଯାହା ଦେଖିଛନ୍ତି, ନିଜେ ଯାହା ଅନୁଭବ କରିଛନ୍ତି, ତାହା ହିଁ ଲେଖିଛନ୍ତି । ତାଙ୍କର ରାଧା ମିତ୍ର-ପୂଜା କରି ଯାଏନା, ଗାଧୋଇବାକୁ ଯାଇ ପ୍ରେମିକ ଫାନ୍ଦରେ ପଡ଼େ । ସେ ଘରେ ବସି ପ୍ରିୟ ପାଇଁ ଫୁଲ ଗୁନ୍ଥେନା ବା କଜ୍ଜଳରେ ଚିତ୍ରକରି ଚୁମ୍ବେନା । ସେ ଭାତ ରାନ୍ଧୁ ରାନ୍ଧୁ ଆସନ୍ନ ଅଭିସାର ଭୟରେ କମ୍ପି ଉଠେ । ଏ ରାଧା ଜୀବନ୍ତ ରାଧା । ଏହା ବୃନ୍ଦାବନରେ, ଉତ୍କଳରେ ଓ ଜଗତର ସବୁ ଦେଶରେ ସତ୍ୟ ।' (ମାୟାଧର ମାନସିଂହ - କବି ଓ କବିତା) କେବଳ ଏଇଥିପାଇଁ ବିଷୟବସ୍ତୁ ନିର୍ବାଚନ ଓ ଭାଷା ପ୍ରୟୋଗ କ୍ଷେତ୍ରରେ ଗୋପାଳକୃଷ୍ଣ ଲୌକିକ ସ୍ତରରେ ରହିଥିଲେ ମଧ୍ୟ ତାଙ୍କ କବିତା ଉନ୍ନୀତ ହୋଇପାରିଛି ଅଲୌକିକ ସ୍ତରକୁ ।

ସାଧାରଣ ଦୃଷ୍ଟିରେ ତୁଚ୍ଛ ଓ ହେୟ ମନେ ହେଉଥିବା ଘଟଣାଗୁଡ଼ିକରେ କବିମାନେ ସଂଧାନ କରିଥାନ୍ତି ଦୁର୍ମୂଲ୍ୟ ଅନ୍ତରଙ୍ଗ ଅନୁଭବ । ଜୀବନ ପ୍ରବାହରେ ନିତି ପ୍ରତି ଘଟୁଥିବା ଘଟଣାମାନଙ୍କରେ ଯେଉଁ କବି ଅନୁଭବ କରିପାରେ ସାରସ୍ୱତ ପ୍ରତିଶ୍ରୁତି, ସେ ହିଁ ପାଠକର ହୃଦୟରେ ଏକ ଦୃଢ଼ ଆସନ ଦାବୀ କରିବସେ । ଅନ୍ୟ କଥାରେ କହିଲେ ଘଟଣା ବା ଦୃଶ୍ୟଟି ମାନବୀୟ ହେବା ସଂଗେସଂଗେ ତାହାର ପରିପ୍ରକାଶ ଯଦି ଲୌକିକ ଭାଷାରେ ଏକ ଅଲୌକିକ କଳା କଳ୍ପନା ସୃଷ୍ଟି କରି ପାରେ, ତେବେ ତାହା ହିଁ ହୁଏ ଉତ୍କୃଷ୍ଟ କବିତା । କାବ୍ୟ ବିଚାରର ଏ ମାନଦଣ୍ଡରେ ଗୋପାଳକୃଷ୍ଣଙ୍କ ପ୍ରତିଟି କବିତା ନିଜର ଉତ୍କର୍ଷ ପ୍ରତିପାଦନ କରିପାରିଛନ୍ତି ।

ପୁଅଟିଏ ମାଆ ପାଖରେ ଅଳି ଅଝଟ କରିବା ଅତି ସାଧାରଣ ଘଟଣା । ଜୀବ ସୃଷ୍ଟିର କେଉଁ ସ୍ମରଣାତୀତ କାଳରୁ ଏ ପ୍ରକ୍ରିୟା ପ୍ରଚଳିତ ତାହା କହିବା ସହଜ ନୁହେଁ । ଅପତ୍ୟ ସ୍ନେହର ଜାଲରେ ଛନ୍ଦି ହୋଇଛନ୍ତି କିବା ମଣିଷ କିବା ପଶୁ, ପକ୍ଷୀ ସମସ୍ତେ । ଏକାନ୍ନବର୍ତ୍ତୀ ଓଡ଼ିଆ ଘରର ବୋହୂମାନଙ୍କୁ ଗୃହକୃତ୍ୟ ସହିତ ସନ୍ତାନମାନଙ୍କର ଲାଳନପାଳନ ଦାୟିତ୍ୱ ଯୁଗପତ୍ ବହନ କରିବାକୁ ପଡ଼ିଥାଏ । ତେଣୁ ସେମାନେ ପିଲାମାନଙ୍କୁ ଖୁଆଇପିଆଇ ଶୁଆଇ ଦେବା ପରେ ଘରର ଅନ୍ୟାନ୍ୟ ଜଂଜାଳ ବୁଝିଥାନ୍ତି । ବେଳେବେଳେ ଅଧା ନିଦରୁ ଛୁଆ ଉଠିପଡ଼ି ମାଆକୁ ପୁଣି ବ୍ୟସ୍ତ କରାଏ । ଏହା କେଉଁ ବା ନୂଆ କଥା ? ଗୋପାଳକୃଷ୍ଣ ଏହି ସାଧାରଣ ଘଟଣାଟିକୁ କବିତା ସଂଗୀତର ଯୁଗଳ ଅନୁରାଗରେ ଏଭଳି ଉପସ୍ଥାପନ କରିଛନ୍ତି ଯେଉଁଠି ଘଟଣାର ପୌନଃ ପୁନିକତାଜନିତ କ୍ଳାନ୍ତି ନାହିଁ, ଅଛି କେବଳ ତା'ର କମନୀୟ କଳାତ୍ମକ ଅଭିବ୍ୟକ୍ତି । କୃଷ୍ଣଙ୍କର ଅସମୟ ନିଦ୍ରୋତ୍ଥାନ ଯଶୋଦାଙ୍କର ଅନ୍ୟାନ୍ୟ ଗୃହ କୃତ୍ୟ ପାଇଁ ବାଧକ ହୋଇଛି । ତେଣୁ ସେ କହିଛନ୍ତି -

'ଉଠିଲୁ ଏଡ଼େ ବେଗି କାହିଁକିରେ
ଦଧି ମନ୍ଥାଇ ଦେବୁ ନାହିଁକିରେ । ...'

ଏଠାରେ ଲକ୍ଷ୍ୟ କରାଯାଇପାରେ, ଯଶୋଦାଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଏ ପ୍ରକାର ବାକ୍ୟ ବ୍ୟବହାରରେ କୌଣସି ଉଚ୍ଚାଙ୍ଗ ସାହିତ୍ୟର କଳ୍ପନା ନାହିଁ, କିମ୍ବା ବୈଷ୍ଣବୀୟ ରସଶାସ୍ତ୍ରର କୌଣସି ଓଜନିଆ ତତ୍ତ୍ୱ ମଧ୍ୟ ଏଠାରେ ଥିବାଭଳି ମନେ ହେଉନାହିଁ । କେବଳ ଗୃହକର୍ମ ବିଧାନରେ ଗୋଟିଏ ମାଆର କରୁଣ ଅସହାୟତା ଏବଂ ପୁତ୍ର ପ୍ରତି ତା'ର ବାତ୍ସଲ୍ୟ ଅନୁଶାସନର ଆକ୍ଷେପଟି ସ୍ପଷ୍ଟ ଦିଶି ଯାଉଛି । ଅନୁଭବଟି ସାଧାରଣ ଓ ଭାଷା ଲୌକିକ ହେଲେ ସାହିତ୍ୟର ଆବେଦନ ସାର୍ବଜନୀନ ହେବା ସପକ୍ଷରେ ଏହାଠାରୁ ବଳି ଆଉ ଅଧିକ ସମୀଚୀନ ଉଦାହରଣ କ'ଣ ରଖାଯାଇପାରେ ? ଏହି ଦୃଶ୍ୟପଟ୍ଟରୁ ଯେଉଁ ପୁଅର ଛବି ଦେଖାଯାଉଛି ତାହା ଜଣେ ଅଳିଖୋର, ଅଝଟିଆ ଅମାନିଆ ବାଳକର ଯାହାକୁ ଯେତେ ବୁଝାଇଲେ ବି ସେ ବୁଝେନା । ମନା କରିବା ସତ୍ତ୍ୱେ ମନ୍ଥନ ଘଟରୁ ଲହୁଣୀ କାଢ଼ି ନିଏ, ମନା କଲେ ରୁଷିଯାଏ । ଏପରିକି ସେ ଖୁଆଦଣ୍ଡକୁ ଚାଲିବାକୁ ଦିଏ ନାହିଁ ସର ମେଞ୍ଚାଏ ନପାଇବା ପର୍ଯ୍ୟନ୍ତ । ତାକୁ ବୁଝାଇବାକୁ ଯାଇ ଯଶୋଦାଙ୍କର ସମୟ ସବୁ

ସରିଯାଏ, ଗୃହକାର୍ଯ୍ୟ ଅଧା ହୋଇ ପଡ଼ିରହେ । ସେ ବ୍ୟସ୍ତ ହୁଅନ୍ତି କିନ୍ତୁ ସେ ବ୍ୟସ୍ତତାରେ ବିରାଗ ନାହିଁ, ଅଛି କେବଳ ପ୍ରସ୍ତ ପ୍ରସ୍ତ ବହଳ ଅନୁରାଗ । ଓଡ଼ିଆ ଘରର ଏ ଶସ୍ତା ଓ ସାଧାରଣ ଦୃଶ୍ୟଟିକୁ ଆଜି ପର୍ଯ୍ୟନ୍ତ କେତେ କବି, ଭାବୁକ, ଦାର୍ଶନିକ ଦେଖି ନଥିବେ । କିନ୍ତୁ ଗୋପାଳକୃଷ୍ଣ ଏହାକୁ ଯେଉଁଭଳି ମହାର୍ଘ୍ୟ ଓ ମନୋହର କରିପାରିଛନ୍ତି, ତାହା ବାସ୍ତବରେ ଅତୁଳନୀୟ । ସେ ନିଜେ ଦେଖି ଅନ୍ୟମାନଙ୍କୁ ଯେଉଁ ଢଙ୍ଗରେ ଦେଖାଇଛନ୍ତି, ତା'ର ପଟ୍ଟାନ୍ତର ବିରଳ । ଯଶୋଦା କହୁଛନ୍ତି -

'ଗୃହକୃତ୍ୟ ପକାଇ ବସିଥିବି ଏକାଇ
 ନିଶି ଦିନ ତୋତେ କାଖେଇକି
ପଣନ୍ତରେ ବଦନ ପୋଛି ଦେଲେ ଚନ୍ଦନ
 ଗୋପାଳକୃଷ୍ଣ ଚିନ୍ତେ ଦୁହିଁକିରେ ।'

ଏଥିରେ ବୈଷ୍ଣବୀୟ ଚିନ୍ତାଧାରା ନାହିଁ, ନୁହେଁ । କିନ୍ତୁ ବୈଷ୍ଣବୀୟ ଦର୍ଶନ ଅପେକ୍ଷା ଯାହା ଅଗ୍ରାଧିକାର ପାଉଛି, ତାହା ହେଉଛି ଘଟଣାର ସାଧାରଣତ୍ୱ ଓ ପରିପ୍ରକାଶର ସ୍ୱଚ୍ଛନ୍ଦତା । କେବଳ ଏଇ ଯୋଗ୍ୟତା ଗୋପାଳକୃଷ୍ଣଙ୍କର ଏକକ ଓ ନିରଙ୍କୁଶ । କବିତା ରଚନାର ସବୁଠାରୁ ମୌଳିକ ଉପାଦାନ ଏହି ଲୌକିକ ଅନୁଭୂତିର ପକ୍ଷ ସମର୍ଥନ କରିବାକୁ ଯାଇ ମିଲ୍ ମଧ୍ୟ କହିଛନ୍ତି - 'Who so ever writes out truely any human feeling writes poetry.'

ଗୋପାଳକୃଷ୍ଣ ଓ ତାଙ୍କ ପଦ୍ୟାବଳୀ ସଂପର୍କରେ ଦ୍ୱିତୀୟ ମହତ୍ତ୍ୱପୂର୍ଣ୍ଣ ପ୍ରସଙ୍ଗଟି ହେଉଛି ତାଙ୍କ କବିତାର ସାଂଗୀତିକତା । ଲୌକିକ ଅନୁଭବକୁ ନେଇ ଗୋପାଳକୃଷ୍ଣ କବିତା ରଚନା କରିବା ପଛରେ ଯେଉଁ କାରଣ ବିଦ୍ୟମାନ, ଠିକ୍ ସେହି କାରଣରୁ ହିଁ ତାଙ୍କ କବିତାରେ ସାଂଗୀତକତା ଏକ ମୁଖ୍ୟ ଉପାଦାନ ହୋଇପାରିଛି । ସେ କବିତା ଲେଖିଛନ୍ତି କେବଳ କବି, ପଣ୍ଡିତ ଓ ବିଦ୍ୱାନ ମଣ୍ଡଳୀ ପାଇଁ ନୁହେଁ, ସେ ଲେଖିଛନ୍ତି ଅପାଠୁଆ, ମୂର୍ଖ, ଅଶିକ୍ଷିତ ଓ ଅପଣ୍ଡିତ ସାଧାରଣ ଜନତାଙ୍କ ପାଇଁ ମଧ୍ୟ । ତେଣୁ ସେଥିରେ ସାଧାରଣ ସ୍ତରର ଜୀବନାନୁଭୂତି ପ୍ରକାଶ ପାଇବା ଯେଉଁଭଳି ସ୍ୱାଭାବିକ, ସାଧାରଣ ଜନତାର ଚିତ୍ତୋଲ୍ଲାସକାରୀ, ହୃଦୟଦ୍ରାବକ ସଂଗୀତର ପରିବେଷଣ ମଧ୍ୟ ତତୋଧିକ ଯୁକ୍ତିଯୁକ୍ତ । କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଯଥାର୍ଥରେ କହିଛନ୍ତି - 'ଗୋପାଳକୃଷ୍ଣଙ୍କ ଲେଖାର ବାହାଦୂରୀ ବା ସମାଦର ଲାଭର କାରଣ ହେଉଛି ଯେ ସେ ନିତିଦିନିଆ ଚଳନ୍ତି ଭାବଧାରାର ଅନୁଭବୀ କବି ଏବଂ ମନକଥା ଲେଖନୀମୁନରେ ରଖି ଦେଇ ଯିବାଭଳି ଏକ ସମର୍ଥ ସ୍ୱର ସାହିତ୍ୟ ଶିଳ୍ପୀ । ରାଧାକୃଷ୍ଣଙ୍କ ମିଳନ ବର୍ଣ୍ଣନା ବେଳେ କବି ସତେ ଅବା ଆଖି ଆଗରେ ଦେଖିଥିବା ଘଟଣା ପରମ୍ପରାର ନିଖୁଣ ଚିତ୍ର ରଚନା କରିଯାଇଅଛନ୍ତି । ମୋର ତ ମନେହୁଏ ବହୁସ୍ଥଳରେ ଗୋପାଳକୃଷ୍ଣ ତାଙ୍କର ସଂଗୀତ ରଙ୍ଗମଞ୍ଚର ଭୂମିକାରେ ସ୍ୱୟଂ ବନକ ବୋଲି ଅଭିନୟକୁ ଜୀବନ୍ତ କରିଅଛନ୍ତି ।'

ଯଥାଯଥ ଗାୟନ ଓ ସୁଲଳିତ ପରିବେଷଣ ଢଙ୍ଗରେ ଗୋପାଳକୃଷ୍ଣଙ୍କ ପ୍ରତିଟି କବିତାର ଚରମ ସାର୍ଥକତା ନିହିତ । ବିଳମ୍ବିତ ସନ୍ଧ୍ୟାରେ ଓଡ଼ିଶୀ ବାଦ୍ୟୋପକରଣର ତାଳେ ତାଳେ 'ଉଠିଲୁ ଏଡ଼େ ବେଗି କାହିଁକିରେ ...' ଗୀତଟି ଶୁଣିଲେ କେବଳ ଜଣେ ବିଷ୍ଣୁ ଭକ୍ତର ହୃଦୟ ବାତ୍ସଲ୍ୟ ରସରେ ଆପ୍ଲୁତ ହୋଇଯାଏ ନାହିଁ, ରାତ୍ରିର ଘରକରଣା ବେଗି ବେଗି ସାରିବାକୁ ଚଞ୍ଚଳ ଥିବା ଗୃହିଣୀଟିର ହାତ ମଧ୍ୟ ଅଟକି ଯାଏ । 'କବିତାଠାରୁ ସଂଗୀତକୁ ଅଲଗା କରି ହେବ ନାହିଁ' - ଏହି ମତବାଦର ପକ୍ଷପାତୀ ଥିଲେ ଗୋପାଳକୃଷ୍ଣ । ଇଂରାଜୀ ସାହିତ୍ୟରେ ରୋମାଣ୍ଟିକ୍ ଯୁଗର କବିମାନେ ମଧ୍ୟ ଏହି ଆଭିମୁଖ୍ୟ ସପକ୍ଷରେ ଯାଇ କହିଥିଲେ -'Music is only Poetry.' ଗୋପାଳକୃଷ୍ଣଙ୍କ କବିତାର ସାଂଗୀତିକ ମାଧୁର୍ଯ୍ୟ ସେସମୟରେ ଅନେକ ମୂର୍ଖ ଅସାହିତ୍ୟ ପ୍ରାଣକୁ ସାହିତ୍ୟ ପ୍ରତି ଅନୁରକ୍ତ କରାଇପାରିଛି ବୋଲି ମନେହୁଏ । ଏହାର କାରଣ ହେଉଛି ତାଙ୍କ ପଦ୍ୟାବଳୀ ପରିବେଷଣ ସ୍ଥଳରେ ଅନେକ ଲୋକଙ୍କର ସମାଗମ ହୁଏ ଏବଂ ପାଠ ପଢ଼ି ନଥିବା ଲୋକଟି ଅନ୍ୟ ସମୟରେ ଶୁଣିଥିବା ଏହି ଗୀତମାନଙ୍କରୁ ପଦେ ଅଧେ ଗୁଣୁ ଗୁଣୁ କରି ଗାଇବାର ଉଦାହରଣ ଆଦୌ ବିରଳ ନୁହେଁ ।

ଏହାଛଡ଼ା କବିତାରେ ସଂଗୀତର ଅନ୍ୟ ଏକ ଆବଶ୍ୟକତା ମଧ୍ୟ ରହିଛି । ଗଦ୍ୟର ଆବେଦନ ହୁଏତ କେବେ କେବେ ପାଠକ ପାଖରେ ବ୍ୟର୍ଥ ହୋଇପାରେ । କିନ୍ତୁ କବିତାର ପଦ୍ୟମୟତା, ରାଗ ରାଗିଣୀ ଓ ଛନ୍ଦ ପ୍ରବାହର ଲଳିତ ଆକର୍ଷଣ ପ୍ରତ୍ୟେକ ପାଠକ ଓ ଶ୍ରୋତାକୁ କବିଙ୍କ ପ୍ରତି ସମ୍ବେଦନଶୀଳ କରାଏ । କବିତାର ଛନ୍ଦମୟ ସଂଗୀତ ଯୋଗୁଁ ଏହାର ପଠନ ଓ ଶ୍ରବଣରେ ପାଠକ ବା ଶ୍ରୋତା ଉଲ୍ଲସିତ-ଏକାଗ୍ରତା (Delighted attention) ପ୍ରାପ୍ତ ହୁଏ । ଗୋପାଳକୃଷ୍ଣ ପଦ୍ୟାବଳୀର ଯେକୌଣସି ଗୀତର ଶାସ୍ତ୍ରୀୟ ପରିବେଷଣ ଶୁଣିଲେ ଶ୍ରୋତାର ମନୋଯୋଗ କେବଳ ଜାଗ୍ରତ ହୁଏ ନାହିଁ, ସେ ମଧ୍ୟ ଆନନ୍ଦାମୃତ୍ତିରେ ପୂର୍ଣ୍ଣସ୍ନାନ କଲାଭଳି ଅନୁଭବ କରେ ।

ସହଜାତ ପ୍ରତିଭାକୁ ଉପଜୀବ୍ୟ କରି ଗଢ଼ି ଉଠିଥିଲା ଗୋପାଳକୃଷ୍ଣଙ୍କ କବିତାବଳୀର କଳାକୋଣାର୍କ । 'ସେଥିପାଇଁ ତାଙ୍କ କବିତାବଳୀରେ ତାତ୍ତ୍ୱିକ ଗଭୀରତା ଓ ପାଣ୍ଡିତ୍ୟର ଅଭିବ୍ୟକ୍ତି ଅପେକ୍ଷା ମନୁଷ୍ୟ ରକ୍ତର ବାସ୍ତବ ଉଷ୍ଣତା ଓ ଭାବପ୍ରବଣତାର ସ୍ପର୍ଶ ଅଧିକ । ରାଧାକୃଷ୍ଣ ତାଙ୍କ ରଚନାରେ କେବଳ ଦୁଇଟି ଆଧ୍ୟାତ୍ମିକ ପ୍ରତୀକ ମାତ୍ର ନୁହନ୍ତି, ଅନୁଭୂତିର ତୀବ୍ର ଆବେଗ ଓ ପ୍ରେମର ଅନନ୍ୟ ଦୃଷ୍ଟି ଆତ୍ମୋତ୍ସର୍ଗ ମଧ୍ୟରେ ସେମାନେ ହୋଇ ଉଠିଛନ୍ତି ମାନବିକ ପ୍ରେମ ମହିମାର ଦୈବତ ପ୍ରତିନିଧି ।' (ଚିନ୍ତାମଣି ବେହେରା - ବିଦଗ୍ଧ ପାଠକ, ପୃ.୨୯) ପ୍ରଣୟର ଚିରନ୍ତନ ଶଙ୍କା ଆଶା, ଦ୍ୱନ୍ଦ୍ୱ ଓ ଉତ୍କଣ୍ଠା ତାଙ୍କ ତୂଳୀରେ ଅତି ସରସ ଓ ଲଳିତ ଭଂଗୀରେ ଚିତ୍ରିତ । ପ୍ରଣୟ-ସଂଗୀତ ବ୍ୟତୀତ କବିଙ୍କର ବାତ୍ସଲ୍ୟ ରସାଶ୍ରୟୀ ଅନ୍ୟ କେତୋଟି ସଂଗୀତ ରହିଛି, ଯେଉଁଥିରେ କୃଷ୍ଣ ଓ ଯଶୋଦାଙ୍କୁ ଆଶ୍ରୟ କରି କବି ଏକ ଚିରନ୍ତନ ମାତୃପ୍ରାଣ ଏବଂ

ସର୍ବକାଳୀନ ଶିଶୁ ମନର ସ୍ୱଭାବ ସୁନ୍ଦର ଆଲେଖ୍ୟ ଅଙ୍କନ କରିବାକୁ ସମର୍ଥ ହୋଇଛନ୍ତି ।

ଗୋପାଳକୃଷ୍ଣଙ୍କ କବିତାରୁ ଲୋକ ଉପାଦାନ ଓ ସଂଗୀତର ସ୍ୱର ସନ୍ଧାନ କରିବା ପାଇଁ ବେଶୀ ଦୂର ଯିବାକୁ ପଡ଼େ ନାହିଁ । ତାଙ୍କର ଯେକୌଣସି କବିତାକୁ ଆଖି ପକାଇଲେ ଏ ଦୁଇ ସଂପଦ ସହଜରେ ଉପଲବ୍ଧି ହୋଇପାରିବ । 'ଶ୍ୟାମକୁ କୁହାର, ତା'ର ପ୍ରେମକୁ କୁହାର ମା' ...', 'ଅନୁସରିତ ପ୍ରଭୋକାଳଯାକ ଗଲା ସରିତ', 'କଦମ୍ୱବନେ ବଂଶୀ ବାଜିଲାରେ ...', 'ଶ୍ୟାମ ସୁନ୍ଦର ମୁରଲୀ ନିନାଦ ଜାତି ନେବ ମଣିଲି', 'କି ନାଦରେ ପ୍ରାଣ ସଂଗୀନି, ଶୁଭୁଛି କଦମ୍ବ ବନେ', 'କେଶର କୁଞ୍ଜ ଶେଯରେ', 'ପଥ ଛାଡ଼ି ଦେ ମୁଁ ଯିବି ଫୁଲ ତୋଳି', ମୋତେ ଲଗାନାରେ ବକ୍ର ବିଧୁଲଟ', 'ରାଧା ଗୋବିନ୍ଦ ଭଜରେ ମାନସ', 'ବ୍ରଜ ବିଧୁ ପରି ମୋତେ କେ ଦିଶୁ ନାହିଁ' ଇତ୍ୟାଦି କବିତାଗୁଡ଼ିକରେ ଗୋପାଳକୃଷ୍ଣ ପ୍ରତିଭାର ଦୁଇ ମହନୀୟ ଦିଗ, ଲୋକ ପରମ୍ପରା ଓ ସଂଗୀତ କଳା ଅତି ଅନାୟାସରେ ଲକ୍ଷ୍ୟ କରାଯାଇପାରେ ।

### ଏକ ଅନାଥ ଶିଶୁର ପୃଷ୍ଠପୋଷକତା :

### ଶ୍ୟାମ ସୁନ୍ଦର ରାଜଗୁରୁଙ୍କ 'ପ୍ରବନ୍ଧାବଳୀ'

ଆଜିବି ଓଡ଼ିଆ ସାହିତ୍ୟର ଅନ୍ୟାନ୍ୟ ବିଭାଗ ତୁଳନାରେ ପ୍ରବନ୍ଧ ବିଭାଗଟି ଯଥୋଚିତ ଶୁଶ୍ରୁଷା ଲାଭ କରିପାରି ନାହିଁ । ପତ୍ରପତ୍ରିକା ଓ ପୁସ୍ତକମାନଙ୍କରେ ଅନ୍ୟାନ୍ୟ ସାହିତ୍ୟିକ ବିଭାବର ବିପୁଳ ସମ୍ଭାର ଆଗରେ ପ୍ରବନ୍ଧ ବିଭାଗଟି ଅନାଥ ଶିଶୁ ଭଳି ଅବହେଳିତ ହୋଇ ପଡ଼ି ରହିଛି । ଏକବିଂଶ ଶତକର ଆଦ୍ୟପାଦରେ ଓଡ଼ିଆ ପ୍ରବନ୍ଧ ସାହିତ୍ୟର ସ୍ଥିତି ଯଦି ଏତାଦୃଶ, ତେବେ ଏବେଠାରୁ ପ୍ରାୟ ଶହେ ବର୍ଷ ପୂର୍ବେ ଅର୍ଥାତ୍ ବିଂଶ ଶତକର ଆଦ୍ୟ ଭାଗରେ ଏହାର କଳେବର ଅତ୍ୟନ୍ତ ଶୀର୍ଣ୍ଣ ଓ କୃଶ ଥିବା ଆଦୌ ଆଶ୍ଚର୍ଯ୍ୟଜନକ ନୁହେଁ ।

୧୯୧୭ ମସିହାରେ ଶ୍ରୀ ଶ୍ୟାମସୁନ୍ଦର ରାଜଗୁରୁ କର୍ତ୍ତୃକ ରଚିତ 'ପ୍ରବନ୍ଧାବଳୀ' ଏ କ୍ଷେତ୍ରରେ ଏକ ଦୁଃସାହସିକ ପଦକ୍ଷେପ । କାବ୍ୟ କବିତା ରଚନାର ପ୍ରଚଣ୍ଡ ଧାରାରେ ସେ ଭାସି ନଯାଇ ପ୍ରବନ୍ଧ ରଚନା କ୍ଷେତ୍ରରେ ନିଜ ମୌଳିକତାର ପରିଚୟ ପ୍ରଦାନ କରିଛନ୍ତି । ସାହିତ୍ୟ ସମାଲୋଚନାର ଏକାନ୍ତ ଅବହେଳିତ ଦିଗଟିକୁ ସେ ଆଦରି ନେଇଥିଲେ ପରମ ଆଗ୍ରହରେ । ଏ ପୁସ୍ତକର ମହତ୍ତ୍ୱ ସଂପର୍କରେ ଆଲୋଚକ ଗୌରୀକୁମାର ବ୍ରହ୍ମା ମତ ଦେଇ କହନ୍ତି - 'ପ୍ରବନ୍ଧାବଳୀ ଓଡ଼ିଆ - ଆଲୋଚନା - ସାହିତ୍ୟ - ଗଗନର ଏକ ଦୀପ୍ତିମନ୍ତ ଜ୍ୟୋତିଷ୍କ । ଓଡ଼ିଆ ଭାଷାର ଇତିହାସ, ଓଡ଼ିଆ ସାହିତ୍ୟର ଇତିହାସ ଓ ଓଡ଼ିଆ ଛନ୍ଦର ଇତିହାସ ବିଚାରରେ ଏହା ଏକ ଗୌରବୋଜ୍ଜ୍ୱଳ ଅବଦାନ । ସ୍ୱର୍ଗତ ଶ୍ୟାମସୁନ୍ଦରଙ୍କର ଗଭୀର ପାଣ୍ଡିତ୍ୟ ଓ ଯୁକ୍ତିପଟୁତାର ଅମ୍ଳାନ ସଙ୍କେତ ବହନ କରି ଏହି ପ୍ରବନ୍ଧଗୁଚ୍ଛ ଓଡ଼ିଆ ସାହିତ୍ୟିକ ସମାଜରେ ନିଜର ତୁଙ୍ଗ ଆସନ ପ୍ରତିଷ୍ଠିତ କରିପାରିଅଛି ।'

'ପ୍ରବନ୍ଧାବଳୀ'ରେ ସର୍ବମୋଟ ୨୨ ଗୋଟି ପ୍ରବନ୍ଧ ସ୍ଥାନିତ ହୋଇଛି । ଏହି ପ୍ରବନ୍ଧଗୁଡ଼ିକ ମଧ୍ୟରେ କେତେକ ଜୀବନୀ ମୂଳକ, ସାହିତ୍ୟିକ, ଭାଷାତାତ୍ତ୍ୱିକ, ସମାଲୋଚନାତ୍ମକ, ଐତିହାସିକ ହୋଇଥିବାବେଳେ ଆଉ କେତେକ ଓଡ଼ିଆ ବ୍ୟାକରଣକୁ ଉପଜୀବ୍ୟ କରିଛି । ଏହାଛଡ଼ା ସେ ଇଂରାଜୀରେ ମଧ୍ୟ ଏକ ଦୀର୍ଘ ସମାଲୋଚନାତ୍ମକ ପ୍ରବନ୍ଧ ରଚନା କରି ତାଙ୍କ ପ୍ରାବନ୍ଧିକ ଖ୍ୟାତିର ମର୍ଯ୍ୟାଦା ବର୍ଦ୍ଧନ କରିଛନ୍ତି । ଏହି ପୁସ୍ତିକାଟିର ନାମ 'Feasts and fasts of the Oriyas' (ଓଡ଼ିଆମାନଙ୍କର ବ୍ରତୋପବାସ) । ପ୍ରବନ୍ଧାବଳୀରେ ସ୍ଥାନ ପାଇଥିବା ପ୍ରଥମ ପ୍ରବନ୍ଧଟି ହେଉଛି 'ଓଡ଼ିଆ ଛନ୍ଦ' । ଓଡ଼ିଆ ଛନ୍ଦର ଜ୍ଞାନ ବୋଧ ଓ ଆକର୍ଷଣ ଯେତେବେଳେ ସମଗ୍ର ଓଡ଼ିଆ ସାହିତ୍ୟରେ ଅସ୍ପଷ୍ଟ ଥିଲା, ସେତେବେଳେ ଶ୍ୟାମସୁନ୍ଦର ଏହା ଉପରେ ଏକ ତାତ୍ତ୍ୱିକ ଓ ତଥ୍ୟଭିତ୍ତିକ ପ୍ରବନ୍ଧ ରଚନା କରି ଓଡ଼ିଆ ଛନ୍ଦକୁ ଏକ କୌଳିନ୍ୟ ସମଭିବ୍ୟାହାରରେ ଉପସ୍ଥାପିତ କରିପାରିଛନ୍ତି । ଏହି ପ୍ରବନ୍ଧଟି ଏଭଳି ଉଚ୍ଚକୋଟୀର ହୋଇଥିଲା ଯେ ଡକ୍ଟର ରାମବାହାଲ ତେଓ୍ୱାରୀ ବଂଗଳାରେ ଶ୍ୟାମସୁନ୍ଦର ରାଜଗୁରୁଙ୍କ ଛନ୍ଦବିଚାରକୁ ଅବଲମ୍ବନ କରି ଏକ ସମାଲୋଚନା ଲେଖିଛନ୍ତି । ଶ୍ୟାମସୁନ୍ଦର ରାଜଗୁରୁଙ୍କ ଅନ୍ୟାନ୍ୟ ପ୍ରବନ୍ଧଗୁଡ଼ିକ ମଧ୍ୟରେ ଶୁଦ୍ରମୁନି ଶାରଳା ଦାସ, ବଳରାମ ଦାସ, ଦୀନକୃଷ୍ଣ ଦାସ, ଦ୍ୱାରକା ଦାସ, ଧନଞ୍ଜୟ ଭଂଜ, ହଳଧର ଦାସ, ଗୋପାଳ କବି, କୃଷ୍ଣ ସିଂହ, ଦାଶରଥି ଦାସ ଓ କୃପାସିନ୍ଧୁ ଦାସ, କବି ହରିକୃଷ୍ଣ, ରାମ ଦାସ, ନିଶଙ୍କରାୟ ରାଣୀ, କାହ୍ନୁ ଦାଶ ଓଡ଼ିଆ ବିଭକ୍ତି, ଓଡ଼ିଆ ସର୍ବନାମ, ଓଡ଼ିଆ ଅବ୍ୟୟ, ଧ୍ରୁବ ନାଟକ ସମାଲୋଚନା ପ୍ରତିବାଦ ପତ୍ର, ଉତ୍ତର, ପ୍ରତିବାଦ ପତ୍ର (୨) ଏବଂ 'ଓଡ଼ିଆ ଭାଷାର ଆଦର୍ଶ' ଇତ୍ୟାଦି ଓଡ଼ିଆ ପ୍ରବନ୍ଧ ସାହିତ୍ୟର ରୁଗ୍ଣ କଳେବରକୁ ଅନେକାଂଶରେ ବପୁଷ୍ମାନ୍ କରିପାରିଛି ।

ବାସ୍ତବ ଜୀବନରେ ଶ୍ୟାମସୁନ୍ଦର ଥିଲେ ନିଃସନ୍ତାନ, ଠିକ୍ ଯେପରି ଥିଲେ ଗୋପୀନାଥ ନନ୍ଦଶର୍ମା । ତେଣୁ ରାଜଗୁରୁଙ୍କୁ ଥଟ୍ଟା କରି ନନ୍ଦେ କହୁଥିଲେ, 'ଆମେ ଦିହେଁ ଅପୁତ୍ରିକ । କିନ୍ତୁ ମୁଁ ଦୁଇଟି ପୁତ୍ରର ପିତା, ଗୋଟିଏ ମୋର 'ଶବ୍ଦ ତତ୍ତ୍ୱବୋଧ ଅଭିଧାନ' ଅନ୍ୟଟି 'ଭାଷାତତ୍ତ୍ୱ' । ଏପରି ପରିହାସ ମାଧ୍ୟମରେ ସେ ବୋଧହୁଏ ତାଙ୍କ ଜ୍ୟେଷ୍ଠଭ୍ରାତାତୁଲ୍ୟ ଶ୍ୟାମସୁନ୍ଦର ରାଜଗୁରୁଙ୍କୁ ଚେତାଇ ଦେଉଥିଲେ ଯେ ସେ ଯେପରି ବିରାଟ ଗ୍ରନ୍ଥ ରଚନା କରନ୍ତି । ଓଡ଼ିଆ ସାହିତ୍ୟର ଅନ୍ୟାନ୍ୟ ବିଭାଗ ତୁଳନାରେ ସବୁଠାରୁ ଉପେକ୍ଷିତ ଓ ଅବହେଳିତ 'ପ୍ରବନ୍ଧ ଓ ସମାଲୋଚନା ସାହିତ୍ୟ'କୁ ଶ୍ରୀ ରାଜଗୁରୁ ସ୍ୱତଃ ପ୍ରବୃତ୍ତ ହୋଇ ଆଦରି ନେଇଛନ୍ତି ।

ଏକ ଅନାଥ ଶିଶୁକୁ ଅକୁଣ୍ଠିତ ପୃଷ୍ଠପୋଷକତା ଯୋଗାଇ ଦେଇ ଜଣେ ଅପୁତ୍ରିକ ଯେପରି ତା'ର ଆକାଂକ୍ଷିତ ପିତୃତ୍ୱ ଆସ୍ୱାଦନ କରିପାରେ ଠିକ୍ ସେହିପରି ଶ୍ୟାମସୁନ୍ଦର ରାଜଗୁରୁ ଓଡ଼ିଆ ପ୍ରବନ୍ଧ ସାହିତ୍ୟକୁ ନିଜର ନିଭୃତ ଆନ୍ତରିକତା ପ୍ରଦର୍ଶନ କରି ନିଜ ନିଃସନ୍ତାନ ଜୀବନର

ଶୂନ୍ୟତାବୋଧ ଓ ଗ୍ଲାନିକୁ ସହଜରେ ଭୁଲି ଯାଇଥିଲେ । ଏଭଳି ସାହିତ୍ୟ-ପ୍ରତିଭା ନିକଟରେ ଯେକୌଣସି ସହୃଦୟ ପାଠକ ଓ ନିଷ୍ଠାପର ସମାଲୋଚକ ଆପେ ଆପେ ସପ୍ରଣତ ଶ୍ରଦ୍ଧାର୍ଘ୍ୟ ନିବେଦନ କରି ବସିବା ନିହାତି ସ୍ୱାଭାବିକ୍ ।

**ଏକଇ ବୃକ୍ଷେ ପକ୍ଷୀ ଦୁଇ, ବସନ୍ତି ପ୍ରିୟ ଭାବ ବହି :**

**ଶବ୍ଦ ତତ୍ତ୍ୱବୋଧ ଅଭିଧାନରେ ସଂଗ୍ରହ ଓ ପ୍ରୟୋଗ**

ପଣ୍ଡିତ ଗୋପୀନାଥ ନନ୍ଦଶର୍ମା (୧୮୬୯-୧୯୨୪) ଥିଲେ ଏକାଧାରରେ ଜଣେ ସାହିତ୍ୟିକ, ସମାଲୋଚକ ଓ ଭାଷାବିଜ୍ଞାନୀ । ପାରଳାଖେମୁଣ୍ଡିର ଏ ପୂଜ୍ୟ ପ୍ରତିଭା ମଧ୍ୟ ଆଉ ଏକ ସିଦ୍ଧିର ଅଧିକାରୀ । ସେ ଓଡ଼ିଆ ଭାଷାରେ ୧୯୧୬ ମସିହାରେ 'ଶବ୍ଦ ତତ୍ତ୍ୱବୋଧ' ନାମରେ ଯେଉଁ ଅଭିଧାନ ପ୍ରଣୟନ କରିଯାଇଛନ୍ତି, ତାହା ଆଜି ପର୍ଯ୍ୟନ୍ତ ତାହାର ନମୁନା ହୋଇ ରହିଯାଇଛି । ଏଠାରେ ସ୍ମରଣଯୋଗ୍ୟ ଯେ ଶ୍ରୀ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ସାଧୁ ଉଦ୍ୟମରେ ୧୯୩୧ ମସିହାଠାରୁ ୧୯୪୦ ମଧ୍ୟରେ ସଂକଳିତ ହୋଇଥିବା ପୂର୍ଣ୍ଣଚନ୍ଦ୍ର (ଓଡ଼ିଆ) 'ଭାଷାକୋଷ'ର ପ୍ରଥମ ଖଣ୍ଡରେ କେବଳ ଜଣେ ମାତ୍ର ବ୍ୟକ୍ତିଙ୍କୁ ସେ କୃତଜ୍ଞତା ଜଣାଇଛନ୍ତି, ସେ ହେଉଛନ୍ତି ଶବ୍ଦ ତତ୍ତ୍ୱବୋଧ ଅଭିଧାନ ପ୍ରଣେତା ଗୋପୀନାଥ ନନ୍ଦଶର୍ମା ।

ପୂର୍ଣ୍ଣ ଚନ୍ଦ୍ର ଭାଷାକୋଷର ପ୍ରଥମ ଖଣ୍ଡ ଅବତରଣିକାରେ ଭାଷାକୋଷ ସଂକଳକ ତାଙ୍କ ଅଭିଧାନର ଇତିହାସ ଓ ବିଶେଷତ୍ୱ ସଂପର୍କରେ କହିଛନ୍ତି - 'ପାରଳାର ସ୍ୱର୍ଗୀୟ ପଣ୍ଡିତ ଗୋପୀନାଥ ନନ୍ଦ ୧୯୧୬ ସାଲରେ ଓଡ଼ିଆ 'ଶବ୍ଦ ତତ୍ତ୍ୱବୋଧ' ନାମରେ ଯେଉଁ ଅଭିଧାନ ଖଣ୍ଡି ପ୍ରକାଶ କରିଥିଲେ, ତହିଁରେ ଅନ୍ୟପ୍ରକାର ଅନେକ ଦୋଷ ରହିଯାଇଥିବାରୁ ପରବର୍ତ୍ତୀ କାଳରେ ଓଡ଼ିଶାର ସାହିତ୍ୟସେବୀମାନେ ତାହାକୁ ଭିନ୍ନ ଦୃଷ୍ଟିରେ ଦେଖିଲେ ।' ପ୍ରହରାଜ ମହୋଦୟ ତାଙ୍କ ଭାଷାକୋଷର ବିଶାଳ ସଂରଚନା ପାଇଁ ଶବ୍ଦ ତତ୍ତ୍ୱବୋଧକୁ ଏକ ପ୍ରାମାଣିକ ଗ୍ରନ୍ଥ ରୂପେ ଗ୍ରହଣ କରିଛନ୍ତି, ଏହା ଜଣେ ଯୋଗ୍ୟ ପ୍ରତିଭାର ଯଥାଯୋଗ୍ୟ ସମ୍ମାନାର୍ଘ୍ୟ ବୋଲି କୁହାଯାଇପାରେ ।

ଅଭିଧାନ ପ୍ରଣୟନ ଏକ ଦୁରୂହ ବ୍ୟାପାର । ଏଥିପାଇଁ ତିନିଗୋଟି ପ୍ରଧାନ ବିଷୟ ଉପରେ ଦୃଷ୍ଟିଦେବା ନିହାତି ବିଧେୟ । (କ) ଶବ୍ଦ ସଂଗ୍ରହ, (ଖ) ଶବ୍ଦ ନିର୍ବାଚନ ଓ (ଗ) ଶବ୍ଦ ତାତ୍ପର୍ଯ୍ୟ ନିର୍ଣ୍ଣୟ । ଏହି କାରଣରୁ ଜଣେ ଅଭିଧାନ ପ୍ରଣେତା ନିହାତି ପକ୍ଷେ ଜଣେ ଭାଷାତତ୍ତ୍ୱବିଦ୍ ହେବା ଏକ ମୌଳିକ ଆବଶ୍ୟକତା । ଗୋଟିଏ ଭାଷାର ଉତ୍ପତ୍ତି ଓ କ୍ରମବିକାଶ ତାହାର ସଂରଚନାର ବିବିଧ ସ୍ତର (ଧ୍ୱନିତାତ୍ତ୍ୱିକ, ବ୍ୟାକରଣିକ, ଅର୍ଥତାତ୍ତ୍ୱିକ) ଓ ବିବିଧ ସ୍ଥିତି (ସମକାଳିକ, କାଳକ୍ରମିକ, ଆଞ୍ଚଳିକ, ତୁଳନାତ୍ମକ ଇତ୍ୟାଦି) ସମ୍ବନ୍ଧରେ ପର୍ଯ୍ୟାପ୍ତ ଧାରଣା ନଥିଲେ ଅଭିଧାନଟିଏ ତ୍ରୁଟିହୀନ ଭାବରେ ସଂକଳିତ ହୋଇପାରିବ ନାହିଁ । ଶବ୍ଦ ନିର୍ବାଚନକୁ ଭିନ୍ନ ଭିନ୍ନ ଦୃଷ୍ଟିରୁ ସୀମିତ କରାଯାଇପାରେ, କିନ୍ତୁ ଶବ୍ଦ ସଂଗ୍ରହ କ୍ଷେତ୍ରରେ ସଂପୂର୍ଣ୍ଣ ମୁକ୍ତ ମନୋଭାବ କାମ୍ୟ । ପ୍ରଚଳିତ, ଅବଲୁପ୍ତ, ସାହିତ୍ୟିକ, କଥିତ, ଔପଭାଷିକ, ଆଞ୍ଚଳିକ ଇତ୍ୟାଦି ସମସ୍ତ ଧରଣର ଶବ୍ଦ ଅଭିଧାନ ସଂକଳନ ପାଇଁ ଆବଶ୍ୟକ । ମୂଳ ଶବ୍ଦ ବ୍ୟତିରେକ ଶବ୍ଦ ନିଷ୍ପନ୍ନ ପାଇଁ ବ୍ୟବହାର ହେଉଥିବା ପ୍ରତ୍ୟୟ ସମୂହ ମଧ୍ୟ ସ୍ୱତନ୍ତ୍ର ଭାବେ ଚିହ୍ନିତ ଓ ନିର୍ଦ୍ଦେଶିତ ହେବା ଉଚିତ । ପଣ୍ଡିତ ନନ୍ଦଙ୍କର ଏ ସମସ୍ତ ବିଷୟରେ ଗଭୀର ଅବଗାହନ ଥିଲା, ତେଣୁ ତାଙ୍କ ଅଭିଧାନରେ ସେ ସାଧ୍ୟମତେ ବିଭିନ୍ନ ସ୍ତରରୁ ଶବ୍ଦ ସଂଗ୍ରହ କରି ନିଜ ମୌଳିକ ପ୍ରତିଭାର ପରିଚୟ ପ୍ରଦାନ କରିଛନ୍ତି ।

ଶବ୍ଦ ସଂଗ୍ରହ ଓ ନିର୍ବାଚନ ପରେ ଅଭିଧାନ ପ୍ରଣୟରେ ଆଉ ଏକ ବିଶିଷ୍ଟ ଆବଶ୍ୟକତା ହେଉଛି ଶବ୍ଦ ତାତ୍ପର୍ଯ୍ୟ-ନିରୂପଣ । ଅଭିଧାନରେ କୌଣସି ଶବ୍ଦର ସ୍ୱରୂପ ଓ ଅର୍ଥ ନିର୍ଣ୍ଣୟ କରିସାରିଲାପରେ ଶବ୍ଦ ତାତ୍ପର୍ଯ୍ୟ ଓ ପ୍ରୟୋଗ ନିର୍ଦ୍ଦେଶିତ ହୋଇଥିଲେ ତାହା ବ୍ୟବହାରକାରୀକୁ ଅନେକ ସହାୟତା ପ୍ରଦାନ କରିଥାଏ । ବ୍ୟବହାରକାରୀ (User) ଶବ୍ଦଟିର ପ୍ରୟୋଗ ଦେଖିବାମାତ୍ରେ ତା'ର ତାତ୍ପର୍ଯ୍ୟ ବୁଝିଯାଏ । ଅବଶ୍ୟ ଗୋଟିଏ ଶବ୍ଦ ଭିନ୍ନ ଭିନ୍ନ ପ୍ରସଙ୍ଗରେ ଭିନ୍ନ ଭିନ୍ନ ଅର୍ଥ ପ୍ରକାଶ କରିଥାଏ । ଏ କ୍ଷେତ୍ରରେ ପର୍ଯ୍ୟାପ୍ତ ପ୍ରୟୋଗର ଉଦାହରଣ ସଂଗ୍ରହ କରି ଅଭିଧାନରେ ସନ୍ନିବେଶିତ କରାଯିବା ଆବଶ୍ୟକ । କୌଣସି ଶବ୍ଦର ଅଲଗା ଅଲଗା ଅର୍ଥ ଥାଇ ଯଦି କେବଳ ଗୋଟିଏ ଅର୍ଥର ପ୍ରୟୋଗ ପ୍ରଦର୍ଶିତ ହୁଏ, ତେବେ ତାହା ସଂକଳୟିତାଙ୍କର ସଂକୀର୍ଣ୍ଣ ମନ ଓ କ୍ଷୁଦ୍ର ଅଧ୍ୟୟନର ପରିଚାୟକ ହୋଇଥାଏ । ଗୋପୀନାଥ ନନ୍ଦଙ୍କର ଶବ୍ଦ ତତ୍ତ୍ୱବୋଧ ଅଭିଧାନର ଅନୁଧ୍ୟାନରୁ ଜଣାଯାଏ ଏହା ସତେ ଯେମିତି ଶବ୍ଦମାନଙ୍କର ସଂଗ୍ରହ ଓ ପ୍ରୟୋଗର ଏକକ କର୍ମଶାଳା (A unitary workshop of collection and application of words) ହୋଇପାରିଛି ।

ଦ୍ରଷ୍ଟବ୍ୟ :

ପଣ୍ଡ, ବିଂ (ପଣ୍ଡ୍ = ଗମନ କରିବା - ଅ, ଅଥବା ପଣ୍ - ଡ)

ନିଷ୍ଫଳ ।

ଯଥା : 'ଏ ଯଶ ତୁମର ଖ୍ୟାତ ଦୁନିଆରେ
ପଣ୍ଡ ହେବ ସିନା ଯମ ଦରବାରେ ।'
(ଦରବାର- ରାଧାନାଥ)

ବି, ଗର୍ବ

ଯଥା : 'ଯୁଧିଷ୍ଠି ଠାକୁରଙ୍କର ଲାଗି ଏତେ ଦଣ୍ଡ
ନୋହିଲେ କୌରବଙ୍କର ରହନ୍ତା କି ପଣ୍ଡ ।'
(ନୃ.ପୁ.ସ.ତ)

ବିଶେଷ ଭାବେ 'ପଣ୍ଡ'ର ଦ୍ୱିତୀୟ ଅର୍ଥଟି ଏବେ ଅପ୍ରଚଳିତ ହେଲେ ହେଁ ପ୍ରାଚୀନ ସାହିତ୍ୟରେ ଏହାର ପ୍ରୟୋଗ ଥିବାରୁ ଗୋପୀନାଥ ଏହାକୁ ଉଦ୍ଧାର କରିଛନ୍ତି ।

ଦେଶ, କାଳ ଓ ପରିସ୍ଥିତି ଭେଦରେ ଅର୍ଥର ପରିବର୍ତ୍ତନ ମଧ୍ୟ ଘଟିଥାଏ । ଭାଷା ଏକ ଜୀବନ୍ତ ଓ ଚଳମାନ ପ୍ରକ୍ରିୟା ହୋଇଥିବାରୁ ଏପରି ଘଟେ । ସୁତରାଂ ଜଣେ ସଂକଳକ ଗୋଟିଏ ଶବ୍ଦର ସମସ୍ତ ସାମ୍ଭାବ୍ୟ ଅର୍ଥ ଓ ପରିବର୍ତ୍ତିତ ଅର୍ଥର ପ୍ରୟୋଗ ଦର୍ଶାଇବା ଅନେକ ସମୟରେ ସମ୍ଭବପର ହୋଇନଥାଏ । କେବଳ ଏଇଥିପାଇଁ ପଣ୍ଡିତ ନନ୍ଦ କେତେକ ସ୍ଥଳରେ ସଂଗୃହୀତ ଶବ୍ଦମାନଙ୍କର ଅର୍ଥର ସମସ୍ତ ପ୍ରୟୋଗ ଦର୍ଶାଇ ପାରିନାହାନ୍ତି ଏବଂ ଏଥିପାଇଁ ତାଙ୍କୁ ମଧ୍ୟ କିଛି ମାତ୍ରାରେ ନିନ୍ଦା ସହିବାକୁ ପଡ଼ିଥିଲା ବୋଲି ଶୁଣିବାକୁ ମିଳେ । ଅବଶ୍ୟ ଏଥିରେ ହତୋତ୍ସାହ ହେବାର କିଛି ନାହିଁ । କାରଣ ଏହାର ବହୁବର୍ଷ ପରେ ବହୁ ବିଜ୍ଞଜନଙ୍କ ସହାୟତାରେ ସଂକଳିତ ପୂର୍ଣ୍ଣଚନ୍ଦ୍ର ଓଡ଼ିଆ ଭାଷାକୋଷ ମଧ୍ୟ ସମାଲୋଚନାର ଶରବ୍ୟ ହୋଇଥିଲା । ତେବେ ଗୋପୀନାଥ ନନ୍ଦଶର୍ମାଙ୍କ ଏକକ ଉଦ୍ୟମରେ ପ୍ରଣୀତ ଶବ୍ଦ ତତ୍ତ୍ୱବୋଧ ଅଭିଧାନ ଓଡ଼ିଆ ଶବ୍ଦମାନଙ୍କର ସଂଗ୍ରହ ଓ ତା'ର ପ୍ରୟୋଗ ଦର୍ଶାଇବା କ୍ଷେତ୍ରରେ ଯେଉଁଭଳି ଅନନ୍ୟ ସ୍ୱାତନ୍ତ୍ର୍ୟ ବହନ କରିପାରିଛି, ସେଥିପାଇଁ ସେ ସମସ୍ତଙ୍କର ପ୍ରଶଂସାର୍ହ ।

## ବିଶ୍ୱହିତେ ହିନ୍ଦୁ ପ୍ରତି ରକ୍ତବିନ୍ଦୁ :

## 'ମୋ ଜୀବନ ସଂଗ୍ରାମ'ରେ ସ୍ୱଦେଶ ଚିନ୍ତା

ଅପ୍ରିୟ ହେଲେ ବି ସତ୍ୟ ଯେ ଜୀବନୀ ଓ ଆତ୍ମଜୀବନୀ ଭଳି ଅମ୍ଳାନ ଓ ଦୁର୍ମୂଲ୍ୟ ସାହିତ୍ୟିକ ସଂପଦଗୁଡ଼ିକ ଓଡ଼ିଆ ସାହିତ୍ୟରେ ଏଯାବତ୍ ପାଠକମାନଙ୍କ ପାଖରୁ ଆକାଂକ୍ଷିତ ଆଶ୍ୱାସନା ହାସଲ କରିପାରି ନାହାନ୍ତି । ଓଡ଼ିଆ ସାହିତ୍ୟର 'ବିପୁଳା ଚ ପୃଥ୍ୱୀ'ରେ ଏମାନଙ୍କର ଭାଗ୍ୟ ବିଡ଼ମ୍ବିତ ହୋଇ ପଡ଼ି ରହିଛି । କିନ୍ତୁ ଇଂରାଜୀ, ଜର୍ମାନୀ ଓ ଫରାସୀ ସାହିତ୍ୟରେ 'ଜୀବନୀ ସାହିତ୍ୟ' ଓ ଆତ୍ମଜୀବନୀ ସାହିତ୍ୟର ଏକ ବିରାଟ ଶୋଭାଯାତ୍ରା ଦେଖିବାକୁ ମିଳେ ।' ପ୍ରକୃତ ସାହିତ୍ୟ ରସରେ ସମୃଦ୍ଧ ଜୀବନ ଚରିତ ବା ଆତ୍ମଚରିତ ମନୁଷ୍ୟ ମନ ଗଠନ ଦିଗରେ ସବିଶେଷ ସହାୟକ, ଏହାଦ୍ୱାରା କେବଳ ଯେ ସାହିତ୍ୟର ପରିପୁଷ୍ଟି ସାଧିତ ହୁଏ, ତାହା ନୁହେଁ, ସମାଜ-ଚେତନାର ମଧ୍ୟ ପରିପୁଷ୍ଟି ସଂସାଧିତ ହୋଇଥାଏ । କିନ୍ତୁ ଦୁଃଖର ବିଷୟ ଆମ ଦେଶରେ ଆଜି ପର୍ଯ୍ୟନ୍ତ ଏ ବିଷୟରେ ଅନେକଙ୍କ ମନରେ ସଠିକ୍ ଧାରଣା ଗଢ଼ି ଉଠିନି । ଜୀବନୀ ସାହିତ୍ୟର ପ୍ରକୃତ ତାତ୍ପର୍ଯ୍ୟ ଖୁବ୍ କମ୍ ପାଠକ ହିଁ ହୃଦୟଙ୍ଗମ କରିଥାନ୍ତି । ମହତ୍ ସାହିତ୍ୟ, ଯାହାକୁ ଆମେ ବହୁ ସୃଜନଧର୍ମୀ ସାହିତ୍ୟ ବା (Ceative Literature) ମାନବ ଜୀବନର ହିଁ ଅଂଶବିଶେଷ । ଏଥିରେ ପ୍ରତିଫଳିତ ଶାଶ୍ୱତ କାଳର ଅନୁଭୂତି ଓ ଚିନ୍ତା ଯୁଗ ଯୁଗ ଧରି ମନୁଷ୍ୟ ମନକୁ ନବ ନବ ସୃଷ୍ଟି ପଥରେ ପ୍ରତ୍ୟକ୍ଷ ପ୍ରେରଣା ପ୍ରଦାନ କରିଥାଏ । ତାକୁ ହିଁ ଆମେ ସାର୍ଥକ ଆତ୍ମଜୀବନୀ ବା ଜୀବନ ଚରିତ ଯାହା ମହତ୍ ସାହିତ୍ୟର ଗୋଟିଏ, ଅପରିହାର୍ଯ୍ୟ ଅଂଶ ଭାବରେ ଆମ ନିକଟରେ ଉପସ୍ଥିତ ହୋଇ ଆମ ଚିନ୍ତାକୁ କରେ ଉଦ୍ଦୀପ୍ତ ଏବଂ ଚିତ୍ତକୁ କରେ ସରସ ।' (ଚିନ୍ତାମଣି ବେହେରା - ବିଦଗ୍ଧ ପାଠକ, ପୃ.୯୧) ଶ୍ରୀ ବେହେରାଙ୍କ ଏହି ସୁଚିନ୍ତିତ ମନ୍ତବ୍ୟ ଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ ଆତ୍ମଜୀବନୀ 'ମୋ ଜୀବନ ସଂଗ୍ରାମ' ଆଧାରରେ ବିଚାର କଲେ ଅକ୍ଷରେ ଅକ୍ଷରେ ସତ୍ୟ ବୋଲି ପ୍ରତିଭାତ ହୁଏ ।

୧୯୯୪ ମସିହାରେ ପ୍ରକାଶିତ 'ମୋ ଜୀବନ ସଂଗ୍ରାମ' ବାସ୍ତବରେ ଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ ନିରୁତା ବୟକ୍ତିକ ଜୀବନର ପ୍ରତିଲିପି ନୁହେଁ, ବରଂ ଏହା ୧୯୨୯ଠାରୁ ୧୯୪୭ ପର୍ଯ୍ୟନ୍ତ ପରାଧୀନ ଓଡ଼ିଶାର (କେତେକାଂଶରେ ଭାରତର) ସାମାଜିକ - ରାଜନୀତିକ - ଅନ୍ଧାରୀ ଆକାଶର ଆଲୋକିତ ଇତିବୃତ୍ତ । 'ମୋ ଜୀବନ ସଂଗ୍ରାମ' ପାଠ କଲେ କେବଳ ଯେ ସତ୍ୟନାରାୟଣ ରାଜଗୁରୁଙ୍କୁ ଜାଣି ହେବ ତା' ନୁହେଁ, ବରଂ ସେ ସମୟର ଓଡ଼ିଶାର ଅନେକ ଅଜ୍ଞାତ ଅଧ୍ୟାୟକୁ ମଧ୍ୟ ପ୍ରାଞ୍ଜଳ ଭାବେ ବୁଝି ହେବ । ଇଂରାଜୀ ସାହିତ୍ୟର ଜଣେ ବିଶିଷ୍ଟ ସମାଲୋଚକଙ୍କ ମତରେ - 'Auto biography frequently reflects national character and in so far as this is true, it can supply a rich source of materials for the understanding of diverse people.' ଏହି ମନ୍ତବ୍ୟଟିର ଯୁକ୍ତି ଯୁକ୍ତତା ବାରମ୍ବାର ପରୀକ୍ଷିତ ହୋଇଛି । ଏହାର ଯଥାର୍ଥ ସାକ୍ଷ୍ୟ ବହନ କରିଛନ୍ତି ଲିଓ ଟଲଷ୍ଟୟଙ୍କ ଆତ୍ମଜୀବନୀ, ଗାନ୍ଧିଜୀଙ୍କର 'My experiment with Truth', ନେହରୁଙ୍କର Autobiography ଏବଂ ବିଶ୍ୱ ସାହିତ୍ୟର ଆହୁରି ଅନେକ ଉଚ୍ଚକୋଟିର ଆତ୍ମଜୀବନୀ । ଦେଶର ଅଗଣନ ମଣିଷଙ୍କୁ ବୁଝିବାର ମୂଲ୍ୟବାନ ଉପାଦାନ ଯଦି  ଯୋଗାଏ ଆତ୍ମଜୀବନୀ ତେବେ ଏ କ୍ଷେତ୍ରରେ ଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ 'ମୋ ଜୀବନ ସଂଗ୍ରାମ' ପଛରେ ପଡ଼ି ଯାଇନାହିଁ । ବିଂଶ ଶତାବ୍ଦୀର ଆଦ୍ୟପାଦରେ ଓଡ଼ିଆ ଭାଷା ଓ ଓଡ଼ିଶା ପ୍ରଦେଶ ଉଭୟେ ଏକ ଘଡ଼ିସନ୍ଧି ମୁହୂର୍ତ୍ତ ମଧ୍ୟ ଦେଇ ଗତି କରୁଥିଲା । ଏହି ସମୟରେ ଶ୍ରୀ ସତ୍ୟନାରାୟଣ ରାଜଗୁରୁ ଆମ ପ୍ରଦେଶ ଓ ଆମ ଭାଷାର ଆତ୍ମରକ୍ଷା ପାଇଁ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଆପ୍ରାଣ ଉଦ୍ୟମ କରି ତାଙ୍କ ବ୍ୟକ୍ତିତ୍ୱର ମହନୀୟତା ପ୍ରତିପାଦିତ କରିଯାଇଛନ୍ତି । ଏ ପ୍ରସଙ୍ଗଟି ତାଙ୍କ ନିଜ ମୁହଁରୁ ଶୁଣିଲେ ମନ୍ଦ ହେବ ନାହିଁ ।

'ଏ ଶତାବ୍ଦୀଟି ଓଡ଼ିଶା ଓ ଓଡ଼ିଆ ଜାତି ପାଇଁ ଥିଲା ଗୁରୁତ୍ୱପୂର୍ଣ୍ଣ । ମୋର ଜନ୍ମ ତଥା ବାସସ୍ଥାନ ପାରଳାଖେମୁଣ୍ଡି ପ୍ରାକୃତିକ ଓଡ଼ିଶାର ଏକ ଐତିହାସିକ ସହର ଏବଂ ସୁନାମଧନ୍ୟ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ସେହିଠାରୁ ଓଡ଼ିଆ ଆନ୍ଦୋଳନ ନିୟନ୍ତ୍ରିତ କରୁଥିବାବେଳେ ମୁଁ ତାଙ୍କର

ସହଯୋଗୀ ଭାବେ ଘଟଣାବହୁଳ ଜୀବନ ଅତିବାହିତ କରିଛି । ସେତେବେଳେ ଆନ୍ଦୋଳନର ବିଭିନ୍ନ ପର୍ଯ୍ୟାୟରେ ଯେଉଁ ସବୁ ସ୍ମାରକ ପତ୍ର ପ୍ରସ୍ତୁତ କରାଯାଉଥିଲା ସେଥିପାଇଁ ଐତିହାସିକ ତଥ୍ୟ ଯୋଗାଉଥିଲି ମୁଁ ନିଜେ । ଗଜପତି କୃଷ୍ଣଚନ୍ଦ୍ର ଦେବ ଓଡ଼ିଶା ପ୍ରଦେଶ ଗଠନ ଦାବୀ କରିବା ପାଇଁ ଯେଉଁ ଉପାଦାନ ଚାହୁଁଥିଲେ, ତାହା ଐତିହ୍ୟ ସଂପନ୍ନ ଏ ଓଡ଼ିଆ ଜାତିର ଅତୀତକୁ ଖୋଳିତାଡ଼ି ବାହାର କରି ଯୋଗାଇ ଦେବା ଏବଂ ସେ ସେହି ତଥ୍ୟକୁ ଭିତ୍ତିକରି ବିଶ୍ୱଦରବାରରେ ଓଡ଼ିଆଙ୍କ ପ୍ରତିନିଧି ଭାବେ ଏ ଜାତିର ନ୍ୟାଯ୍ୟ ଅଧିକାର ହାସଲ କରୁଥିବା ଯୋଗୁଁ ମୁଁ କେତେ ଯେ ଆନନ୍ଦ ପାଇଛି ସେ ସବୁ ବାସ୍ତବରେ ବର୍ଣ୍ଣନାତୀତ ।' (ମୋ ଜୀବନ ସଂଗ୍ରାମ - ମୁଖବନ୍ଧ)

ଆତ୍ମ ଚରିତର ସ୍ୱରୂପ ସଂପର୍କରେ ଜେ.ଟି. ସିପ୍‌ଲେ କହନ୍ତି - 'The authobiography proper is a connected narrative of the author's life with stress laid on introspection or on the significance of his life against a wider background.' ଏ ଦୃଷ୍ଟିରୁ ବିଚାର କଲେ ଜାଣିହୁଏ ଯେ ଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ 'ମୋ ଜୀବନ ସଂଗ୍ରାମ' ତାଙ୍କ ବ୍ୟକ୍ତିଗତ ଜୀବନ ପ୍ରବାହର ନଖଶିଖ ବର୍ଣ୍ଣନାରେ ଭାରାକ୍ରାନ୍ତ ହୋଇନାହିଁ, ବରଂ ଏହା ଓଡ଼ିଶା ରାଜ୍ୟ ଗଠନ, ଓଡ଼ିଆ ଭାଷାର ପୁନର୍ଜୀବନ, ଓଡ଼ିଶାର ଐତିହାସିକ ଏବଂ ପ୍ରତ୍ନତାତ୍ତ୍ୱିକ ଗବେଷଣା, କୃଷ୍ଣଚନ୍ଦ୍ର ଗଜପତିଙ୍କ ଓଡ଼ିଶା ଗଠନ ପାଇଁ ପ୍ରାଣପାତ ଉଦ୍ୟମ ଏବଂ ସର୍ବୋପରି ଭାରତର ସ୍ୱାଧୀନତା ସଂଗ୍ରାମ ଇତ୍ୟାଦି ଅନେକ ବୃହତ୍ତର ପ୍ରସଙ୍ଗର ଉପସ୍ଥାପନରେ ବିଚିତ୍ରବର୍ଣ୍ଣା ହୋଇପାରିଛି ।

**ସେ ସଦ୍‌ଗୁଣ - ଗୁଣ - ଖଣି, ଘୋଟିଛି ଯା' କୀର୍ତ୍ତି ଜଗତଶ୍ରେଣୀ :**

ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି

ପାରଳାଖେମୁଣ୍ଡିର ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ଗଳ୍ପ, ଉପନ୍ୟାସ, କାବ୍ୟ, କବିତା ଓ ନାଟକଭଳି କୌଣସି ସାହିତ୍ୟିକ ଅବଦାନ ଛାଡ଼ି ଯାଇନାହାନ୍ତି ସତ, କିନ୍ତୁ ପରୋକ୍ଷ ଭାବରେ ସେ ଓଡ଼ିଆ ସାହିତ୍ୟର ପ୍ରଭୂତ ଉନ୍ନତି ସାଧନ କରିଯାଇଅଛନ୍ତି । ସେ ଥିଲେ ଅନେକ ମାନବୀୟ ସଦ୍‌ଗୁଣାବଳୀର ଆଧାର । ଶିକ୍ଷା, ସ୍ୱାସ୍ଥ୍ୟ, ଭାଷା, ସାହିତ୍ୟ, କଳା, ସଂସ୍କୃତି ଆଦି ଓଡ଼ିଶାର ସାମାଜିକ ତଥା ରାଜନୀତିକ ଜୀବନର ଅନେକ ଶାଖାକୁ ସେ ଯଥେଷ୍ଟ ମାତ୍ରାରେ ପଲ୍ଲବିତ କରାଇପାରିଥିଲେ । ତାଙ୍କର ଅକୁଣ୍ଠ ସାହାଯ୍ୟ ଓ ସହଯୋଗରେ କେବଳ ପାରଳାଖେମୁଣ୍ଡିରେ ନୁହେଁ, ଓଡ଼ିଶାର କୋଣ ଅନୁକୋଣରେ ଖେଳି ଯାଇଥିଲା ନବୀନ ଜୀବନ ପ୍ରବାହର ମୁକ୍ତବାୟୁ ।

ଓଡ଼ିଆ ଭାଷାକୁ ଆଧାରକରି ଓଡ଼ିଶା ପ୍ରଦେଶ ଗଠିତ ହେବାରେ କୃଷ୍ଣଚନ୍ଦ୍ର ନିଜର ସବ୍ୟସାଚୀତ୍ୱ ପ୍ରମାଣ କରିଯାଇଛନ୍ତି । 'ଉତ୍କଳ ସମ୍ମିଳନୀ'ର ଦଶମ ଅଧିବେଶନ ୧୯୧୪ ମସିହା ଡିସେମ୍ବର ୨୬ ଓ ୨୭ ତାରିଖରେ ପାରଳାରେ ଅନୁଷ୍ଠିତ ହେବା ପଛରେ ଥିଲା ତାଙ୍କର ଅକ୍ଲାନ୍ତ ଉଦ୍ୟମ । ୧୯୩୭ ଏପ୍ରିଲ ୧ ତାରିଖରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର ପ୍ରଥମ ପ୍ରଧାନମନ୍ତ୍ରୀ ଭାବେ ସେ ଶପଥ ଗ୍ରହଣ କରିଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ, କଟକ ମେଡ଼ିକାଲ କଲେଜ, କେନ୍ଦ୍ରୀୟ ଧାନ ଗବେଷଣା ପ୍ରତିଷ୍ଠାନ ଏବଂ ପୁରୀ, ବାଲେଶ୍ୱର ଓ ସମ୍ବଲପୁରଠାରେ ଅନେକ ସ୍କୁଲ କଲେଜ ସ୍ଥାପନ ଇତ୍ୟାଦି ଥିଲା କୃଷ୍ଣଚନ୍ଦ୍ର ଗଜପତିଙ୍କ ଶିକ୍ଷା ପ୍ରାଣତାର ଉଦାର ଅନୁଶୀଳନ ।

ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି କ୍ଷେତ୍ରରେ ତାଙ୍କର ମହତ୍ ଅବଦାନ ପ୍ରତ୍ୟକ୍ଷ-ପରୋକ୍ଷ ତତ୍ତ୍ୱାବଧାନ ଓ ପୃଷ୍ଠପୋଷକତା ତାଙ୍କ ସାହିତ୍ୟ ପ୍ରୀତିର ଆଲେଖ୍ୟ ବହନ କରେ । ପାରଳା ଜମିଦାରୀର ଦାୟିତ୍ୱ ଗ୍ରହଣ କରିବା ପରେ ୧୯୧୩ ମେ ୧୫ ତାରିଖରେ ସେ ଉତ୍କଳ ସାହିତ୍ୟ ସମାଜକୁ ଟ.୫୦୦ଙ୍କା ଦାନ ସ୍ୱରୂପ ପଠାଇଛନ୍ତି । ଗୋପବନ୍ଧୁ, ଗୋଦାବରୀଶ ଓ ନୀଳକଣ୍ଠ ଆଦି ପୁଣ୍ୟାତ୍ମାମାନଙ୍କ ମହନୀୟ ପ୍ରଚେଷ୍ଟାରେ ପରିଚାଳିତ ହେଉଥିବା ସତ୍ୟବାଦୀ ବନବିଦ୍ୟାଳୟକୁ ୧୯୧୩ ଜୁନ୍ ୯ ତାରିଖରେ ଟ.୫୦୦ଙ୍କା ଦାନ ଦେଇ ସେହି ନିଃସ୍ୱ ଅନୁଷ୍ଠାନର ଅଶେଷ ଉପକାର ସାଧନ କରିଥିଲେ ।

ତାଙ୍କ ଉଦ୍ୟମରେ ପାରଳାଖେମୁଣ୍ଡିରେ ପୂର୍ବରୁ ପ୍ରତିଷ୍ଠିତ ଥିବା ପ୍ରାକୃତିକ ଓଡ଼ିଶାର ପ୍ରଥମ ସ୍ଥାୟୀ ରଙ୍ଗମଞ୍ଚ 'ଶ୍ରୀ ଶ୍ରୀ ରସିକରାଜ ପ୍ରାସାଦିକ ସୁଜ୍ଞଜନ ମନୋହର ନାଟ୍ୟମଣ୍ଡଳୀ'ର ଆଧୁନିକୀକରଣ ହୋଇ 'ପଦ୍ମନାଭ ରଙ୍ଗାଳୟ' ନାମରେ ନବଜନ୍ମ ଲାଭ କରିଥିଲା । ତାଙ୍କ ପିତୃବ୍ୟ ନାଟ୍ୟକାର ପଦ୍ମନାଭ ଦେବଙ୍କ 'ଧ୍ରୁବ ନାଟକ', ମଞ୍ଜୁଶ୍ରୀ ସତ୍ୟନାରାୟଣ ପଣ୍ଡାଙ୍କ 'ବିଜୟ କୁମାର' ନାଟକ ଏଠାରେ ମଞ୍ଚସ୍ଥ ହୋଇଥିଲା । କୃଷ୍ଣଚନ୍ଦ୍ର ଗଜପତିଙ୍କ ପ୍ରୋତ୍ସାହନରେ ଶିଶୁ କଳାକାରମାନେ ଛାତ୍ରବୃତ୍ତି ହାସଲ କରି ନାଟ୍ୟବୃତ୍ତି ଶିକ୍ଷା କରୁଥିଲେ ।

ସଂଗୀତ ପ୍ରତି ତାଙ୍କର ଥିଲା ଅତିଶୟ ଆଗ୍ରହ । ପାରଳାରେ ନିୟମିତ ସଂଗୀତ ଚର୍ଚ୍ଚା ସେ କରାଉଥିଲେ । ପ୍ରତିବର୍ଷ ଦଶହରା ସମୟରେ ଆୟୋଜିତ ହେଉଥିଲା ଏକ ବିରାଟ ସଂଗୀତ ସମାରୋହ । ଏଥିରେ ସ୍ଥାନୀୟ ତଥା ଓଡ଼ିଶା ବାହାରୁ ଆସିଥିବା କଳାକାରମାନେ ଯୋଗ ଦେଉଥିଲେ । ଏହିସବୁ ସଂଗୀତ ଆସରମାନଙ୍କରେ ପାରଳାର ଅନ୍ଧ ଗାୟକ ଆପନ୍ନା ପାଣିଗ୍ରାହୀ ବହୁ ସୁନାମ ଅର୍ଜନ କରି ଓଡ଼ିଶା ବାହାରେ ମଧ୍ୟ ସୁପରିଚିତ ହୋଇପାରିଥିଲେ ।

ଗୋପାଳଚନ୍ଦ୍ର ପ୍ରହରାଜଙ୍କ 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ'ର ପଞ୍ଚମ ଭାଗ ପ୍ରକାଶିତ ହୋଇଛି ଗଜପତି କୃଷ୍ଣଚନ୍ଦ୍ରଙ୍କ ଆର୍ଥିକ ପୃଷ୍ଠପୋଷକତାରେ । 'ପ୍ରହରାଜଙ୍କ ଅନୁରୋଧ କ୍ରମେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନଗଦ ପାଞ୍ଚ ହଜାର ଟଙ୍କା ଆର୍ଥିକ ସହାୟତା ଦେଇ ସେହି ଭାଷା କୋଶାର୍କ ଭାଷାକୋଷର ପଞ୍ଚମ ଭାଗ ପ୍ରକାଶନ

କରାଇଥିଲେ ।'(ପଦ୍ମଚରଣ ସାହୁ - ଶତାବ୍ଦୀ ପୁରୁଷ - କୃଷ୍ଣଚନ୍ଦ୍ର ଗଜପତି, ପୃ.୧୬୭)

ଗୋପୀନାଥ ନନ୍ଦଙ୍କ ଶବ୍ଦତତ୍ତ୍ୱବୋଧ ଅଭିଧାନର ପ୍ରଣୟନ ଓ ପ୍ରକାଶନ ସମ୍ଭବ ହୋଇପାରିଥିଲା କୃଷ୍ଣଚନ୍ଦ୍ର ଗଜପତିଙ୍କ ଉଦାର ଆର୍ଥିକ ପ୍ରୋତ୍ସାହନ ଯୋଗୁଁ । 'ପଣ୍ଡିତ ଗୋପୀନାଥ ନନ୍ଦଶର୍ମା 'ଶବ୍ଦ ତତ୍ତ୍ୱବୋଧ ଅଭିଧାନ' ପ୍ରଣୟନ ବେଳେ ନିୟମିତ ସ୍କୁଲକାର୍ଯ୍ୟରେ ଯୋଗ ଦେଇ ପାରୁନଥିଲେ । ସେ ମହାରାଜାଙ୍କ ଉଚ୍ଚବିଦ୍ୟାଳୟରେ ପଣ୍ଡିତ ଥିଲେ । ଏଣୁ ସ୍କୁଲ ଅଧକ୍ଷ ମହାରାଜାଙ୍କ ପାଖରେ ଅଭିଯୋଗ କଲେ ଯେ ପଣ୍ଡିତ ନନ୍ଦ ନିୟମିତ ସ୍କୁଲକୁ ଆସୁନାହାନ୍ତି । ମହାରାଜା ନନ୍ଦ ମହାଶୟଙ୍କଠାରୁ ଅନିୟମିତ ହେବାର କାରଣ ବୁଝିଥିଲେ । ସେ 'ଶବ୍ଦତତ୍ତ୍ୱବୋଧ ଅଭିଧାନ' ପ୍ରଣୟନ କରୁଥିବା ଜାଣିପାରି ତାଙ୍କୁ ପୂରା ଦରମା ସହିତ ଛଅ ମାସ ଛୁଟି ଦେଇଥିଲେ ଏବଂ ଶେଷରେ ଏହି ଅଭିଧାନର ପ୍ରଥମ ପ୍ରକାଶନ ପାଇଁ ତିନିହଜାର ଟଙ୍କା ସାହାଯ୍ୟ ଦେଇଥିଲେ ।' (ଶତାବ୍ଦୀ ପୁରୁଷ କୃଷ୍ଣଚନ୍ଦ୍ର ଗଜପତି, ପୃ.୧୬୭)

ଗୋପୀନାଥ ନନ୍ଦଙ୍କ ଓଡ଼ିଆ 'ଭାଷାତତ୍ତ୍ୱ' ପ୍ରକାଶନ ପାଇଁ ଅର୍ଥ ନିଅଣ୍ଟ ହେବା ଜାଣି ମହାରାଜା ସେଥିପାଇଁ ମୁକ୍ତ ହସ୍ତରେ ଏକ ହଜାର ଟଙ୍କା ମଧ ସାହାଯ୍ୟ ଦେଇଥିଲେ ।

ଜଗବନ୍ଧୁ ସିଂହଙ୍କର 'ପ୍ରାଚୀନ ଉତ୍କଳ' ଗ୍ରନ୍ଥଟି କୃଷ୍ଣଚନ୍ଦ୍ରଙ୍କ ଅନୁଦାନରେ ପ୍ରକାଶିତ । ସାହିତ୍ୟ ସାଧନାବ୍ରତୀ ଅନେକ ଆର୍ଥିକ ଅସ୍ୱଚ୍ଛଳ ସାହିତ୍ୟିକଙ୍କୁ ସେ ଅଯାଚିତ ପୃଷ୍ଠପୋଷକତା ଯୋଗାଇ ଦେଇଛନ୍ତି । ତାଙ୍କର ପ୍ରେରଣା ଓ ପ୍ରୋତ୍ସାହନ ପାଇଁ ଓଡ଼ିଆ ସାହିତ୍ୟ ତାଙ୍କୁ ସବୁଦିନ ପାଇଁ ମନେ ରଖିବ ।

କୃଷ୍ଣଚନ୍ଦ୍ର ଗଜପତିଙ୍କ ପିତା ଗୌରଚନ୍ଦ୍ର ଗଜପତି ୧୮୯୧ ମସିହାରେ ଲଣ୍ଡନରୁ ଦୁଇଟି ବଡ଼ ମୁଦ୍ରଣ ଯନ୍ତ୍ର ଆଣି ରାଜପ୍ରାସାଦ ପରିସରରେ ସ୍ଥାପନ କରି 'ଗଜପତି ପ୍ରେସ'ର ଶୁଭାରମ୍ଭ କରିଥିଲେ । ଏହାର ପରିଚାଳନା ଦାୟିତ୍ୱରେ ଥିଲେ ଉଚ୍ଚ ଶିକ୍ଷିତ ଶ୍ୟାମ ସୁନ୍ଦର ରାଜଗୁରୁ । ଏହି ପ୍ରେସ୍‌ରୁ ତାଙ୍କ ସଂପାଦନାରେ ପ୍ରକାଶ ପାଇଲା ଇଂରେଜୀ ସାପ୍ତାହିକ ପତ୍ରିକା 'ଗଂଜାମ ନିଉଜ' । କୃଷ୍ଣଚନ୍ଦ୍ର ରାଜ୍ୟଭାର ଗ୍ରହଣ କଲାପରେ ୧୯୧୭ରୁ ୧୯୪୨ ମଧ୍ୟରେ ଓଡ଼ିଆ ସାହିତ୍ୟର ବଳିଷ୍ଠ ପୃଷ୍ଠପୋଷକତାର ନିଦର୍ଶନ ସ୍ୱରୂପ ଏଠାରୁ ପ୍ରକାଶିତ ହୋଇଥିଲା ଅନେକ ଦୁର୍ମୂଲ୍ୟ ସାହିତ୍ୟିକ ଗ୍ରନ୍ଥ । ସେମାନଙ୍କ ମଧ୍ୟରେ ଜଗନ୍ନାଥ ଗଜପତି (୩ୟ)ଙ୍କ 'ବୃନ୍ଦାବନଚନ୍ଦ୍ର ବିହାର', ଗୋପାଳକୃଷ୍ଣ ପଦ୍ୟାବଳୀର ପ୍ରଥମ, ଦ୍ୱିତୀୟ ଓ ତୃତୀୟ ସଂସ୍କରଣ, ପଦ୍ମନାଭ, ନାରାୟଣ ଦେବଙ୍କ ଭାଗବତ ମହାତ୍ମ୍ୟ, ଭାଗବତ ମହାପଟଳ, ତାଳସର୍ବସାର ସଂଗ୍ରହ, ପ୍ରହ୍ଲାଦ ନାଟକ, ସଂଗୀତ ଅହଲ୍ୟା ଶାପ ବିମୋଚନ, ସଂଗୀତ ନୀଳୋଦୟ ବାଣଦର୍ପଣ, ସଂଗୀତ ତାନ ପରୀକ୍ଷା ଗୌରଚନ୍ଦ୍ର ଗଜପତିଙ୍କ ନାମରେ ଭଣିତ ଧ୍ରୁବନାଟକ, ଗୌରହରି ପରିଚ୍ଛାଙ୍କ ଗୌରହରି ଗ୍ରନ୍ଥାବଳୀ, ହରିବନ୍ଧୁ ବେବର୍ତ୍ତାଙ୍କ ହରିବନ୍ଧୁ ପଦ୍ୟାବଳୀ, ଆପନ୍ନା ପଣ୍ଡାଙ୍କ କଳାବତୀ, ଗାଙ୍ଗେୟ ବଂଶାବଳୀ, ଗୀତ ରତ୍ନାବଳୀ, ଗୀତି ସ୍ତବକ ଇତ୍ୟାଦି ଉଲ୍ଲେଖଯୋଗ୍ୟ ।

କୃଷ୍ଣଚନ୍ଦ୍ର ଗଜପତି ନିଜେ ସାହିତ୍ୟିକ ନଥିଲେ ମଧ ତାଙ୍କର ଯେ ଏକ ରସୋଚ୍ଛଳ-ଉଦାର ସାହିତ୍ୟିକ ପ୍ରାଣ ଥିଲା ଏହା ନିଃସନ୍ଦେହ । ଦେଶ ଗଠନ, ଭାଷା ସୁରକ୍ଷା, ରାଜନୀତିରେ ସକ୍ରିୟ ଅଂଶ ଗ୍ରହଣ, ସମାଜ ସଂସ୍କାର ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ ଇତ୍ୟାଦି ଅନେକ ବିଷୟର ଉନ୍ନତି ପାଇଁ ସେ ସମସ୍ତ ସମୟ ବ୍ୟୟ କରୁଥିଲେ । ସେହି କାରଣରୁ ସାହିତ୍ୟ ସୃଷ୍ଟି ପାଇଁ ତାଙ୍କ ପାଖରେ ହୁଏତ ଅବସର ନଥିଲା, କିନ୍ତୁ ତା'ର ଉତ୍ତରୋତ୍ତର ଅଭିବୃଦ୍ଧି ପାଇଁ ତାଙ୍କ ଅଭ୍ୟନ୍ତରରେ ଥିଲା ଏକ ନିରନ୍ତର ଅନିର୍ବାଣ ଅନୁକମ୍ପା ।

### ଭଜିଛି ଅରଣ୍ୟ ପ୍ରସୂନର ଦଶା :

### 'ଗୋପୀନାଥ ବଲ୍ଲଭ' ନାଟକ

୧୮୬୮ ମସିହାରେ ପାରଳାଖେମୁଣ୍ଡିର ରଘୁନାଥ ପରିଚ୍ଛାଙ୍କ ଦ୍ୱାରା ରଚିତ 'ଗୋପୀନାଥ ବଲ୍ଲଭ' ନାଟକ ପ୍ରକାଶିତ ହୋଇଥିଲା । ଏହାର ଦ୍ୱିତୀୟ ସଂସ୍କରଣ ହୋଇଥିଲା ଅପ୍ରେଲ ୧୮୯୬ ମସିହାରେ । ଦୁଇଟିଯାକ ସଂସ୍କରଣର ମୁଖବନ୍ଧ ଲେଖିଛନ୍ତି ଶ୍ରୀ ଗୌରୀଶଙ୍କର ରାୟ । ଏହି ନାଟକର ବିଜ୍ଞାପନରେ ଶ୍ରୀ ରାୟ ଲେଖିଛନ୍ତି - 'ଉତ୍କଳ ଭାଷାରେ ଅନେକ ପୁରାତନ ଗ୍ରନ୍ଥ ପୂର୍ବକବିମାନଙ୍କ ଦ୍ୱାରା ରଚନା ହୋଇ ଏତେବେଳେ ମୁଦ୍ରାଯନ୍ତ୍ରର ସାହାଯ୍ୟରେ ଦେଶ ବିଦେଶରେ ପ୍ରଚାର ହେବାରୁ ଉତ୍କଳ ଗୌରବ ଯଥୋଚିତ ରୂପେ ବିସ୍ତାର ହେଉଅଛି, କିନ୍ତୁ ବର୍ତ୍ତମାନ କାଳରେ ଉତ୍କଳ ଦେଶର ଲୋକମାନେ ବିଦ୍ୟା ଓ ବୁଦ୍ଧିର ତଦ୍ରୂପ ବ୍ୟବହାର କରୁଅଛନ୍ତି କି ନା ଏ କଥାର ପରିଚୟ ଦେବା ନିମିତ୍ତ ଆମ୍ଭେ ଗଞ୍ଜାମ ଜିଲ୍ଲାନ୍ତର୍ଗତ ପାରଳାଖେମୁଣ୍ଡି ନିବାସୀ କବିଚନ୍ଦ୍ର ରଘୁନାଥ ପରିକ୍ଷାଙ୍କ କୃତ ଏହି 'ଗୋପୀନାଥ ବଲ୍ଲଭ' ନାଟକ ମୁଦ୍ରିତ କରାଇ ଜନସମାଜରେ ଉପସ୍ଥିତ କରୁଅଛୁ । ଏଥିରେ ଶ୍ରୀରାଧାକୃଷ୍ଣଙ୍କର ରାସଲୀଳା ଚରିତ୍ରର କିୟଦଂଶ ସଂଗୀତ ନାଟକ ପ୍ରକାରରେ ବର୍ଣ୍ଣିତ ହୋଇଅଛି ।'

ଗୌରୀ ଶଙ୍କରଙ୍କର ଉପରୋକ୍ତ ମନ୍ତବ୍ୟରୁ ଜଣାଯାଏ ଯେ ୧୮୬୮ ମସିହାରେ ପ୍ରକାଶିତ ରଘୁନାଥ ପରିଚ୍ଛାଙ୍କ 'ଗୋପୀନାଥ ବଲ୍ଲଭ' ଏକ ନାଟକ ନିଶ୍ଚୟ । ୧୮୬୮ରେ ପ୍ରକାଶିତ ହୋଇଥିବା ହେତୁ ଏହାର ରଚନାକାଳ ନିହାତି ପକ୍ଷେ ୧୮୬୮ର ପୂର୍ବବର୍ତ୍ତୀ ସମୟ । ଏହା ସତ୍ତ୍ୱେ ଓଡ଼ିଆ ନାଟକର ବିକାଶକ୍ରମ ନିର୍ଦ୍ଦେଶ କଲାବେଳେ ଅଧ୍ୟାପକ ଗିରିଜା ଶଙ୍କର ରାୟ ତାଙ୍କର ଓଡ଼ିଆ ନାଟ୍ୟକଳା ପୁସ୍ତକରେ ଲେଖିଛନ୍ତି - 'କବିସୂର୍ଯ୍ୟଙ୍କ ଚମ୍ପୂ ଓଡ଼ିଆ ନାଟକର ପ୍ରାଥମିକ ଅବସ୍ଥାର ଦ୍ୟୋତକ ରୂପେ ଗ୍ରହଣ କରାଯାଇପାରେ ।' (ଓଡ଼ିଆ ନାଟ୍ୟକଳା,

ପୃ.୨୪) ସେହି ପୁସ୍ତକରେ ଅନ୍ୟତ୍ର (ପୃ.୩୨) ସେ ଓଡ଼ିଆ ଯାତ୍ରାକୁ ଓଡ଼ିଆ ନାଟ୍ୟ ସାହିତ୍ୟର ପୂର୍ବବର୍ତ୍ତୀ ଅବସ୍ଥା ରୂପେ ନିର୍ଦ୍ଦେଶ କରିଛନ୍ତି । ଯେତେବେଳେ ଯାତ୍ରା, ଲୀଳା, ସୁଆଙ୍ଗ ଓଡ଼ିଶାର ସାଂସ୍କୃତିକ ଜୀବନର ବିଶିଷ୍ଟ ଅଂଗ ଥିଲା, ସେତିକିବେଳେ 'ଗୋପୀନାଥ ବଲ୍ଲଭ' ନାଟକ ରଚିତ ହୋଇଥିଲେ ମଧ୍ୟ ଅଧ୍ୟାପକ ରାୟ ବଡ଼ ଆଶ୍ଚର୍ଯ୍ୟଜନକ ଭାବେ ଏହାର ଉଲ୍ଲେଖ ମଧ୍ୟ କରିନାହାନ୍ତି । ଫଳତଃ ପରବର୍ତ୍ତୀ ସମାଲୋଚକମାନେ ଏହି ନାଟକକୁ ଓଡ଼ିଆ ନାଟ୍ୟ ସାହିତ୍ୟର ବିକାଶଧାରାରେ ସମନ୍ୱିତ କରିବା ପାଇଁ କେତେକାଂଶରେ ଅନୁଦାରଭାବ ପ୍ରଦର୍ଶନ କରିଛନ୍ତି ।

ବିଷୟଗତ ପରିଚର୍ଚ୍ଚା ଦୃଷ୍ଟିରୁ ପ୍ରଭେଦ ଅନେକ ଥିବା ସତ୍ତ୍ୱେ ନାଟ୍ୟ କଳାର ଆଂଗିକ ଦୃଷ୍ଟିରୁ ବିଚାର କଲେ ରଘୁନାଥ ପରିଚ୍ଛାଙ୍କ ଗୋପୀନାଥ ବଲ୍ଲଭ ନାଟକ ଏବଂ ଜଗନ୍ମୋହନ ଲାଲଙ୍କର ବାବାଜୀ ଭିତରେ ବିଶେଷ କିଛି ଦୂରତ୍ୱ ନାହିଁ । 'ବାବାଜୀ' ସଂପର୍କରେ ଗିରିଜା ବାବୁଙ୍କର ଅଭିମତ ମଧ୍ୟ ସେତେ ଉତ୍ସାହଜନକ ନୁହେଁ । 'ବାସ୍ତବିକ ଏହି ବାବାଜୀ ନାଟକ ପ୍ରକୃତ ନାଟକ ନୁହେଁ, କିନ୍ତୁ ଏହା ଯାତ୍ରା ଅପେକ୍ଷା ଉନ୍ନତ ଓ ସୁରୁଚି ସଂପନ୍ନ x x x । ଏହା ଅତି କ୍ଷୁଦ୍ର ଶିକ୍ଷାପ୍ରଦ ଗୀତିନାଟ୍ୟ ଭିନ୍ନ ଆଉ କିଛି ନୁହେଁ ।' 'ଗୋପୀନାଥ ବଲ୍ଲଭ' ମଧ୍ୟ ନିରୁଢ଼ା ଅର୍ଥରେ ନାଟକ ନ ହୋଇପାରେ କିନ୍ତୁ ଗୀତିନାଟ୍ୟ ହେବାରେ ତା'ର କିଛି ଉଣା ଯୋଗ୍ୟତା ନାହିଁ । ଏପରିସ୍ଥଳେ ଗିରିଜା ଶଙ୍କର ତାଙ୍କ ଆଲୋଚନାରେ ବାବାଜୀ ନାଟକର ଅନେକ ଆଗରୁ ପ୍ରକାଶିତ 'ଗୋପୀନାଥ ବଲ୍ଲଭ' ନାଟକକୁ ପରିସରଭୁକ୍ତ ନକରିବା କ୍ଷୋଭର ବିଷୟ ।

ଶ୍ରୀ ପ୍ରିୟ ରଂଜନ ସେନ କିନ୍ତୁ 'ଗୋପୀନାଥ ବଲ୍ଲଭ' ନାଟକକୁ ସ୍ୱୀକୃତି ଦେଇଛନ୍ତି । 'The next dramatist of note was Jaganmohan Lala who wrote x x x Babaji, x x x published from Cuttack in 1877 x x. There was a predecessor even to Jaganmohan viz, Kavichandra Raghunath Pariksha who in 1868, from Cuttack published a drama Gopinath Ballabha Natak. Probably a translation from a vaishnav play in sanskrit.' (Modern Oriya Literature, pp.109-110)

୧୯୪୭ ମସିହାରେ ଶ୍ରୀ ସେନ୍‌ଙ୍କର ଏ ମନ୍ତବ୍ୟକୁ ପରବର୍ତ୍ତୀ କାଳରେ ୧୯୫୪ ଡିସେମ୍ବରରେ ପ୍ରକାଶିତ 'ଉତ୍କଳ ନୃତ୍ୟ ସଂଗୀତ ନାଟ୍ୟକଳା ପରିଷଦର ସ୍ମରଣିକା ସମର୍ଥନ ଯୋଗାଇଛି - 'Raghunath Parichha and Jaganmohan Lala are two other conspicious names in the history of dramatic authorship. Sri Parichha's Gopinath Ballabha Natak was published in 1868.'

ଏହାଦ୍ୱାରା ଓଡ଼ିଆ ସାହିତ୍ୟରେ ପ୍ରଥମ ନାଟକ ହେବାର ଦୌଡ଼ରେ 'ଗୋପୀନାଥ ବଲ୍ଲଭ'କୁ ଉପସ୍ଥାପନ କରାଯାଉନାହିଁ । କିନ୍ତୁ ଓଡ଼ିଆ ସାହିତ୍ୟର ବିକାଶ ପଥରେ ଶ୍ରୀ ରଘୁନାଥ ପରିଚ୍ଛାଙ୍କ 'ଗୋପୀନାଥ ବଲ୍ଲଭ' ଯେଉଁ ମୂଲ୍ୟବାନ ପାଥେୟ ଯୋଗାଇଛି ତା'ର ଯଥୋଚିତ ପ୍ରାପ୍ୟ ପ୍ରଦାନ କରିବାରେ କୌଣସି ସମାଲୋଚକ ଅନୁଦାରଭାବ ପୋଷଣ କରିବା ଆଦୌ ସ୍ପୃହଣୀୟ ନୁହେଁ ।

### ମନ ମୁକୁରରେ ତା' ରୂପ ଝଳି :

### ପତ୍ର-ପୃଷ୍ଠାରେ ପାରଳାର ସ୍ମୃତି ଓ ପ୍ରତିଶ୍ରୁତି

ପାରଳାଖେମୁଣ୍ଡି ଓଡ଼ିଶାର ଭୌଗଳିକ ମାନଚିତ୍ରରେ ଏକ ଉପାନ୍ତ ଅଞ୍ଚଳ । କିନ୍ତୁ ପ୍ରାକୃତିକ ଦୃଶ୍ୟ ସମ୍ବଳିତ ଏ ଭୂଖଣ୍ଡ ଅନେକ କବି, କଳାକାର, ସ୍ରଷ୍ଟା ଓ ଭାବୁକଙ୍କ ଆଖିରେ ବୋଳି ଦେଇଛି ଦିବ୍ୟାଞ୍ଜନ, ତାଙ୍କ ହୃଦୟ ବୀଣାରେ ସୃଷ୍ଟି କରିଛି ସର୍ଜନଶୀଳତାର ନବାନୁରାଗ । ଏ ମାଟିର ମହ ମହ ଗନ୍ଧରେ ଆମୋଦିତ ହୋଇଛି ସ୍ରଷ୍ଟା, ଏହାର ଉତ୍ତରଳ ଦୃଶ୍ୟ ରାଜିରେ ବିସ୍ଫାରିତ ହୋଇଛି ତା'ର ମନଶ୍ଚକ୍ଷୁ । ପାରଳାର କଥା ପ୍ରତ୍ୟେକ ସାରସ୍ୱତ କଳାପ୍ରାଣରେ ସୃଷ୍ଟି କରିପାରିଛି ବାଂଛିତ ମନୋଜ୍ଞ ବ୍ୟଥା । ଏ ମାଟି ଓ ଆକାଶର ବନ୍ଧନୀ ଭିତରେ ଥରେ ଯିଏ ବାନ୍ଧି ହୋଇଛି, ତାକୁ ଛାଡ଼ି ଚାଲିଗଲାବେଳେ ତା' ଅନୁଭବରେ ଆସିଛି ମେଞ୍ଚା ମେଞ୍ଚା ଅବଦମିତ କୋହ । କିଏ ତାକୁ ଗଳ୍ପରେ ତ କିଏ କବିତାରେ, ପୁଣି କିଏ ଚିତ୍ରରେ ଅବା ଚରିତ୍ରରେ କିମ୍ବା କେଉଁ ଚିଠି ପତ୍ରରେ ତାକୁ ସ୍ଥାନ ଦେଇଛନ୍ତି । ସ୍ରଷ୍ଟାର ସାରସ୍ୱତ ଉପତ୍ୟକା ପାରଳାର ପ୍ରୀତି ପର୍ବରେ ପୁଲକିତ ହୋଇଉଠିଛି । ସମୟର ବିବର୍ତ୍ତନରେ ଦୃଶ୍ୟମାନେ ହଜି ଯିବେ, ହଜି ଯିବେ ବି ତା'ର ଦ୍ରଷ୍ଟାମାନେ । କିନ୍ତୁ ପଛରେ ନିରବଧି କାଳକୁ କେବଳ ସାମ୍ନା କରୁଥିବ ପତ୍ର-ପୃଷ୍ଠାରେ ସ୍ଥାନୀତ ହୋଇଥିବା ତାଙ୍କର ଯେତେ ସବୁ ସ୍ମୃତି ଯେତେ ଅନୁଭୂତି ।

ଏହି ଅବସରରେ ପାରଳାଖେମୁଣ୍ଡିର ସ୍ମୃତିକୁ ସାହିତ୍ୟର ପତ୍ର-ପୃଷ୍ଠାରେ ଯେଉଁମାନେ ଉଜ୍ଜୀବିତ କରିପାରିଛନ୍ତି, ସେମାନଙ୍କୁ ସ୍ମରଣକୁ ଅଣାଯାଇପାରେ । ରାଧାନାଥ ରାୟଙ୍କ 'ମହେନ୍ଦ୍ରଗିରି', ବିଭୁଦତ୍ତ ମିଶ୍ରଙ୍କର 'ଉର୍ବଶୀର ଚିଠି' ଶାନ୍ତନୁ ଆଚାର୍ଯ୍ୟଙ୍କର ନରକିନ୍ନର ଉପନ୍ୟାସର ଜର୍ଜ ଚରିତ୍ର, ମହାପାତ୍ର ନୀଳମଣି ସାହୁଙ୍କ ତାମସୀରାଧା, ଅନ୍ଧରାତିର ସୂର୍ଯ୍ୟ, ଦୀନନାଥ ପାଠୀଙ୍କ ମେଟାଫିକ୍‌ସନ୍ ପୁନର୍ନବା ଓ ବେଣୀମାଧବ ପାଢ଼ୀଙ୍କ 'ସୀତାସାଗର' ଇତ୍ୟାଦି ପାରଳାର ପୁରୁଣା ଫର୍ଦ୍ଦ ପଢ଼ିବାରେ ସହାୟକ ହୁଅନ୍ତି ।

ଏତଦ୍‌ବ୍ୟତୀତ ଆହୁରି ଅନେକ ସାରସ୍ୱତ ସାଧକଙ୍କର କୃତି ଓ କୀର୍ତ୍ତିରେ ପାରଳାର ମୁଖଛବି ଝଲସି ଉଠିଥିବା ବିସ୍ମୟକର ନୁହେଁ । ଉପଯୁକ୍ତ ଅନୁସନ୍ଧାନ ଓ ଗବେଷଣାତ୍ମକ ଦୃଷ୍ଟିଭଂଗୀ ନେଇ ଏହି ପ୍ରସଙ୍ଗର ନିଷ୍ପାପର ବିଶ୍ଳେଷଣ କଲେ ଅନେକ ମୂଲ୍ୟବାନ ଅଜ୍ଞାତ ବିଷୟ ଗୋଚରୀଭୂତ ହେବ । ଏହି ବିଷୟକୁ ବିଶ୍ୱବିଦ୍ୟାଳୟ ସ୍ତରରେ ଏକ ଗବେଷଣାର ମାନ୍ୟତା ଦିଆଗଲେ Man, Milich ଏବଂ Race ସମସ୍ତେ ଉପକୃତ ହେବେ ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ ।

**କହିତ ନୋହିଲା ଭାରତୀରେ : ଶେଷକଥା**

ଆଲୋଚନା ପାଇଁ ଅବସରର ଅଭାବ ଓ ପ୍ରବନ୍ଧର ସୀମିତ କଳେବର ଦୃଷ୍ଟିରୁ ଯାହାସବୁ କହିବାର ଥିଲା ସେ ସବୁକୁ ପୁଙ୍ଖାନୁପୁଙ୍ଖ କହି ହେଲା ନାହିଁ । ମନକୁ ଅନେକ କଥା ଆସୁଛି । ଅନେକ ପ୍ରସଙ୍ଗ ଅନୁଶୀଳନରେ ବିଚାର ବୃତ୍ତି ବିସ୍ତୃତ ହେଉଛି । କିନ୍ତୁ ସେସବୁ ପାଇଁ ଆବଶ୍ୟକ ଅଲଗା ଅନୁଚିନ୍ତନ ।

ଲୋକ ଉପାଦାନ ଓ ସାଂଗୀତିକ ଆଧାର ବ୍ୟତୀତ ଗୋପାଳକୃଷ୍ଣ ପ୍ରତିଭାର ଆକଳନ ଆହୁରି ଅନେକ ଦିଗରୁ କରାଯାଇପାରିବ । ଏ ସଂପର୍କରେ ଆଲୋଚନା ଯେତିକି ହେବ ତାଙ୍କ ପ୍ରୀତି ପୀୟୂଷଭରା ପଦ୍ୟାବଳୀଗୁଡ଼ିକର ଆୟୁଷ ସେତିକି ବଢ଼ିବ । ଆଞ୍ଚଳିକତା ଓ ସଂକୀର୍ଣ୍ଣତାର କୂଟକପଟ ତ୍ୟାଗ କରି ଗୋପାଳକୃଷ୍ଣ ସଂଗୀତ ଯମୁନା ତଟରେ ଲୋଟିଯିବା ପ୍ରତ୍ୟେକ ସାରସ୍ୱତ ସମୀକ୍ଷକର ଏକାନ୍ତ ଅବଲମ୍ବନୀୟ ।

ଗୋପୀନାଥ ନନ୍ଦଶର୍ମାଙ୍କ ପାଣ୍ଡିତ୍ୟ ଓ ତାଙ୍କ 'ଶ୍ରୀଭାରତଦର୍ପଣ'ରେ ପ୍ରାଚ୍ୟ ସାହିତ୍ୟ ସମାଲୋଚନାର ଯେଉଁ Paradigm ସେ ସ୍ଥାପନ କରିଛନ୍ତି , ତାହା ସ୍ୱତନ୍ତ୍ର ଭାବରେ ଆଲୋଚିତ ହେବାର କଥା । ତାଙ୍କ ଭାଷାତତ୍ତ୍ୱ ଏକ ମୌଳିକ ଗ୍ରନ୍ଥ ହୋଇଥିବାରୁ ଏହାର ସ୍ଥାନ ମଧ୍ୟ ଓଡ଼ିଆ ଭାଷା ସାହିତ୍ୟ ଅଧ୍ୟୟନରେ ଏକ ନିର୍ଦ୍ଦିଷ୍ଟ ନିୟାମକ ହୋଇପାରିଛି । ପୁନଶ୍ଚ କବି ଗୋପୀନାଥ ନନ୍ଦ ଏବଂ ନାଟ୍ୟକାର ନନ୍ଦ ମଧ୍ୟ ପାରଳାଖେମୁଣ୍ଡିର ଗୌରବ ବର୍ଦ୍ଧନ କରିଛନ୍ତି ।

ଶ୍ୟାମସୁନ୍ଦର ରାଜଗୁରୁଙ୍କ ଜୀବନୀ ଓ କୃତିରାଜି ଓଡ଼ିଶା ଓ ଓଡ଼ିଆ ସାହିତ୍ୟ ପାଇଁ ଅତ୍ୟନ୍ତ ମୂଲ୍ୟବାନ । ଶ୍ୟାମସୁନ୍ଦରଙ୍କ ସାହିତ୍ୟିକ ପ୍ରତିଭାର ଏକକ ଅନୁଶୀଳନ ଆହୁରି ଅନେକ ତଥ୍ୟ ଓ ତତ୍ତ୍ୱ ଉଦ୍‌ଘାଟନରେ ସହାୟକ ହେବ ନିଶ୍ଚୟ ।

ପଦ୍ମନାଭ ଦେବଙ୍କ 'ପ୍ରହ୍ଲାଦ ନାଟକ' ରଘୁନାଥ ପରିଚ୍ଛାଙ୍କ ଅନ୍ୟାନ୍ୟ ଗ୍ରନ୍ଥ ଯଥା- 'ରାଧାକୃଷ୍ଣ ଲୀଳା', 'ଶ୍ରୀରାମାୟଣ', 'ତାଳସର୍ବସାର' ଓ 'ରାଧାମାଧବ ବିଳାସ' ଇତ୍ୟାଦିର ଆଲୋଚନା ନିଶ୍ଚିତ ଭାବରେ ପାରଳାଖେମୁଣ୍ଡିର ସାହିତ୍ୟିକ ଅବଦାନ ସଂପର୍କରେ ସବିଶେଷ ତଥ୍ୟ ପ୍ରଦାୟକ ହେବେ ।

ଶ୍ରୀ ସତ୍ୟନାରାୟଣ ରାଜଗୁରୁଙ୍କ ଇତିହାସ ଓ ପ୍ରତ୍ନତାତ୍ତ୍ୱିକ ଆଲୋଚନା ସମୂହ ସର୍ବଭାରତୀୟ ସ୍ତରରେ ମାନ୍ୟତାପ୍ରାପ୍ତ ଅନୁସିଦ୍ଧାନ୍ତ । ଅନେକ ଅସ୍ପଷ୍ଟ ଶିଳାଲେଖ ଓ ଜୀର୍ଣ୍ଣ ତାମ୍ରଫଳକ ଇତ୍ୟାଦିର ସେ ଶୁଦ୍ଧ ପାଠୋଦ୍ଧାର କରିବା ସଂଗେ ସଂଗେ ବହୁ ବିବଦମାନ ପ୍ରତ୍ନତାତ୍ତ୍ୱିକ ସମସ୍ୟାର ସମାଧାନ କରିପାରିଛନ୍ତି । ଜଣେ ଉଚ୍ଚକୋଟୀର ଗବେଷକ ଭାବରେ ସେହି ପ୍ରତିଭାଧରଙ୍କ ଆଗରେ ଆମର ଶିର ନଇଁପଡ଼େ । ସାହିତ୍ୟର ଅଧ୍ୟୟନ ଓ କେତେକ ସାହିତ୍ୟିକ ଉତ୍ସର ଅନୁସନ୍ଧାନ ପାଇଁ ତାଙ୍କର ନିର୍ଭରଯୋଗ୍ୟ ଅଭିମତ ଆମ ପାଇଁ ମଣିମାଣିକ୍ୟ ତୁଲ୍ୟ ।

ପାରଳାଖେମୁଣ୍ଡିର ସମସ୍ତ ସାହିତ୍ୟିକ ଅବଦାନ ଓ ତା'ର ପ୍ରତିଟି ସାରସ୍ୱତ ସର୍ଗ ଉପସର୍ଗକୁ ଆଲୋକିତ କରିବା ଅଧୁରା ରହିଗଲା - ଦୁଃଖ ଏତିକି !

ବରିଷ୍ଠ ଅଧ୍ୟାପକ
ଓଡ଼ିଆ ବିଭାଗ
ଖଲ୍ଲିକୋଟ ସ୍ୱୟଂଶାସିତ ମହାବିଦ୍ୟାଳୟ, ବ୍ରହ୍ମପୁର



କପିଳେଶ୍ୱରଠାରେ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ପୌର ଅତିଥି ଭବନର ଶିଳାନ୍ୟାସ କରୁଛନ୍ତି । ନିକଟରେ ଆଦିବାସୀ ଓ ହରିଜନ ଉନ୍ନୟନ ମନ୍ତ୍ରୀ ଶ୍ରୀ କାଳିନ୍ଦୀ ବେହେରା ଉପସ୍ଥିତ ଅଛନ୍ତି । (୨୮.୧୦.୨୦୦୪)



ପ୍ରାଚୀନ ସ୍ମୃତି ସ୍ତମ୍ଭ ଓ ବଳୀଖୁଣ୍ଟର ନମୁନା

# କୁଟିଆକନ୍ଧ ଚିତ୍ରକଳା

ସୁମତୀ ବେହେରା

**କୁ**ଟିଆକନ୍ଧମାନେ ସାଧାରଣତଃ ଫୁଲବାଣୀ ଜିଲ୍ଲାରେ ଦେଖାଯାନ୍ତି । କନ୍ଧଭାଷାରେ କୁଟିଆ ଶବ୍ଦର ଅର୍ଥ ଗାତ ବା ଗାଡ଼ । ଏମାନେ ଫୁଲବାଣୀ ଜିଲ୍ଲାର 'ବେଲଘର' ଓ ତା'ର ଆଖପାଖ ଅଞ୍ଚଳ, ଯଥା- ବୁଲୁବାରୁ, ମାଦଲକୁନା, ରଙ୍ଗାବାରୁ, ଡୁଆକେଲା, ଦେଓଗଡ଼ା, ତାଲାମ ପଦର, ଡିଡ଼ିପଦର, ଉଷାବାଲି ଇତ୍ୟାଦି ଗ୍ରାମମାନଙ୍କରେ ବାସ କରନ୍ତି । ଗ୍ରାମର ମୁଖିଆଙ୍କୁ ଜାନି କୁହାଯାଏ । ଏମାନେ ସମସ୍ତେ ଜାନିର କଥା ମାନି ବିଭିନ୍ନ ଆନୁଷ୍ଠାନିକ ପର୍ବପର୍ବାଣିମାନ ପାଳନ କରିଥାନ୍ତି ।

## କଳାନୁରକ୍ତି

ବର୍ଷର ବିଭିନ୍ନ ସମୟରେ ବିଭିନ୍ନ ପେନୁ (ଦେବତା)ଙ୍କୁ ବିଧିବଦ୍ଧଭାବେ ପୂଜାକରି ବଳି ଯାଚିଥାନ୍ତି । ସାମାଜିକ ଚଳଣିରେ କଳାର ପ୍ରତିଭା ପ୍ରତ୍ୟେକଙ୍କ ପାଖରେ ଊଣା ଅଧିକେ କିଛି ନା କିଛି ଅଛି । ସେମାନେ ଯେଉଁ ପର୍ବପର୍ବାଣି ପାଳନ କରନ୍ତି, ସେଥିରେ ବିଭିନ୍ନ ଦେବାଦେବୀଙ୍କୁ ବଳି ଯାଚିଥାନ୍ତି । ଏଥିପାଇଁ ବଳିଖୁଣ୍ଟ ବ୍ୟବହାର କରାଯାଇଥାଏ ।

ବେଶପୋଷାକରେ ମଧ୍ୟ ଯୁବତୀମାନେ ନିଜକୁ ସଜାଇବା ପ୍ରତି ଯତ୍ନବାନ ହୋଇଥାନ୍ତି । ପର୍ବପର୍ବାଣିମାନଙ୍କରେ ନାଚଗୀତ କରି ଆନନ୍ଦ କରିବା ସଂଗେସଂଗେ ଘରର ଦୁଆର ବନ୍ଧ ଉପରେ ଚିତ୍ରକରି ସଜାଇଥାନ୍ତି ।

## ଚିତ୍ରକଳା

ଚିତ୍ରଗୁଡ଼ିକ ଅତି ସାଧାରଣ । କୁଟିଆକନ୍ଧ ଭାଷାରେ ଚିତ୍ରକୁ 'ଟିକାଙ୍ଗ କୁଡ଼ା' କୁହାଯାଏ । କାନ୍ଥ ଚିତ୍ରଗୁଡ଼ିକ ଆକର୍ଷଣୀୟ ନହେଲେ ବି ସେମାନେ ଯେ ପ୍ରତ୍ୟେକ ପର୍ବପର୍ବାଣିକୁ ଏହିପରି ଚିତ୍ରକଳା କରିବା ନିମନ୍ତେ ଆଗଭର ହୋଇଥାନ୍ତି । ସେଥିରୁ ସେମାନଙ୍କର ଚିତ୍ରକଳା ପ୍ରତି ଶ୍ରଦ୍ଧା ଓ ସମ୍ମାନ ରହିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଚିତ୍ରଗୁଡ଼ିକ ଚାଉଳଚୁନା (ପିଠଉ) ପାଣିରେ ହେବା ସହିତ ଅନ୍ୟ ରଂଗରେ ମଧ୍ୟ ହୋଇଥାଏ । କେବଳ ହାତର ଅଂଗୁଳି ଛିଟା ଓ ଟୋପି ଦ୍ୱାରା ଚିତା ଅଙ୍କନ ହୋଇଥାଏ ।

କେବଳ ସ୍ତ୍ରୀ ଲୋକମାନେ ଏହି ଝୋଟି ଚିତ୍ର କରିଥାନ୍ତି । ଅନ୍ୟାନ୍ୟମାନଙ୍କ ପରି ସେଥିପାଇଁ ସେପରି କିଛି ବିଧି ନାହିଁ କହିଲେ ଚଳେ । ଚିତ୍ରରେ ବିଷୟବସ୍ତୁ ମଧ୍ୟ ଆଦୌ କିଛି ନାହିଁ । କେବଳ ହାତର ଅଂଗୁଳି ଛାପ, ଛିଟିକା ଦ୍ୱାରା ଘରର ଦୁଆର ବନ୍ଧ ଚାରିପାଖରେ ଚିତ୍ରକରି ପୂର୍ଣ୍ଣ କରିଥାନ୍ତି । ଠାଏ ଠାଏ କଳା ରଂଗର ଟୋପା ମଧ୍ୟ ଦେଇ ସଜାଇଥାନ୍ତି । ଟୋପିଦ୍ୱାରା ଫୁଲ, କଳାରଂଗର ଛକି, ଗାର, ଇତ୍ୟାଦି ପକାଇ ଘର କାନ୍ଥକୁ ସଜାଇଥାନ୍ତି । ଏପରି ଅର୍ଥହୀନ ଚିତ୍ରକଳା ବ୍ୟତୀତ ସେମାନଙ୍କର ଅନ୍ୟକିଛି ପରିବର୍ତ୍ତିତ ଚିତ୍ରକଳା ମଧ୍ୟ ଦୃଷ୍ଟିଗୋଚର ହୁଏ ନାହିଁ ।

## ଶିଳ୍ପକଳା

ପର୍ବପର୍ବାଣିମାନଙ୍କର ଯେଉଁ ବଳିଖୁଣ୍ଟିଟି ଦରକାର ହୁଏ, ସେଥିରେ ନାନା ଖୋଦେଇ କଳା ହୋଇଥିବାର ଦେଖାଯାଏ । ଏହି ବଳିଖୁଣ୍ଟିଟି ଗୋଟିଏ ଗଛର ମଂଜ ଗଣ୍ଡିରେ ତିଆରି ହୋଇଥାଏ । ଉପର ଅଂଶ ଗୋରୁର ଶିଙ୍ଘ ପରି ଦୁଇପାଖକୁ ଗୋଜିଆ ହୋଇ ଉପରକୁ ଉଠିଥାଏ । ଦୁଇ ଶିଙ୍ଘର ମଝିଧାର (ଅର୍ଦ୍ଧବୃତ୍ତାକାର) ଉପରେ ପୋଢ଼ର ବେକ ରଖି ବଳି ପକାଯାଏ । ଆଉ କେଉଁ କେଉଁ ଖମ୍ବର ଉପର ଭାଗ ଏପରି ନଥାଇ ସମାନ ଥାଏ । ପ୍ରତ୍ୟେକ ଖୁଣ୍ଟରେ ଖୋଦେଇ କଳା ଭରି ରହିଥାଏ । ଏହି ଖୋଦନ କଳାର ତାତ୍ପର୍ଯ୍ୟ ରହସ୍ୟପୂର୍ଣ୍ଣ । ସେମାନଙ୍କୁ ପଚାରିଲେ ମଧ୍ୟ ସମସ୍ତ କଥା ସହଜରେ ଜଣାପଡ଼େ ନାହିଁ । ପ୍ରତି ଗ୍ରାମର ମଧ୍ୟ ଭାଗରେ ଏପରି ଗୋଟିଏ ଗୋଟିଏ ବଳିଖୁଣ୍ଟ ଥାଏ । ଏହାର ସ୍ଥାୟିତ୍ୱ ୩/୪ ବର୍ଷ ପର୍ଯ୍ୟନ୍ତ ରହିଥାଏ । ଦରକାର ହେଲେ ପୁଣି ନୂଆ ଖୁଣ୍ଟ ପୋତା ହୁଏ ।

## ଚିତାକୁଟା

ଚିତ୍ରକଳା ପ୍ରସଙ୍ଗରେ କୁଟିଆକନ୍ଧଙ୍କର ଆଉ ଏକ ନମୁନା ହେଲା ଦେହର ଚିତାକୁଟା । ନିଜ ଶରୀରକୁ କ୍ଷତ ବିକ୍ଷତ କରି ସେମାନେ ବିଭିନ୍ନ ପ୍ରକାରର ନକ୍ସା ଦେହରେ କୁଟାଇଥାନ୍ତି । ସେମାନଙ୍କର କଳାପ୍ରିୟତାର ଜ୍ୱଳନ୍ତ ଉଦାହରଣ ହେଉଛି ଏହି ଅଙ୍ଗ ଆଲେଖନ । ସେମାନଙ୍କର ବିଶ୍ୱାସ, ମନୁଷ୍ୟ ମରିଗଲେ ଏହି ଚିତା ଚିହ୍ନ ସାଥିରେ ସ୍ୱର୍ଗକୁ ଯିବ । ସେଇ ବିଶ୍ୱାସରେ ସ୍ତ୍ରୀ ଓ ପୁରୁଷ ଉଭୟ ଚିତା କୁଟାଇବା ପାଇ ଆଗ୍ରହ ପ୍ରକାଶ କରିଥାନ୍ତି ।

କେତେକଙ୍କ ମତରେ ଚିତା କୁଟାଇବା କନ୍ଧଙ୍କର ଏକ ଲୋକପ୍ରିୟ ଛବି ହୋଇଥିବାରୁ ସେମାନେ କୁଟିଆକନ୍ଧ ନାମରେ ନାମିତ ହୋଇଛନ୍ତି । ଦେହରେ ଏମାନେ ଫୁଲ, ପତ୍ର, ଡାଳ, କୋଠି ଇତ୍ୟାଦି ଲେଖି କୁଟାଇଥାନ୍ତି । ଦେହର ବିଭିନ୍ନ ଅଂଶ ଯଥା- ମୁଖମଣ୍ଡଳ, ବାହୁ, ହାତ, ଛାତି, ପାଦ ଓ ଜଙ୍ଘ ଇତ୍ୟାଦିରେ ଚିତା କୁଟାଇ ଏମାନେ ଖୁବ୍ ଆନନ୍ଦ ପାଇଥାନ୍ତି ।

**ଚିତା କୁଟାଇବା ବିଧି -** ଚିତା କୁଟାଇବା ଏକ କଠିନ ଓ କଷ୍ଟକର ବ୍ୟାପାର । ପ୍ରଥମେ ନଡ଼ାକୁ ପୋଡ଼ି ସେଥିରେ ଜଡ଼ା ତେଲ ମିଶାଇ ତରଳ କରି ରଖାଯାଏ । ତା'ପରେ ଛୁଞ୍ଚି ଦ୍ୱାରା ଦେହରେ ନକ୍ସା ଆକାରରେ ଫୋଡ଼ି ଦିଆଯାଏ । ତା' ଉପରେ ଏହି କୃଷ୍ଣ ବର୍ଣ୍ଣ ତରଳ ପଦାର୍ଥକୁ ଲେପି ଦିଆଯାଏ । ଏହି ସମୟରେ ବହୁତ କଷ୍ଟ ହୁଏ । ପ୍ରାୟ ଠିକ୍ ଆଠ ଦଶ ଦିନ ପର୍ଯ୍ୟନ୍ତ ଏହି ଦରଜ ରହିଥାଏ । ବିବାହର ଠିକ୍ ପୂର୍ବରୁ କିମ୍ବା ବାଲ୍ୟାବସ୍ଥାରୁ ଝିଅମାନେ ଚିତା କୁଟାଇଥାନ୍ତି । ଚିତା କୁଟାଇବା ସେମାନଙ୍କର ପ୍ରଧାନ କଳା - ପ୍ରବୃତ୍ତି ଏବଂ ଏହାଦ୍ୱାରା ଦେହର ସୌନ୍ଦର୍ଯ୍ୟ ବଢ଼ିଥାଏ ।

ସୂଚନା ଅଧିକାରୀ
ସୂଚନା ଓ ଲୋକ ସଂପର୍କ ବିଭାଗ
ଭୁବନେଶ୍ୱର

# ଉତ୍ସର୍ଗୀକୃତ ସ୍ୱାସ୍ଥ୍ୟସେବା ପାଇଁ ରାଜ୍ୟସ୍ତରୀୟ ପୁରସ୍କାର ପ୍ରଦାନ ସମ୍ପର୍କରେ ସଂକ୍ଷିପ୍ତ ସୂଚନା

୧୯୯୩-୯୪ ମସିହାରେ ଓଡ଼ିଶାର ସେତେବେଳର ମାନ୍ୟବର ମୁଖ୍ୟମନ୍ତ୍ରୀ ସ୍ୱର୍ଗତଃ ବିଜୁ ପଟ୍ଟନାୟକ ଉତ୍ସର୍ଗୀକୃତ ସ୍ୱାସ୍ଥ୍ୟସେବା ପାଇଁ ପୁରସ୍କାର ପ୍ରଦାନ ବ୍ୟବସ୍ଥାର ଶୁଭାରମ୍ଭ କରିଥିଲେ । ସେସମୟରେ ରାଜ୍ୟର ୩୦ଟି ଜିଲ୍ଲା ଓ ୩ଟି ମେଡ଼ିକାଲ କଲେଜ ପାଇଁ ୪ଟି ଲେଖାଏଁ ମୋଟ ୧୩୨ଟି ପୁରସ୍କାର ଦିଆଯାଉଥିଲା । ସେହି ପୁରସ୍କାରଗୁଡ଼ିକୁ ଯଦିଓ ରାଜ୍ୟସ୍ତରୀୟ ବୋଲି କୁହାଯାଉଥିଲା, ପ୍ରକୃତରେ ତାହା ଜିଲ୍ଲା ଓ ମେଡ଼ିକାଲ କଲେଜର ସର୍ବଶ୍ରେଷ୍ଠ ସ୍ୱାସ୍ଥ୍ୟସେବୀମାନଙ୍କୁ ଦିଆଯାଉଥିଲା ଏବଂ ପୁରସ୍କାରଗୁଡ଼ିକ ନିମ୍ନମାନର ଥିଲା । ୨୦୦୦ ମସିହାରେ ପୁରସ୍କାରଗୁଡ଼ିକର ସଂଖ୍ୟା ୮ଟିକୁ କମାଇ ଦିଆଯିବା ସଂଗେ ସଂଗେ ଏହାର ମାନ ବୃଦ୍ଧି କରାଗଲା ଏବଂ ବ୍ଲକ୍ ଓ ତା'ଠାରୁ ତଳସ୍ତରରେ କାର୍ଯ୍ୟ କରୁଥିବା ସ୍ୱାସ୍ଥ୍ୟସେବୀମାନଙ୍କୁ ଏହି ସୁବିଧା ଦିଆଗଲା ।

**ଏହି ପୁରସ୍କାର ପ୍ରଦାନର ଉଦ୍ଦେଶ୍ୟ -**

୧. ସ୍ୱାସ୍ଥ୍ୟସେବୀମାନଙ୍କ ଉତ୍ସର୍ଗୀକୃତ ସେବାକୁ ସ୍ୱୀକୃତି ପ୍ରଦାନ କରିବା ।

୨. ଆଗ ଅପେକ୍ଷା ଏଣିକି ଉତ୍ତମ ସ୍ୱାସ୍ଥ୍ୟସେବା ଯୋଗାଇ ଦେବାପାଇଁ ଅନ୍ୟ ସ୍ୱାସ୍ଥ୍ୟସେବୀମାନଙ୍କୁ ଉତ୍ସାହିତ କରିବା ।

୩. ସୁଦୂର ଗ୍ରାମାଞ୍ଚଳର ଲୋକଙ୍କୁ ଉତ୍ସର୍ଗୀକୃତ ସ୍ୱାସ୍ଥ୍ୟସେବା ଯୋଗାଇ ଦେବାର ସୁଯୋଗ ସୃଷ୍ଟି କରିବା ।

୪. ଦୂରଦୂରାନ୍ତ ଅଞ୍ଚଳରେ କାର୍ଯ୍ୟରତ ସ୍ୱାସ୍ଥ୍ୟସେବୀମାନଙ୍କ ପାଇଁ ପ୍ରୋତ୍ସାହନ ବ୍ୟବସ୍ଥା କରିବା ।

୫. ଏଭଳି ପୁରସ୍କାର ପ୍ରଦାନ ଉତ୍ସବ ଜରିଆରେ ସମଗ୍ର ରାଜ୍ୟରେ ସ୍ୱାସ୍ଥ୍ୟସେବା କ୍ଷେତ୍ରରେ ପ୍ରଭାବ ପକାଇବା ।

ନିମ୍ନଲିଖିତ ପୁରସ୍କାରଗୁଡ଼ିକ ଆଠଟି ଶ୍ରେଣୀର କର୍ମଚାରୀମାନଙ୍କୁ ଦେବାବେଳେ ଧନରାଶି (ବ୍ୟାଙ୍କ୍ ଡ୍ରାଫ୍ଟ) ସହିତ ଗୋଟିଏ ଲେଖାଏଁ ସ୍ୱର୍ଣ୍ଣ ପଦକ, ଗୋଟିଏ ଉପାୟନ ଓ ଗୋଟିଏ ପ୍ରମାଣପତ୍ର (ସାର୍ଟିଫିକେଟ) ଦେବାପାଇଁ ବ୍ୟବସ୍ଥା ରହିଛି ।



୧. ମହାତ୍ମା ଗାନ୍ଧୀ ପୁରସ୍କାର - ଏଲୋପ୍ୟାଥିକ ଡାକ୍ତରଙ୍କ ପାଇଁ - ଟ.୨୫,୦୦୦/-

୨. ଧନ୍ୱନ୍ତରୀ ପୁରସ୍କାର - ଆୟୁର୍ବେଦିକ ଡାକ୍ତରଙ୍କ ପାଇଁ - ଟ.୨୫,୦୦୦/-

୩. ନବକୃଷ୍ଣ ଚୌଧୁରୀ ପୁରସ୍କାର - ହୋମିଓପ୍ୟାଥିକ ଡାକ୍ତରଙ୍କ ପାଇଁ - ଟ.୨୫,୦୦୦/-

୪. ଗୋପବନ୍ଧୁ ପୁରସ୍କାର - ଫାର୍ମାସିଷ୍ଟମାନଙ୍କ ପାଇଁ - ଟ.୨୦,୦୦୦/-

୫. ମଦର ଟେରେସା ପୁରସ୍କାର - ଷ୍ଟାଫ୍ ନର୍ସମାନଙ୍କ ପାଇଁ - ଟ.୨୦,୦୦୦/-

୬. ରମାଦେବୀ ପୁରସ୍କାର - ମହିଳାସ୍ୱାସ୍ଥ୍ୟ କର୍ମୀମାନଙ୍କ ପାଇଁ - ଟ.୨୦,୦୦୦/-

୭. ମଧୁସୂଦନ ପୁରସ୍କାର - ପୁରୁଷ ସ୍ୱାସ୍ଥ୍ୟକର୍ମୀମାନଙ୍କ ପାଇଁ - ଟ.୨୦,୦୦୦/-

୮. ମୋହନ ନାୟକ ପୁରସ୍କାର - ଆଟେଣ୍ଡାଣ୍ଟ୍ ବା ସଫେଇ କର୍ମଚାରୀଙ୍କ ପାଇଁ - ଟ.୧୫,୦୦୦/-

**ସ୍ୱାସ୍ଥ୍ୟ ସେବୀଙ୍କୁ ବାଛିବା ପାଇଁ ନିର୍ଦ୍ଧାରିତ ଯୋଗ୍ୟତାର ମାନଦଣ୍ଡ :**

୧. ବ୍ଲକ୍ କିମ୍ବା ତା'ଠାରୁ ତଳସ୍ତରରେ ଅତି କମ୍‌ରେ ୧୦ ବର୍ଷ ଗୋଷ୍ଠୀ ସ୍ୱାସ୍ଥ୍ୟସେବା ପ୍ରଦାନ କରିଥିବେ ।

୨. ଚାକିରିକାଳ ଭିତରେ ତାଙ୍କ ବିରୁଦ୍ଧରେ କୌଣସି ବିଭାଗୀୟ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇ ନଥିବ ।

୩. ଚାକିରିକାଳ ଭିତରେ ତାଙ୍କ ଚରିତ୍ର ପଞ୍ଜିକାରେ କୌଣସି ପ୍ରତିକୂଳ ମନ୍ତବ୍ୟ ନଥିବ ।

**ବାଛିବା ପାଇଁ ମୌଳିକ ମାନଦଣ୍ଡ :**

- କାର୍ଯ୍ୟରେ ନିୟମିତ ଯୋଗ ଦେଉଥିବେ ।
- କର୍ତ୍ତୃପକ୍ଷଙ୍କ ପ୍ରତି ଉତ୍ତମ ବ୍ୟବହାର କରୁଥିବେ ।
- ଲୋକଙ୍କ ସହିତ ସୁସମ୍ପର୍କ ରଖୁଥିବେ ।
- ଗୁଣାତ୍ମକ ସେବା ଯୋଗାଇ ଦେବାରେ ଦକ୍ଷ ବୋଲି କାର୍ଯ୍ୟାଳୟର ମୁଖ୍ୟଙ୍କଠାରୁ ପ୍ରମାଣପତ୍ର ପାଇଥିବେ ।
- ସମସ୍ତ ସ୍ୱାସ୍ଥ୍ୟ କାର୍ଯ୍ୟକ୍ରମରେ ସର୍ବାଧିକ ସଫଳତା ହାସଲ କରିଥିବେ ।

ଏ ସମସ୍ତ ଯୋଗ୍ୟତା ଓ ମାନଦଣ୍ଡ ଭିତ୍ତିରେ ୨୦୦୧-୦୨ ମସିହା ପାଇଁ ରାଜ୍ୟର ଆଠ ଜଣ ସ୍ୱାସ୍ଥ୍ୟସେବୀ ପୁରସ୍କାର ଲାଭ କରିବା ପାଇଁ ଯୋଗ୍ୟ ବିବେଚିତ ହୋଇଛନ୍ତି । ଆମର ଆଶା ଓ ବିଶ୍ୱାସ, ଅନ୍ୟମାନେ ମଧ୍ୟ ଜନସାଧାରଣଙ୍କୁ ଉତ୍ସର୍ଗୀକୃତ ସ୍ୱାସ୍ଥ୍ୟସେବା ପ୍ରଦାନ କରି ଭବିଷ୍ୟତରେ ଏଇଭଳି ପୁରସ୍କାର ପାଇବା ପାଇଁ ଚେଷ୍ଟା କରିବେ ।

**ଗତ ୨୦୦୧-୦୨ ବର୍ଷ ପାଇଁ ଉତ୍ସର୍ଗୀକୃତ ସ୍ୱାସ୍ଥ୍ୟ ସେବା ପୁରସ୍କାର ପ୍ରାପ୍ତ ସ୍ୱାସ୍ଥ୍ୟକର୍ମୀଙ୍କ ସମ୍ପର୍କରେ ବିବରଣୀ**

| ପୁରସ୍କାର ନାମ | ପୁରସ୍କୃତ ବ୍ୟକ୍ତି |
|---|---|
| ୧. ମହାତ୍ମା ଗାନ୍ଧୀ ପୁରସ୍କାର | ଡାକ୍ତର କେ.ସି. ପରିଡ଼ା ଏଲ୍,ଟି.ଆର୍.ଏମ୍.ଓ. ଡି.ଏଚ୍.ଏଚ୍., ବାଲେଶ୍ୱର |
| ୨. ଧନ୍ୱନ୍ତରୀ ପୁରସ୍କାର | ଡାକ୍ତର ଶ୍ୟାମସୁନ୍ଦର ମିଶ୍ର ଏ.ଏମ୍.ଓ., ଜି.ଏ.ଡ଼ି., ଗ୍ରାମ/ପୋ- ଶିଙ୍ଘାରୀ, ତରଭା, ସୋନପୁର |
| ୩. ନବକୃଷ୍ଣ ଚୌଧୁରୀ ପୁରସ୍କାର | ଡାକ୍ତର ତାରାକାନ୍ତ ଦାସ ଏଚ୍.ଏମ୍.ଓ. ସରକାରୀ ଡାକ୍ତରଖାନା, ଖଡ଼ିକାପଡ଼ା, ମୟୂରଭଞ୍ଜ |
| ୪. ମଧୁସୂଦନ ପୁରସ୍କାର | ଶ୍ରୀ ହରିଶ ଚନ୍ଦ୍ର ପଣ୍ଡା ଏମ୍.ପି.ଏଚ୍.ଡବ୍ଲ୍ୟୁ.(ଏମ୍.) ପି.ଏଚ୍.ସି.- ପଦ୍ମପୁର, ରାୟଗଡ଼ା |
| ୫. ଗୋପବନ୍ଧୁ ପୁରସ୍କାର | ଶ୍ରୀ ଆର୍.ସି. ସେନାପତି, ଫାର୍ମାସିଷ୍ଟ, ପି.ଏଚ୍.ସି.- ପଟାଙ୍ଗୀ, କୋରାପୁଟ |
| ୬. ରମାଦେବୀ ପୁରସ୍କାର | ଶ୍ରୀମତୀ ବିଦ୍ୟୁମୁଖୀ ନନ୍ଦ ଏମ୍.ପି.ଏଚ୍.ଡବ୍ଲ୍ୟୁ (ଏଫ୍.) ସି.ଏଚ୍.ସି.- ବେଲପଡ଼ା, ବଲାଙ୍ଗୀର |
| ୭. ମଦରଟେରେସା ପୁରସ୍କାର | ଶ୍ରୀମତୀ ସୁରଥା ପଟେଲ ଏମ୍.ପି.ଏଚ୍.ଏସ୍. (ଏଫ୍), ପିପିସି, ଡି.ଏଚ୍.ଏଚ୍. ଝାରସୁଗୁଡ଼ା |
| ୮. ମୋହନ ନାୟକ ପୁରସ୍କାର | ଶ୍ରୀ ଶ୍ୟାମ ବେହେରା ଡ୍ରେସର, ଡି.ଏଚ୍.ଏଚ୍., ଫୁଲବାଣୀ, ଜି.- କନ୍ଧମାଳ |

* ଗବେଷଣା ଓ ତଥ୍ୟ ସୂଚନା ଶାଖା, ସୂଚନା ଓ ଲୋକ ସଂପର୍କ ବିଭାଗ ସୌଜନ୍ୟରୁ






# ସମ୍ବାଦ ପରିକ୍ରମା



## ଲାଂଜିଗଡ଼ ବକ୍ସାଇଟ୍ ଖଣି ଉନ୍ନତି ନିମନ୍ତେ ଓଡ଼ିଶା ଖଣି ନିଗମ ଓ ବେଦାନ୍ତ ଆଲୁମିନା ମଧ୍ୟରେ ଚୁକ୍ତି ସ୍ୱାକ୍ଷରିତ

କଳାହାଣ୍ଡି ଜିଲ୍ଲାର ଲାଂଜିଗଡ଼ଠାରେ ୪ ହଜାର କୋଟି ଟଙ୍କା ବ୍ୟୟ ଅଟକଳରେ ପ୍ରତିଷ୍ଠିତ ହେବାକୁ ଯାଉଥିବା ଆଲୁମିନିୟମ୍ କାରଖାନା ପାଇଁ ଆବଶ୍ୟକ ବକ୍ସାଇଟ୍ ଉତ୍ତୋଳନ କରିବାକୁ ଓଡ଼ିଶା ଖଣି ନିଗମ ଏବଂ ବେଦାନ୍ତ ଆଲୁମିନିୟମ ମଧ୍ୟରେ ଏକ ଚୁକ୍ତିନାମା ସ୍ୱାକ୍ଷରିତ ହୋଇଛି ।

ସଚିବାଳୟଠାରେ ଇସ୍ପାତ ଓ ଖଣି ବିଭାଗ ପ୍ରମୁଖ ଶାସନ ସଚିବ ଶ୍ରୀ ଭାସ୍କର ଚାଟାର୍ଜୀଙ୍କ ଉପସ୍ଥିତିରେ ଓଡ଼ିଶା ଖଣି ନିଗମର ପରିଚାଳନା ନିର୍ଦ୍ଦେଶକ ଶ୍ରୀ ସଂଜୀବ ଚୋପ୍ରା ଏବଂ ବେଦାନ୍ତ ଆଲୁମିନିୟମ୍‌ର ବ୍ୟବସାୟ ନିର୍ଦ୍ଦେଶକ ଶ୍ରୀ ସନ୍ଦିପ ଗୋଖ୍‌ଲେଙ୍କ ମଧ୍ୟରେ ଏହି ଚୁକ୍ତିନାମା ସ୍ୱାକ୍ଷରିତ ହୋଇଥିଲା । ଲାଂଜିଗଡ଼ଠାରେ ପ୍ରତିଷ୍ଠିତ ହେଉଥିବା ଷ୍ଟେରେଲାଇଟ୍ ଆଲୁମିନିୟମ୍ କାରଖାନା ପାଇଁ ଆବଶ୍ୟକ ହେବାକୁ ଥିବା ୧୫୦ ମିଲିୟନ୍ ଟନ୍ ବକ୍ସାଇଟ୍ ମଧ୍ୟରୁ ସେଠାରୁ ପ୍ରାୟ ୭୫ ମିଲିୟନ୍ ଟନ୍ ବକ୍ସାଇଟ୍ ମିଳିପାରିବ । ଦେଶର ଆଲୁମିନିୟମ୍ ଚାହିଦା ପୂରଣ ନିମନ୍ତେ ଏହି କାରଖାନା ପ୍ରତିଷ୍ଠା କରାଯାଉଛି । ଉକ୍ତ କାରଖାନାର ବିଦ୍ୟୁତ୍ ଚାହିଦା ପୂରଣ କରିବା ପାଇଁ ବେଦାନ୍ତ ଆଲୁମିନିୟମ୍ ପକ୍ଷରୁ ୯୦ ମେଗାୱାଟର ଏକ କ୍ୟାପ୍‌ଟିଭ୍ ବିଦ୍ୟୁତ କେନ୍ଦ୍ର ପ୍ରତିଷ୍ଠା କରାଯିବ । ମୁଖ୍ୟ କାରଖାନା ପାଇଁ ଆବଶ୍ୟକ ଜମି ଅଧିଗ୍ରହଣ କାର୍ଯ୍ୟ ସଂପୂର୍ଣ୍ଣ ହୋଇଛି ଏବଂ କାର୍ଯ୍ୟ ଆଗେଇ ଚାଲିଛି । ଆସନ୍ତା ୨ରୁ ୩ ବର୍ଷ ମଧ୍ୟରେ ଏହା ସଂପୂର୍ଣ୍ଣ ହୋଇ ଉତ୍ପାଦନକ୍ଷମ ହେବାର ଲକ୍ଷ୍ୟ ରହିଛି । ଏହି ପ୍ରକଳ୍ପ ନିମନ୍ତେ କେନ୍ଦ୍ର ଜଂଗଲ ଓ ପରିବେଶ ବିଭାଗର ମଂଜୁରୀ ମିଳି ସାରିଥିବା ପ୍ରକାଶ । ୪ ହଜାର କୋଟି ଟଙ୍କା ବ୍ୟୟ ଅଟକଳରେ ପ୍ରତିଷ୍ଠିତ ହେଉଥିବା ଏହି କାରଖାନା ଦେଶର ଏକ ବୃହତ୍ ଆଲୁମିନିୟମ୍ କାରଖାନା ବୋଲି କୁହାଯାଉଛି । ଅଷ୍ଟ୍ରେଲିଆର ଓରଲି କଂପାନୀର ବୈଷୟିକ ଜ୍ଞାନ କୌଶଳ ସହଯୋଗରେ ଇଂଜିନିୟର୍ସ ଇଣ୍ଡିଆ ଦ୍ୱାରା ନିର୍ମାଣାଧୀନ ଏହି କାରଖାନା ରାଜ୍ୟର ଆର୍ଥିକ ବିକାଶ ଓ ବ୍ୟାପକ ଆତ୍ମନିଯୁକ୍ତିର ସୁଯୋଗ ପ୍ରଦାନ କରିପାରିବ ବୋଲି ଇସ୍ପାତ ଓ ଖଣି ବିଭାଗ ସୂତ୍ରରୁ ପ୍ରକାଶ ।

## ୨୦୦୪-୦୫ ଆର୍ଥିକ ବର୍ଷରେ ରାଜ୍ୟର ୧୯ ଗୋଟି ଜିଲ୍ଲାକୁ ଏସ୍.ଜି.ଆର୍.ୱାଇ. ଯୋଜନାରେ ୧୫୦ରୁ ୨୦୦ କୋଟି ଟଙ୍କା କେନ୍ଦ୍ରୀୟ ଅନୁଦାନ ମିଳିବ

୨୦୦୪-୦୫ ଆର୍ଥିକ ବର୍ଷ ପାଇଁ କେନ୍ଦ୍ର ସରକାରଙ୍କ ଅର୍ଥନୈତିକ ବ୍ୟାପାର ସମ୍ବନ୍ଧୀୟ କ୍ୟାବିନେଟ୍ କମିଟି (ସି.ସି.ଇ.ଏ.) ଦେଶର ୧୫୦ଟି ପଛୁଆ ଜିଲ୍ଲାକୁ ଖାଦ୍ୟ ବିନିମୟରେ କର୍ମ ଯୋଗାଣ ଯୋଜନା ପାଇଁ ୨୫୦୦ କୋଟି ଟଙ୍କା ମଂଜୁର କରିଛନ୍ତି । ସେଥିମଧ୍ୟରୁ ଓଡ଼ିଶାର ୧୯ ଗୋଟି ପଛୁଆ ଜିଲ୍ଲା ୧୫୦ରୁ ୨୦୦ କୋଟି ଟଙ୍କା ଅନୁଦାନ ମିଳିଛି । ଏହି ଅନୁଦାନ କେନ୍ଦ୍ର ସରକାର ଶତ ପ୍ରତିଶତ ବହନ କରିବେ । ଏହି ଅର୍ଥ ସଂପୂର୍ଣ୍ଣ ଗ୍ରାମ୍ୟ ସ୍ୱରୋଜଗାର (ଏସ୍.ଜି.ଆର୍.ୱାଇ.) ଯୋଜନାରେ ବିନିଯୋଗ କରାଯିବ । ଏହି ଅନୁଦାନ ମଧ୍ୟରୁ ଶତକଡ଼ା ୬୦ ଭାଗ ଅର୍ଥ ଆକାରରେ ଓ ୪୦ ପ୍ରତିଶତ ଖାଦ୍ୟଶସ୍ୟ ଆକାରରେ ମିଳିବ ।

ଚଳିତ ଆର୍ଥିକ ବର୍ଷ ଶେଷ ହେବାକୁ ଆଉ ପାଞ୍ଚମାସ ଥିବା ଦୃଷ୍ଟିରୁ ସଂପୃକ୍ତ ଜିଲ୍ଲାର ଗ୍ରାମପଞ୍ଚାୟତ, ପଞ୍ଚାୟତ ସମିତି, ଜିଲ୍ଲା ପରିଷଦ ଏବଂ ଜିଲ୍ଲା ଗ୍ରାମ୍ୟ ଉନ୍ନୟନ ସଂସ୍ଥା ଏହି ଅନୁଦାନ ଅର୍ଥକୁ ତାଙ୍କ ଜିଲ୍ଲାମାନଙ୍କରେ ସଂପୂର୍ଣ୍ଣ ଏବଂ ସଠିକ୍ ଭାବେ ଯେପରି ବିନିଯୋଗ କରନ୍ତି, ସେଥିପ୍ରତି ଜିଲ୍ଲାପାଳମାନେ ସ୍ୱତନ୍ତ୍ର ଦୃଷ୍ଟି ଦେବାକୁ ନିର୍ଦ୍ଦେଶ ଦିଆଯାଇଛି । ରାଜ୍ୟର ଏହି ୧୯ ଗୋଟି ଜିଲ୍ଲା ହେଲା - ବଲାଙ୍ଗୀର, ବୌଦ, ଦେବଗଡ଼,

ଢେଙ୍କାନାଳ, ଗଜପତି, ଗଂଜାମ, ଝାରସୁଗୁଡ଼ା, କଳାହାଣ୍ଡି, କନ୍ଧମାଳ, କେନ୍ଦୁଝର, କୋରାପୁଟ, ମାଲକାନାଗିରି, ମୟୂରଭଂଜ, ନବରଂଗପୁର, ନୟାଗଡ଼, ନୂଆପଡ଼ା, ରାୟଗଡ଼ା, ସୋନପୁର ଓ ସୁନ୍ଦରଗଡ଼ ।

ରାଜ୍ୟରେ ସଂପୂର୍ଣ୍ଣ ଗ୍ରାମ୍ୟ ସ୍ୱରୋଜଗାର ଯୋଜନାର ସଫଳ ରୂପାୟନ ନିମନ୍ତେ ଆଗାମୀ ପାଞ୍ଚବର୍ଷ ପାଇଁ ପ୍ରକୃତ ଚିତ୍ର ସହ ଯୋଜନା ପ୍ରସ୍ତୁତ କରିବା ନିମନ୍ତେ କେନ୍ଦ୍ର ସରକାରଙ୍କ ଗ୍ରାମ୍ୟ ଉନ୍ନୟନ ବିଭାଗର ଯୁଗ୍ମ ଶାସନ ସଚିବ ଶ୍ରୀ ଉଇଲ୍‌ଫ୍ରେଡ୍ ଲାକ୍ରା ପରାମର୍ଶ ଦେଇଥିବା ଜଣାଯାଇଛି । ପରବର୍ତ୍ତୀ ଆର୍ଥିକ ବର୍ଷମାନଙ୍କରେ ଏହି ପ୍ରସ୍ତୁତ ଯୋଜନାକୁ ଭିତ୍ତିକରି କେନ୍ଦ୍ର ସରକାର ଆର୍ଥିକ ଅନୁଦାନ ପ୍ରଦାନ କରିବେ ବୋଲି ଦିଲ୍ଲୀସ୍ଥିତ ରେସିଡେଣ୍ଟ କମିଶନରଙ୍କ କାର୍ଯ୍ୟାଳୟ ସୂତ୍ରରୁ ପ୍ରକାଶ ।

## ରାଜ୍ୟରେ ରାଷ୍ଟ୍ରୀୟ ସମବାୟ ଉନ୍ନୟନ ନିଗମ ସହାୟତାରେ ଚାଲୁଥିବା ସମସ୍ତ ପ୍ରକଳ୍ପଗୁଡ଼ିକର କାର୍ଯ୍ୟ ଶୀଘ୍ର ଶେଷ ହେବ : ସମବାୟ ମନ୍ତ୍ରୀ ଶ୍ରୀମତୀ ପାଢ଼ୀ

ରାଜ୍ୟରେ ରାଷ୍ଟ୍ରୀୟ ସମବାୟ ଉନ୍ନୟନ ନିଗମ ଆର୍ଥିକ ସହାୟତାରେ ଚାଲୁଥିବା ପ୍ରକଳ୍ପଗୁଡ଼ିକର କାର୍ଯ୍ୟ ଶୀଘ୍ର ଶେଷ କରାଯିବ ବୋଲି ସମବାୟ ମନ୍ତ୍ରୀ ଶ୍ରୀମତୀ ସୁରମା ପାଢ଼ୀ ପ୍ରକାଶ କରିଛନ୍ତି ।

ଗତ ନଭେମ୍ବର ୫ ତାରିଖରେ ତାଙ୍କ ବିଧାନସଭା କକ୍ଷରେ ଅନୁଷ୍ଠିତ ଏକ ସମୀକ୍ଷା ବୈଠକରେ ରାଜ୍ୟରେ ନିଗମ ସହାୟତାରେ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ କାର୍ଯ୍ୟ ସଂପର୍କରେ ରାଷ୍ଟ୍ରୀୟ ସମବାୟ ଉନ୍ନୟନ ନିଗମର ଆଂଚଳିକ ନିର୍ଦ୍ଦେଶକ ଶ୍ରୀ ପଥିକ ଚଟୋପାଧାୟ ସମ୍ୟକ୍ ଆଲୋକପାତ କରିଥିଲେ । ଏହି ନିଗମ ସହାୟତାରେ ଓଡ଼ିଶାରେ ଅଧିକ କାର୍ଯ୍ୟ କରିବାକୁ ସେ ମନ୍ତ୍ରୀ ଶ୍ରୀମତୀ ପାଢ଼ୀଙ୍କୁ ଅନୁରୋଧ କରିଥିଲେ । ରାଜ୍ୟର କ୍ଷୁଦ୍ର ନାମମାତ୍ର ଚାଷୀଙ୍କ ନିକଟରେ ଏହି ନିଗମର ସହାୟତା ପହଞ୍ଚାଇବାକୁ ଶ୍ରୀମତୀ ପାଢ଼ୀ ତାଙ୍କୁ ପରାମର୍ଶ ଦେଇଥିଲେ । ସମବାୟ ବିଭାଗର ପ୍ରମୁଖ ଶାସନ ସଚିବ ଶ୍ରୀ ଏଚ୍.ଏସ୍. ଚହର ରାଜ୍ୟକୁ ଏକ କୋଟି ୫୦ ଲକ୍ଷରୁ ଅଧିକ ଅର୍ଥ ମଂଜୁର କରିବାକୁ ସେ ଆଂଚଳିକ ନିର୍ଦ୍ଦେଶକଙ୍କୁ ପରାମର୍ଶ ଦେଇଥିଲେ । ସମବାୟ ନିବନ୍ଧକ ଶ୍ରୀ ସୁଦର୍ଶନ ନାୟକ ସମନ୍ୱିତ ସମବାୟ ଉନ୍ନୟନ ଯୋଜନାରେ ସମବାୟ ବିଭାଗକୁ ସିଧାସଳଖ ଅର୍ଥ ପ୍ରଦାନ କଲେ ପ୍ରକଳ୍ପଗୁଡ଼ିକର କାର୍ଯ୍ୟ ଶୀଘ୍ର ଆରମ୍ଭ ହୋଇପାରିବ ଏବଂ ଅଯଥା ବିଳମ୍ବରୁ ରକ୍ଷା ମିଳିବ ବୋଲି କହିଥିଲେ । କେ.ବି.କେ. ଜିଲ୍ଲା ଅନ୍ତର୍ଗତ ରାୟଗଡ଼ାଠାରେ ଆରମ୍ଭ ହୋଇଥିବା ଶୀତଳଭଣ୍ଡାର ଓ ନିମାପଡ଼ା ଶୀତଳଭଣ୍ଡାର କାର୍ଯ୍ୟ ଶୀଘ୍ର ଶେଷ ହେବ ବୋଲି ବୈଠକରେ ସର୍ବସମ୍ମତ ମତ ପ୍ରକାଶ ପାଇଥିଲା । ଏହିସବୁ କାର୍ଯ୍ୟଗୁଡ଼ିକର ସମୀକ୍ଷା ପାଇଁ ଏକ ଉଚ୍ଚସ୍ତରୀୟ କମିଟି କୃଷି ଉତ୍ପାଦନ କମିଶନରଙ୍କ ଅଧ୍ୟକ୍ଷତାରେ ଗଠନ କରାଯିବ ।

ଏହି ବୈଠକରେ ଓଡ଼ିଶା ରାଜ୍ୟ ସମବାୟ ବ୍ୟାଙ୍କର ପରିଚାଳନା ନିର୍ଦ୍ଦେଶକ ଶ୍ରୀ ଆର୍.ଏନ୍. ଦାଶ, ସମବାୟ ବିଭାଗର ଅର୍ଥ ପରାମର୍ଶଦାତା ଏବଂ ଅନ୍ୟାନ୍ୟ ବିଭାଗୀୟ ଅଧିକାରୀ ଉପସ୍ଥିତ ରହି ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

## ରାଜ୍ୟ ହସ୍ତକଳା ବିକାଶ ପ୍ରତିଷ୍ଠାନ ଗଠିତ

ରାଜ୍ୟରେ ହସ୍ତଶିଳ୍ପର ବିକାଶ, ବିଶେଷକରି ହସ୍ତଶିଳ୍ପର ରପ୍ତାନୀ ବୃଦ୍ଧି ପାଇଁ ବଜାରାଭିମୁଖୀ ଡିଜାଇନ୍ ପ୍ରସ୍ତୁତି, ଉନ୍ନତ ତାଲିମ୍ ବ୍ୟବସ୍ଥା, ଆଧୁନିକ ଯନ୍ତ୍ରପାତି ବ୍ୟବହାର, ବଜାର ତଥା ରପ୍ତାନୀ ସମ୍ବନ୍ଧୀୟ ସୂଚନା ତଥା ଆନୁଷଙ୍ଗିକ ଆବଶ୍ୟକତାକୁ ଦୃଷ୍ଟିରେ ରଖି ବିଭିନ୍ନ କାର୍ଯ୍ୟକ୍ରମ ରୂପାୟିତ କରିବା ପାଇଁ ସରକାରଙ୍କ ପୃଷ୍ଠପୋଷକତାରେ ଏକ ସଂସ୍ଥା ଗଠନ କରିବା ବହୁଦିନ ଧରି ବିଚାରାଧୀନ ଥିଲା । ଇତିମଧ୍ୟରେ ‘ରାଜ୍ୟ ହସ୍ତକଳା ବିକାଶ ପ୍ରତିଷ୍ଠାନ’ ନାମକ ଏକ ସଂସ୍ଥା ଶିଳ୍ପ ସଚିବଙ୍କ ଅଧ୍ୟକ୍ଷତାରେ ଗଠନ କରାଯାଇ ପଂଜୀକୃତ କରାଯାଇଛି । ଏହି ପ୍ରତିଷ୍ଠାନ ଗଠନ ଦ୍ୱାରା ବିଭିନ୍ନ ବାହ୍ୟ ସଂସ୍ଥା ତଥା ଭାରତ ସରକାରଙ୍କ ବିଭିନ୍ନ ମନ୍ତ୍ରଣାଳୟରୁ ରାଜ୍ୟ ହସ୍ତଶିଳ୍ପର ବିକାଶ ପାଇଁ ଅଧିକ ଆର୍ଥିକ ସହାୟତା ଅଣାଯାଇପାରିବ ଏବଂ ଏହି ସଂସ୍ଥା ଜରିଆରେ ଉନ୍ନତମାନର ତାଲିମ୍ ପ୍ରଦାନ କରାଯାଇ ବିଶ୍ୱବିଦ୍ୟାଳୟ ମାନ୍ୟତା ପ୍ରଦାନ, ରପ୍ତାନୀ ବୃଦ୍ଧି ପାଇଁ ନୂତନ ଡିଜାଇନ୍ ପ୍ରସ୍ତୁତି, ରାଜ୍ୟ ବାହାରେ ଓଡ଼ିଶା ହସ୍ତଶିଳ୍ପ ପ୍ରଦର୍ଶନୀ ପ୍ରଚାର ଓ ପ୍ରସାର, ରପ୍ତାନୀକା ତଥା କ୍ରେତା ଓ ବିକ୍ରେତାଙ୍କ ମଧ୍ୟରେ ସଂପର୍କ ସ୍ଥାପନ, ରପ୍ତାନୀ ସମ୍ବନ୍ଧୀୟ ସୂଚନା ତଥା ‘କ୍ଲଷ୍ଟର ଡେଭଲପ୍‌ମେଣ୍ଟ’ ଯୋଜନା ମାଧ୍ୟମରେ ଆତ୍ମନିଯୁକ୍ତି ସୃଷ୍ଟି ଇତ୍ୟାଦି କାର୍ଯ୍ୟକ୍ରମ ଗ୍ରହଣ ବ୍ୟବସ୍ଥା କରାଯାଇଛି ।

ଏହି ପ୍ରତିଷ୍ଠାନ ଜରିଆରେ ଏକ ଅତ୍ୟାଧୁନିକ ହସ୍ତକଳା ଡିଜାଇନ୍ ସେଣ୍ଟର ଭୁବନେଶ୍ୱରଠାରେ ପ୍ରତିଷ୍ଠା କରିବା ପାଇଁ କାର୍ଯ୍ୟକ୍ରମ ଆରମ୍ଭ ହୋଇଛି ଏବଂ ଏଥିପାଇଁ ଆବଶ୍ୟକୀୟ ଅର୍ଥ ଭାରତ ସରକାରଙ୍କ ଦ୍ୱାରା ଯୋଗାଇ ଦେବାର ଅନୁମୋଦନ ଲାଭ କରିସାରିଛି । ଏହି ଡିଜାଇନ୍ ସେଣ୍ଟର ଏକ କୋଟି ଟଙ୍କା ବ୍ୟୟରେ ପ୍ରତିଷ୍ଠା କରାଯିବ ଓ ଏହା ପ୍ରତିଷ୍ଠା ପରେ ଓଡ଼ିଶା ହସ୍ତଶିଳ୍ପ କ୍ଷେତ୍ରରେ ବ୍ୟାପକ ପରିବର୍ତ୍ତନ ଆସିପାରିବ ।

ଏହି ନୂତନ ରାଜ୍ୟ ହସ୍ତକଳା ବିକାଶ ପ୍ରତିଷ୍ଠାନ ଭୁବନେଶ୍ୱରର ଗଣ୍ଡମୁଣ୍ଡାଠାରେ ଥିବା ହସ୍ତଶିଳ୍ପ ତାଲିମ କେନ୍ଦ୍ରରେ କାର୍ଯ୍ୟ କରିବ ଓ ସରକାରଙ୍କ ଏହି ପଦକ୍ଷେପ ହସ୍ତଶିଳ୍ପର ବିକାଶ କ୍ଷେତ୍ରରେ ଅତ୍ୟନ୍ତ ସହାୟକ ହେବା ଆଶା କରାଯାଏ ।




# କଳିଙ୍ଗର ନୌବାଣିଜ୍ୟ




ଓଡ଼ିଶାର ଅତୀତ ଇତିହାସ ଗୌରବମୟ ଓ ମହିମାମଣ୍ଡିତ ଥିଲା । ଅପୂର୍ବ ସାମରିକ ପରାକାଷ୍ଠା ଦୀର୍ଘକାଳ ଏହାର ସ୍ୱାଧୀନତା ବଜାୟ ରଖିଥିଲା । ଯାହାଫଳରେ ସାହିତ୍ୟ, ସଂସ୍କୃତି, କଳା, ସ୍ଥାପତ୍ୟ, ଭାସ୍କର୍ଯ୍ୟ ନୌବାଣିଜ୍ୟ କ୍ଷେତ୍ରରେ ପ୍ରାଚୀନ କଳିଙ୍ଗ ବା ଓଡ଼ିଶା ଭାରତବର୍ଷରେ ତା'ର ଏକ ସ୍ୱତନ୍ତ୍ର ସ୍ଥାନ ସୃଷ୍ଟି କରିପାରିଥିଲା ।

କଳିଙ୍ଗ ଏକଦା ଗଙ୍ଗାଠାରୁ ଗୋଦାବରୀ ଯାଏ ବିସ୍ତୃତ ବିଶାଳ ଭୂଖଣ୍ଡ ଥିଲା । ଏକ ଦୁର୍ଜୟ, ଦୁଃସାହସୀ ଜାତି ରୂପେ କଳିଙ୍ଗବାସୀଙ୍କ ଶକ୍ତି ଓ ଖ୍ୟାତି ଥିଲା ଅପ୍ରମିତ । ସବୁ କଳା ଓ କୃତିରେ ସେ ଥିଲା କୀର୍ତ୍ତିମାନ । ଶୌର୍ଯ୍ୟ - ବୀର୍ଯ୍ୟ - ଐଶ୍ୱର୍ଯ୍ୟରେ ମହୀୟାନ । ତା'ର ପ୍ରାଚୁର୍ଯ୍ୟ ଓ ପରାକ୍ରମର ନିଦର୍ଶନ ହେଉଛି ପ୍ରାଚୀନ ନୌବାଣିଜ୍ୟ । ସମୁଦ୍ରଯାତ୍ରାରେ ତା'ର ଦୁର୍ବାର ଶକ୍ତି ଓ ଦୁର୍ଦ୍ଦମନୀୟ ସଂକଳ୍ପ ପରିଦୃଷ୍ଟ । ସେ ଲଂଘିଚି । ଦୁର୍ଗମ ସାଗର ସୁଦୂର ଦରିଆପାରି ଦେଶରେ ଗଢ଼ି ଦେଇଛି କେତେ ଉପନିବେଶ । ଶାସନ କରିଛି କଳିଙ୍ଗର ରାଜବଂଶ । ଭାରତର ପୂର୍ବ ଦ୍ୱୀପପୁଞ୍ଜରେ ଉଦ୍‌ଭାସିତ ହୋଇ ଉଠିଛି ଉତ୍କଳୀୟ କଳା-ଭାସ୍କର୍ଯ୍ୟ ଓ ସ୍ଥାପତ୍ୟର ଅପଲକ ଝଲକ । ବହି ଯାଇଛି କଳିଙ୍ଗ ସଂସ୍କୃତିର ଅବାରିତ ସ୍ରୋତ । ଓଡ଼ିଆ ସାଧବପୁଅ ବୋଇତରେ ବୋହି ଆଣିଛି ସ୍ୱଦେଶକୁ ଅକଳନ ଧନ, ଦଉଲତ ଓ ତା'ର ଜନ୍ମଭୂମି ହୋଇଛି ଲକ୍ଷ୍ମୀଙ୍କ ନିତ୍ୟ ନିବାସ ।

କଳିଙ୍ଗ ଉପକୂଳ ସେତେବେଳେ ଥିଲା ଦକ୍ଷିଣ-ପୂର୍ବ ଏସିଆକୁ ସାଗର ଯାତ୍ରାର ଏକମାତ୍ର ପ୍ରବେଶ ଦ୍ୱାର । ପାଲୁର, ପିଥୁନ୍ଦା, ଚେଳିତାଲୋ, ତାମ୍ରଲିପ୍ତି, ପୁରୀ, କୋଣାର୍କ, ଚାନ୍ଦବାଲି, ଧାମରା, କଳିଙ୍ଗନଗର ବନ୍ଦର ନୌଯାତ୍ରୀଙ୍କ କୋଳାହଳରେ ହୋଇ ଉଠୁଥିଲା ସଦାମୁଖର, କର୍ମ ଚଞ୍ଚଳ । ଅସୀମ ସାଗର ବକ୍ଷରେ ଶୋଭା ପାଉଥିଲା ସିଂହଳ, ବର୍ମା, ବ୍ରହ୍ମଦେଶ, ଜାଭା, ବାଲି, ସୁମାତ୍ରା, ବୋର୍ଣ୍ଣିଓ, ମାଳୟ, ଚୀନ, ରୋମ, ପାରସ୍ୟ ଅଭିମୁଖେ ଅସୁମାରୀ ବୋଇତମାଳା । ଜଳଦସ୍ୟୁଙ୍କ ମୁକାବିଲା ପାଇଁ ସଜାଗ ଥିଲେ ଶକ୍ତିଶାଳୀ ନୌସେନା । ପିପିଲି, ବାଲେଶ୍ୱରରେ ବିଦ୍ୟମାନ ଥିଲା ବଡ଼ ବଡ଼ ବୋଇତ ନିର୍ମାଣ କାରଖାନା । ନୌବାଣିଜ୍ୟକୁ କେନ୍ଦ୍ର କରି କଳିଙ୍ଗ ଉପକୂଳରେ ବିକାଶ ଲାଭ କରିଥିଲା ପାରାଦ୍ୱୀପ, ଅସ୍ତରଙ୍ଗ, ହରିହରପୁର, ମାଣିକପାଟଣା, ଗଂଜାମ, ସାରଥା, ଛନୁଆ, ଲଇଛନପୁର, ଧାମରାରେ ଛୋଟବଡ଼ ବାଣିଜ୍ୟ କେନ୍ଦ୍ର । ମହାନଦୀ, ବ୍ରାହ୍ମଣୀ, ବୈତରଣୀ ନଦୀତଟରେ ଗଢ଼ି ଉଠିଥିଲା କେତେ ସହର । କାଳକ୍ରମେ ସାଗର ବକ୍ଷରେ ବୃଦ୍ଧି ପାଇଲା ଆରବ ନାବିକଙ୍କ ପ୍ରତିପତ୍ତି । ଡଚ୍, ପର୍ତ୍ତୁଗୀଜ, ଫରାସୀ, ଇଂରେଜ ବଣିକମାନେ କଳିଙ୍ଗ ଉପକୂଳରେ ଜମାଇ ବସିଲେ ନିଜର ଆସ୍ଥାନ । ଲୁପ୍ତ ହୋଇଗଲା କଳିଙ୍ଗର ଯୁଗ ଯୁଗର ଜାଜ୍ୱଲ୍ୟମାନ ନୌବାଣିଜ୍ୟ । ଏଇ ଅତୀତ ଗୌରବମୟ ପରମ୍ପରା ସ୍ମୃତିରେ ଦିବଂଗତ ମୁଖ୍ୟମନ୍ତ୍ରୀ

ଖାରବେଳର ସ୍ୱପ୍ନ ଦେଖୁଥିବା ପ୍ରବାଦ ପୁରୁଷ ଓ କଳିଙ୍ଗର ବରପୁତ୍ର ସ୍ୱର୍ଗତଃ ବିଜୁ ପଟ୍ଟନାୟକ ଭାରତର ମାନଚିତ୍ରରେ ଓଡ଼ିଶାକୁ ସମୁଚିତ ସ୍ଥାନର ଅଧିକାରୀ କରାଇବା ପାଇଁ ଓ ଓଡ଼ିଶାର ଯୁବକମାନଙ୍କ ହୃଦୟରେ ପୂର୍ବ ସ୍ମୃତିର ଉନ୍ମାଦନା ଆଣିବା ପାଇଁ 'କଳିଙ୍ଗ ବାଲିଯାତ୍ରା' ବୋଇତ ଭସାଣ ଆରମ୍ଭ କରି ଜଣେ ଓଡ଼ିଆ ଝିଅକୁ ବୋଇତରେ ଇଣ୍ଡୋନେସିଆ ପଠାଇଥିଲେ । ବିଶ୍ୱ ଦରବାରରେ ଓଡ଼ିଶାକୁ ଶିଳ୍ପୋନ୍ନତ ପ୍ରଦେଶ ରୂପେ ଦେଖିବା ପାଇଁ ସେ ତାଙ୍କର ଅହରହ ଉଦ୍ୟମ ଜାରି ରଖିଥିଲେ ।

କିନ୍ତୁ ଅସ୍ତମିତ ଅତୀତର ସେଇ ସମୁଜ୍ଜ୍ୱଳ ସ୍ମୃତି ଏବେ ବି ଓଡ଼ିଆ ହୃଦୟରେ ଉଜ୍ଜୀବିତ ରହିଛି । ଦୀପାବଳୀ ଅମାବାସ୍ୟା ବାସି ବୋଇତ ବନ୍ଦାଣ, କାର୍ତ୍ତିକ ପୂର୍ଣ୍ଣମୀ ତିଥିରେ ବୋଇତ ଭସାଣ ଆଉ ଭାଦ୍ରବ ମାସରେ ଖୁଦୁରୁକୁଣୀ ଓଷା ସ୍ୱାଭିମାନୀ ଓଡ଼ିଆ ଜାତିକୁ ସେଇ ଗୌରବମୟ ପରମ୍ପରାର ପୁନରୁଦ୍ଧାର ପାଇଁ ପ୍ରେରଣା ଦେଇଆସୁଛି । ଆଜି ଓଡ଼ିଶାର ବରେଣ୍ୟ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ପ୍ରାଚୀନ କଳିଙ୍ଗର ସେଇ ଐତିହ୍ୟ ଓ ଆଭିଜାତ୍ୟକୁ ପୁନରାବୃତ୍ତି କରିବାକୁ ଯାଉଛନ୍ତି । ରାଜ୍ୟରେ ଭରି ରହିଥିବା ବିପୁଳ ଖଣିଜ ସଂପଦ, ସୁଦୀର୍ଘ ସମୁଦ୍ର ଉପକୂଳ, ବିସ୍ତୀର୍ଣ୍ଣ ଅରଣ୍ୟ ଓ ଐତିହାସିକ ବିଭବର ଉପଯୋଗ କରି ଓଡ଼ିଶାକୁ ଭାରତୀୟ ଶିଳ୍ପ ମାନଚିତ୍ରରେ ସୁପ୍ରତିଷ୍ଠିତ କରିବା ପାଇଁ ସଂକଳ୍ପବଦ୍ଧ । ତାଙ୍କର ଅବିଶ୍ରାନ୍ତ ଉଦ୍ୟମ ଫଳରେ ବିଦେଶୀ ଶିଳ୍ପୋଦ୍ୟୋଗୀମାନେ ଓଡ଼ିଶାର ଶିଳ୍ପ ବିକାଶରେ ବିପୁଳ ପୁଞ୍ଜି ନିବେଶ କରିବା ପାଇଁ ଆକୃଷ୍ଟ ହୋଇପାରିଛନ୍ତି । ଆଜି ଓଡ଼ିଶାରେ ବିଭିନ୍ନ ଶିଳ୍ପ ପ୍ରତିଷ୍ଠାରେ ବହୁ କୋଟି ଟଙ୍କା ବିନିଯୋଗ ହେବାକୁ ଯାଉଛି । ଗୋପାଳପୁର ବନ୍ଦର ହେବ ଏସିଆର ବୃହତ ବନ୍ଦର । ପାରାଦ୍ୱୀପ ବନ୍ଦରର ସଂପ୍ରସାରଣ ଓ ଧାମରାରେ ବୃହତ ବନ୍ଦର ପ୍ରତିଷ୍ଠା କରାଯିବା ସଂଗେସଂଗେ ବିଲୁପ୍ତ ହୋଇଯାଇଥିବା ଅନ୍ୟାନ୍ୟ ବନ୍ଦରଗୁଡ଼ିକର ପୁନରୁଦ୍ଧାର ପାଇଁ କାର୍ଯ୍ୟକ୍ରମ ଚାଲୁ ରହିଛି । ଶିଳ୍ପ ଇତିହାସରେ ଆଗାମୀ ଶତାବ୍ଦୀ ସମୃଦ୍ଧିର ସ୍ୱର୍ଣ୍ଣଯୁଗ ରୂପେ ଲିପିବଦ୍ଧ ହୋଇ ରହିବ । ଓଡ଼ିଆ ଜାତିର ଗତ ଗୌରବ, ହୃତ ଗୌରବ ଫେରି ଆସିବ ।

ଶରତ ଚନ୍ଦ୍ର ସାମନ୍ତରାୟ

# ଉତ୍କଳ ପ୍ରସଙ୍ଗ

୬୧ ଭାଗ ୪ର୍ଥ ସଂଖ୍ୟା କାର୍ତ୍ତିକ-ମାର୍ଗଶିର ନଭେମ୍ବର - ୨୦୦୪



**ବାର୍ଷିକ ଦେୟ : ଟ.୫୦.୦୦**
**ପ୍ରତିଖଣ୍ଡ : ଟ.୫.୦୦**



ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧
*E-mail* : iprsec@rediffmail.com / iprsec@ori.nic.in, ଫୋନ : ୨୪୦୪୫୧୩

# ସୂଚୀ